# ଦେଶପ୍ରେମୀ ଇକ୍‌ବାଲ୍‌

ମୂଳ ଉର୍ଦ୍ଦୁ ରଚନା :


**ସୟ୍ୟଦ୍‌ ମୁଜ୍ଜଫର୍‌ ହୁସେନ୍‌ ବର୍ଣ୍ଣି**

ମାନ୍ୟବର ରାଜ୍ୟପାଳ

ହରିଆଣା


ଅନୁବାଦକ :


ଶେଖ୍‌ ମୋବିନୁଲ୍ଲା

ମୁଖ୍ୟ ଅଧ୍ୟାପକ, "ଉର୍ଦ୍ଦୁ ବିଭାଗ"

ଫକୀର ମୋହନ ମହାବିଦ୍ୟାଳୟ

ବାଲେଶ୍ୱର



ପ୍ରକାଶକ :

**ଓଡ଼ିଶା ଉର୍ଦ୍ଦୁ ଏକାଡ଼େମି**

ଭୁବନେଶ୍ୱର

# ଦେଶପ୍ରେମୀ ଇକ୍‌ବାଲ୍

ମୂଳ ରଚନା :

ସୟଦ୍ ମୁଜଫର ହୁସେନ୍ ବର୍ଣ୍ଣି

ମାନ୍ୟବର ରାଜ୍ୟପାଳ

ହରିଆଣା

ପ୍ରକାଶକ :

ଓଡ଼ିଶା ଉର୍ଦ୍ଦୁ ଏକାଡେ଼ମି

ଭୁବନେଶ୍ୱର

ପ୍ରଥମ ସଂସ୍କରଣ :

ଜାନୁଆରୀ ୧୯୮୮

ପ୍ରଚ୍ଛଦପଟ୍ଟ :

ଶ୍ରୀ ଅସୀତ୍ ମୁଖାର୍ଜି

ମୁଦ୍ରଣ :

ସୁରେଖା ପ୍ରିଣ୍ଟର୍ସ

ଧ୍ରୁବ ପ୍ରିଣ୍ଟର୍ସ

କଟକ

ମୂଲ୍ୟ : ଟ ୩୦-୦୦ (ତିରିଶ ଟଙ୍କା ମାତ୍ର)

# ଉତ୍ସର୍ଗ—

ଆମର ପ୍ରିୟ ସ୍ୱର୍ଗୀୟା ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କ ପବିତ୍ର ସ୍ମୃତି ପ୍ରତି ଏହା ଉତ୍ସର୍ଗୀକୃତ । ଶ୍ରୀମତୀ ଗାନ୍ଧୀ, ତାଙ୍କ ଜନ୍ମଭୂମି ଓ ଦେଶର ଏକତାକୁ ପ୍ରାଣଠାରୁ ଅଧିକ ଭଲ ପାଉଥିଲେ ଓ ସେଥିପାଇଁ ସେ ଆତ୍ମାହୁତି ଦେଲେ ।

"ଆସମାଁ ତେରି ଲହଦ୍ ପର ଶବନମ୍ ଅଫ୍‌ସାନି କରେ
ସବ୍‌ଜଏ ନୌରସ୍ତା ଇସ୍ ଘରକି ନିଗ୍‌ହବାନି କରେ"

[ ତୁମ ସମାଧିରେ ସ୍ୱର୍ଗରୁ ସଦା କୁସୁମ ବରଷୁ ଥାଉ
ତୁମ ସମାଧିରେ ସବୁଜ ଘାସ—ଜାଗ୍ରତ ପ୍ରହରୀ ହୋଉ ]

(ଏହି ପଂକ୍ତିଟି ଇକ୍‌ବାଲ୍ ତାଙ୍କ ସ୍ୱର୍ଗୀୟା ମା'ଙ୍କ ସ୍ମୃତିରେ ରଚନା କରିଥିଲେ ।)






हरियाणा राज भवन,
चण्डीगढ़ ।
HARYANA RAJ BHAVAN,
CHANDIGARH.

## MESSAGE

It is indeed a matter of great pleasure to me that Urdu Academy of Orissa through Muslim Educational & Welfare Society of Orissa has taken up publication of the Oriya translation of my book "IQBAL: POET-PATRIOT OF INDIA". I must say that I have always had a soft corner for Orissa in my heart because it was here that I spent the best part of my life and started and built up my career. I have many pleasant memories of the happy time spent in various parts of this beautiful State and in the company of its simple, warm-hearted and affectionate people. Queen Mary of Scot while losing the Battle of Calais had observed:

"When I die,
You will find Calais written on my heart".

Borrowing her words, I can say:

"When I die,
You will find Orissa written on my heart".

I must congratulate my beloved friend Dr. Syed Mushtaque Ali, founder of Muslim Educational & Welfare Society of Orissa, for having under-taken this labour of love. I must express my thanks to Shri Mubeenullah, Lecturer, F.M. College, Balasore, for his excellent Oriya translation and to my esteemeed friend Dr. Karamat Ali Karamat for having provided guidance in this work. Thanks are also due to Urdu Academy of Orissa for having published the Oriya version of the book under the title of "Desh Premi: Iqbal". I should feel that my labour is rewarded, if the people of Orissa read and enjoy some specimens of the poetry of Iqbal who was the greatest poet of Urdu and Persian languages in this century.

( S.M.H. Burney )

# ଲେଖକଙ୍କ ପରିଚୟ

ସଯ୍ୟଦ୍ ମୁଜ୍ଜଫର୍ ହୋସେନ୍ ବର୍ଣ୍ଣି, ହରିଆଣାର ମାନ୍ୟବର ରାଜ୍ୟପାଳ, ବୁଲନ୍ଦ୍ ସହର (ଉତ୍ତର ପ୍ରଦେଶ)ର ଏକ ଶିକ୍ଷିତ ପରିବାରରେ ୧୪ ଅଗଷ୍ଟ, ୧୯୨୩ରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ଛାତ୍ରଜୀବନ ଅତ୍ୟନ୍ତ ଉଜ୍ଜ୍ୱଳ ଥିଲା । ବି.ଏ. ଶ୍ରେଣୀରେ ଇଂରାଜୀ ସାହିତ୍ୟରେ ସେ Tempelton Gold Medal ପାଇଥିଲେ ଏବଂ ଇଂରାଜୀରେ ସ୍ନାତକୋତ୍ତର ଡିଗ୍ରୀ ଲାଭ କରିଥିଲେ । ୧୯୪୮ରେ ସେ I.A.S. ପାଇ ଓଡ଼ିଶାରେ ନିଯୁକ୍ତି ପାଇଲେ । ଓଡ଼ିଶା ରହିଣି କାଳରେ ସେ ବିଭିନ୍ନ ଦାୟିତ୍ୱପୂର୍ଣ୍ଣ ପଦବୀ ଯଥା—ବୋର୍ଡ଼ ଅଫ୍ ରେଭିନ୍ୟୁର ମେମ୍ବର, ରିଲିଫ୍ କମିଶନର, ଚିଫ୍ ସେକ୍ରେଟାରୀ ଏବଂ ଡେଭେଲପ୍‌ମେଣ୍ଟ କମିଶନର ରୂପେ ଅବସ୍ଥାପିତ ହୋଇଥିଲେ । କେନ୍ଦ୍ର ସରକାରଙ୍କର ବିଭିନ୍ନ ଦାୟିତ୍ୱପୂର୍ଣ୍ଣ ସ୍ଥାନ ଯଥା :—କୃଷି ବିଭାଗର ଯୁଗ୍ମ ସଚିବ, ପେଟ୍ରୋଲିୟମ୍ ମନ୍ତ୍ରଣାଳୟର ଅତିରିକ୍ତ ସଚିବ, ସୂଚନା ଓ ପ୍ରସାରଣ ମନ୍ତ୍ରଣାଳୟର ସଚିବ ଏବଂ ଗୃହ ମନ୍ତ୍ରଣାଳୟର ସଚିବ ରୂପେ ଅବସ୍ଥାପିତ ହୋଇଥିଲେ । ଉଚ୍ଚପଦସ୍ଥ ସରକାରୀ ପଦବୀରେ ଅବସ୍ଥାପିତ । ସେ ପ୍ରଥମ I.A.S. ଅଗଷ୍ଟ ୧୯୮୧ରୁ ସେ ନାଗାଲାଣ୍ଡ, ମଣିପୁର ଓ ତ୍ରିପୁରାର ରାଜ୍ୟପାଳ ଦାୟିତ୍ୱରେ ଅବସ୍ଥାପିତ ହୋଇଥିଲେ । ଏବଂ ୧୪ ଜୁନ୍, ୧୯୮୪ରୁ ହରିଅଣାର ରାଜ୍ୟପାଳ ଦାୟିତ୍ୱରେ ଅବସ୍ଥାପିତ ହୋଇଥିଲେ ।

ସଯ୍ୟଦ ମୁଜ୍ଜଫର୍ ହୁସେନ ବର୍ଣ୍ଣି ୮ଟି Public sector undertaking ଯଥା :—State Trading Corporation, Mines and Minerals Corporation, Fertiliser Corporation of India, National Seeds Corporation, Central Ware-Housing Corporation, Fertiliser and Chemicals Travancore Ltd, Cochin, Terai Development Corporation, Pant Nagar ଏବଂ Engineering Projects (India) Ltd. ର ନିର୍ଦ୍ଦେଶକ ଥିଲେ । ସେ Council of Film and Television Institute of India, Puneର ଚେୟାରମ୍ୟାନ୍ ଥିଲେ । ସେ Governing Council of Indian Institute of Mass Communicationର ସଭ୍ୟ ଥିଲେ । ସେ ଜାତିସଂଘର ଅନେକ ସମ୍ମିଳନୀରେ ଭାରତର ପ୍ରତିନିଧିତ୍ୱ କରିଛନ୍ତି ।

ନାଇରୋବିରେ ଅନୁଷ୍ଠିତ UNESCOର ୧୯ତମ ସାଧାରଣ ଅଧିବେଶନରେ (୧୯୭୬) ସେ ଭାରତୀୟ ପ୍ରତିନିଧି ଦଳର ଅନ୍ୟତମ ସଭ୍ୟ ଭାବରେ

ଯୋଗ ଦେଇଥିଲେ । ସେ FOA/UNICEFର Joint Policy Committee (୧୯୬୭)ରେ ସେମ୍‌ରେ ଭାରତୀୟ ପ୍ରତିନିଧି ଦଳର ଅଧିନାୟକତ୍ୱ କରିଥିଲେ । ଦକ୍ଷିଣ-ପୂର୍ବ ଏସିଆ ଏବଂ ପ୍ରଶାନ୍ତ ମହାସାଗରୀୟ ଅଞ୍ଚଳ (ଜାକର୍ତ୍ତା)ରେ ମଧ୍ୟ ଅଧିନାୟକତ୍ୱ କରିଥିଲେ ଏବଂ ୧୯୭୧ରେ ଏହାର ଭାଇସ୍ ଚେୟାରମ୍ୟାନ ରୂପେ ନିର୍ବାଚିତ ହୋଇଥିଲେ । ସେ ପୃଥିବୀର ପ୍ରାୟ ୨୨ଟି ଦେଶ ପରିଭ୍ରମଣ କରିଅଛନ୍ତି ।

ଜାତୀୟ କାର୍ଯ୍ୟରେ ବ୍ୟସ୍ତ ଥିବା ସତ୍ତ୍ୱେ ସେ ଜଣେ ଉଚ୍ଚକୋଟୀର ସାହିତ୍ୟ-ରଥୀ । ଇଂରାଜୀ, ଉର୍ଦ୍ଦୁ, ପାର୍ସି ଆଦି ଭାଷାରେ ସେ ଜଣେ ବିଦ୍ୱାନ ବ୍ୟକ୍ତିତ୍ୱ । ଇକ୍‌ବାଲ୍‌ଙ୍କ କବିତା ଓ ଜୀବନ-ଦର୍ଶନ ପ୍ରତି ତାଙ୍କର ପ୍ରଗାଢ଼ ଅନୁରକ୍ତି ବିଦ୍ୟମାନ ।

"Iqbal and National Integration" ହେଉଛି ତାଙ୍କର ପ୍ରଥମ ସଂସ୍କରଣ । ଏହାର ହିନ୍ଦୀ ଓ ଉର୍ଦ୍ଦୁ ଅନୁବାଦ ପ୍ରକାଶିତ ହୋଇ ସାରିଛି । ଉଚ୍ଚ ପ୍ରଶଂସା ଲାଭ କରିଛି ମଧ୍ୟ । ଖୁବ୍ ଶୀଘ୍ର ଏହାର ଅସମୀୟ, କନ୍ନଡ଼୍, ତାମିଲ୍ ଭାଷାରେ ଅନୁବାଦ ଗ୍ରନ୍ଥ ପ୍ରକାଶିତ ହେବାକୁ ଯାଉଛି । ଏହି ବୌଦ୍ଧିକ ବକ୍ତୃତାଟି ପୁସ୍ତକାକାରରେ ଉର୍ଦ୍ଦୁରେ "ମୋହବ୍ବେ ଓ୍ୱତନ୍—ଇକ୍‌ବାଲ୍" ନାମରେ ପ୍ରକାଶିତ ହୋଇସାରିଛି । "Iqbal : A Patriot Poet" ନାମରେ ଇଂରାଜୀ ପୁସ୍ତକଟି ଖୁବ୍ ଶୀଘ୍ର ମୁଦ୍ରିତ କରିବ । ବର୍ତ୍ତି ସାହେବଙ୍କ ଆଶୁ-ପ୍ରକାଶନ ପ୍ରତୀକ୍ଷାରେ ନିମ୍ନୋକ୍ତ ପୁସ୍ତକଗୁଡ଼ିକ :—

(a) Iqbal : A Revaluation

(b) Iqbal : Man and Poet

(c) "Collected letters of Iqbal in Urdu"

(d) ଇକ୍‌ବାଲ୍‌ଙ୍କ ଜୀବନୀ (ଉର୍ଦ୍ଦୁ)



# ଅନୁବାଦକଙ୍କ ଲେଖନୀରୁ

## ଇକ୍‌ବାଲ୍, ଉର୍ଦ୍ଦୁ ସାହିତ୍ୟରେ ଏକ ଜ୍ୱଳନ୍ତ ପ୍ରତିଭା

ପରାଧୀନ ଭାରତରେ ଜନ୍ମଗ୍ରହଣ କରି, ନିଜର ଉଜ୍ଜ୍ୱଳ ଲେଖନୀ ମାଧ୍ୟମରେ ସ୍ୱାଧୀନ ଭାରତର ସ୍ୱପ୍ନ ତଥା ଜାଗରଣର ଅଗ୍ନିପ୍ରଭାକୁ ସେ ଯେଉଁଭଳି ଭାବରେ ତାଙ୍କ ନିଜସ୍ୱ କବିତାବଳୀରେ ପ୍ରକାଶି ଦେଇଛନ୍ତି, ତାହା ସାହିତ୍ୟିକ ତଥା ରାଜନୈତିକ ଦୃଷ୍ଟି-କୋଣରୁ ବେଶ୍ ପ୍ରଣିଧାନଯୋଗ୍ୟ । ବହୁ ପ୍ରତିଭାର ପ୍ରତୀକାତ୍ମକ କବି ଇକ୍‌ବାଲ୍‌ଙ୍କ ସମଗ୍ର ସାହିତ୍ୟ କୃତିକୁ ସମୀକ୍ଷାତ୍ମକ ଦୃଷ୍ଟିଭଙ୍ଗିନେଇ ସୟଦ ମୁଜ୍ଜଫର୍ ହୁସେନ୍ ବର୍ଣ୍ଣି ସାହେବ୍, ଇକ୍‌ବାଲ୍‌ଙ୍କ ଉପରେ "Iqbal : A Patriot Poet" ରଚନା କରି କେବଳ ଇକ୍‌ବାଲ୍‌ଙ୍କୁ ନୁହେଁ, ନିଜକୁ ମଧ୍ୟ ବିଶ୍ୱଜନ ପରିଚିତ କରାଇ ପାରିଛନ୍ତି । କେବଳ ଇଂରାଜୀ ଭାଷାରେ ନୁହେଁ ଉର୍ଦ୍ଦୁ ଭାଷାରେ ଇକ୍‌ବାଲ୍‌ଙ୍କ କୃତିକୁ "ମୋହିବେ ଓ୍ୱତନ୍"ରେ ରୂପ ଦେଇ ବର୍ଣ୍ଣି ସାହେବ ନିଜର ପାଣ୍ଡିତ୍ୟ ବହୁ ଶାସ୍ତ୍ରଦର୍ଶିତା ତଥା ବହୁ-ଭାଷା ଅଧ୍ୟୟନର ପ୍ରମାଣ ଦେଇଛନ୍ତି ।

ଉର୍ଦ୍ଦୁ ଭାଷାର ତଥା ବର୍ଣ୍ଣି ସାହେବଙ୍କ "ମୋହିବେ ଓ୍ୱତନ୍" ପୁସ୍ତକଟିର ଓଡ଼ିଆ ଅନୁବାଦ ଭଳି ଦୁରୁହ କାର୍ଯ୍ୟଭାରକୁ ସମ୍ପାଦନ କରିବା ଦିଗରେ, ଏଭଳି ପବିତ୍ର ତଥା ମହନୀୟ କାର୍ଯ୍ୟରେ ମୋର ଉପଯୋଗିତା ନିମନ୍ତେ ମୁଁ ବିଶେଷକରି ମାନ୍ୟବର ହରିଆଣା ରାଜ୍ୟପାଳ ସୟଦ ମୁଜ୍ଜଫର ହୁସେନ ବର୍ଣ୍ଣି ସାହେବଙ୍କ ନିକଟରେ ଚିର ଋଣୀ । ଖଲିକୋଟ ମହାବିଦ୍ୟାଳୟ, ବ୍ରହ୍ମପୁରର ଗଣିତ ପ୍ରଫେସର ଡଃ କରାମତ୍ ଅଲ୍ଲି କରାମତ୍‌ଙ୍କ ଜରିଆରେ ମୁଁ ପ୍ରତ୍ୟକ୍ଷଭାବେ ବର୍ଣ୍ଣି ସାହେବଙ୍କ ସହ ଯୋଗାଯୋଗ ରକ୍ଷାକରି ଏଭଳି ସାହିତ୍ୟ କୃତିକୁ ଓଡ଼ିଆ ଅନୁବାଦ କରିବାର ସୌଭାଗ୍ୟ ଲାଭ କରିଥିବାରୁ ମହାଶୟଙ୍କ ନିକଟରେ ମୁଁ ଚିର କୃତଜ୍ଞ ।

"ଦେଶପ୍ରେମୀ ଇକ୍‌ବାଲ୍"—ମୋର ଓଡ଼ିଆ ଅନୁବାଦ ପୁସ୍ତକଟିରେ ମୁଁ ଇକ୍‌ବାଲ୍‌ଙ୍କ କାବ୍ୟିକ ପ୍ରତିଭାର ଓଡ଼ିଆ ମର୍ମାନୁବାଦ ଦିଗରେ ଯଥାସମ୍ଭବ ଚେଷ୍ଟା କରିଅଛି । ଓଡ଼ିଆ ଭାଷାର ମୌଳିକତା କ୍ଷୁର୍ଣ୍ଣ ନହେବା ଦିଗରେ ମୁଁ ସତର୍କତା ଅବଲମ୍ବନ କରିଅଛି । ହୁଏତ ଅନେକ ସ୍ଥଳରେ ଭାଷାଗତ ଦୋଷ ତ୍ରୁଟି ରହିଯାଇ ଥାଇପାରେ, କ୍ଷମା ପ୍ରାର୍ଥନା ପୂର୍ବକ, ଓଡ଼ିଶାର ସୁଧୀ ପାଠକବୃନ୍ଦ ଯେ ଏହାର ମର୍ମକୁ ଉପଲବ୍ଧି କରିବା

ଭିତରେ ଇକ୍‌ବାଲ୍‌ଙ୍କ କାବ୍ୟିକ ପ୍ରେରଣା ଲାଭ କରିବେ ସେତିକି ସମ୍ଭବ ହେଲେ ମୋ ଶ୍ରମ, ମୋ ଲେଖନୀ ସାର୍ଥକ ହେବ ।

ପାଣ୍ଡୁଲିପି ସଂଶୋଧନ ଦିଗରେ ଫକୀର ମୋହନ ମହାବିଦ୍ୟାଳୟର ଓଡ଼ିଆ ବିଭାଗର ମୁଖ୍ୟ ଡଃ ପ୍ରହ୍ଲାଦ ଚରଣ ମହାନ୍ତି ତଥା କୁନ୍ତଳା କୁମାରୀ ସାବତ ମହିଳା ମହାବିଦ୍ୟାଳୟର ଓଡ଼ିଆ ଅଧ୍ୟାପକ ବିଜୟ ସ୍ୱାଇଁଙ୍କ ଶ୍ରମକୁ ମୁଁ ସାଧୁବାଦ ନ ଜଣାଇଲେ ମୁଁ ମୋ କର୍ତ୍ତବ୍ୟରେ ଅବହେଳା କରିବି । ଶ୍ରୀଯୁକ୍ତ ସ୍ୱାଇଁ ବିଶେଷ କରି ପାଣ୍ଡୁଲିପିର "ମୁଦ୍ରଣ-ନକଲ"ଟି ବହୁ ଶ୍ରମ କରି ପ୍ରସ୍ତୁତ କରିଥିବାରୁ ସେ ଅନ୍ତରରେ ଚିରଦିନ ପାଇଁ ନିକର ହୋଇ ରହିବେ ।

କେବଳ ଉର୍ଦ୍ଦୁ, ଇଂରାଜୀ, ଓଡ଼ିଆ ଭାଷା ନୁହେଁ, ଇକ୍‌ବାଲ୍‌ଙ୍କ ସାହିତ୍ୟକୃତି ତଥା ବର୍ତ୍ତି ସାହେବଙ୍କ ସମୀକ୍ଷା ଯଦି ବିଶ୍ୱ-ଭାଷାରେ ଅନୂଦିତ ହୁଏ ତେବେ ଇକ୍‌ବାଲ୍‌ଙ୍କ ଭଳି ଦେଶପ୍ରେମୀଙ୍କ ଚେତନା ବିଶ୍ୱପ୍ରେମରେ ରୂପାନ୍ତରିତ ହୋଇପାରିବ ।

ଶେଷରେ ପାଠକମାନଙ୍କ ଅଭିମତକୁ ମୂଲ୍ୟ ଦେବାପାଇଁ, ଅପେକ୍ଷମାଣ—

ଶେଖ୍ ମୋବିନୁଲ୍ଲା

# କ୍ରମିକ ସୂଚୀ





# ବକ୍ତୃତାର ମୁଖବନ୍ଧ

୧୪ ଜାନୁୟାରୀ ୧୯୮୪ରେ ଭୋପାଳଠାରେ ଭୋପାଳ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ଆୟୋଜିତ ଏକ ଉତ୍ସବରେ "ଇକ୍‌ବାଲ୍ ଓ ଜାତୀୟ ସଂହତି" ଉପରେ ମୁଁ ଏକ ମୌଳିକ ଭାଷଣ ଦେଇଥିଲି । ଇକ୍‌ବାଲଙ୍କ ଜୀବନରେ ଭୋପାଳର ସ୍ଥାନ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏହି ନଗରୀ ସହିତ ତାଙ୍କର ଅତି ନିବିଡ଼ ଏବଂ ହାର୍ଦ୍ଦିକ ସମ୍ପର୍କ ଥିଲା । ସବା ଲକ୍ଷ୍ନୌ୍ଙ୍କ କଷ୍ଟସାଧ୍ୟ ଗବେଷଣା ଦ୍ୱାରା ରଚିତ ପୁସ୍ତକ "ଇକ୍‌ବାଲ୍ ଏବଂ ଭୋପାଳ"ରେ ସେ ଲିପିବଦ୍ଧ କରିଛନ୍ତି । "ଇକ୍‌ବାଲ୍ ସର୍ବପ୍ରଥମେ ୧୮ ଅଗଷ୍ଟ, ୧୯୧୦ ରେ ଏକ କବି ସମ୍ମିଳନୀ (ମୁଶାଏରା)ରେ ପରୋକ୍ଷ ଭାବେ ଭୋପାଳ ସଂସ୍ପର୍ଶରେ ଆସିଲେ । କବି ସମ୍ମିଳନୀର ଉଦ୍‌ଯାପନ ପରେ ଏଥିରେ ଭାଗ ନେଇଥିବା କବିମାନଙ୍କର ନବୀନତ କବିତା ଓ ଅନ୍ୟ କେତେକ କବିଙ୍କ ଦ୍ୱାରା ପ୍ରେରିତ କବିତାଗୁଡ଼ିକ "ଆଇନେ ମୁଶାଏରା" ନାମକ ୫୬ ପୃଷ୍ଠା ବିଶିଷ୍ଟ ଏକ ସଂକଳନ ପୁସ୍ତିକା ସୋରୁର୍ କାଦରୀ ନାମକ ଜନୈକ ବ୍ୟକ୍ତିଙ୍କ ଦ୍ୱାରା ସଂକଳିତ ହୋଇଥିଲା ।

ଏହି ସଂକଳନରେ ଇକ୍‌ବାଲ୍‌ଙ୍କ ୩ଟି ଅପ୍ରକାଶିତ କବିତା, * ଯାହାକି ତାଙ୍କର କୌଣସି କବିତା ସଂକଳନରେ ସ୍ଥାନ ପାଇନାହିଁ, ପ୍ରଥମ ଥର ପାଇଁ ପ୍ରକାଶିତ ହୋଇଥିଲା ।

ପରେ ଖାତୁନ୍ ଅରଶଦ୍ * * (ମୌଲାନା ରଶିଦ୍ ଅହେମଦ୍ ଅରଶଦ୍ ଥାନ୍‌ଭିଙ୍କ ପତ୍ନୀ) ନାମ୍ନୀ ଏକ ଶିକ୍ଷିତା ଏବଂ ମାର୍ଜିତ ରୁଚିସମ୍ପନ୍ନା ରମଣୀ,

---

* ପରେ ଏଗୁଡ଼ିକ ତାଙ୍କର ତିନୋଟି ଅପ୍ରକାଶିତ କବିତା ସଂକଳନରେ ସ୍ଥାନ ପାଇଛି । ଯଥା :—ରଖ୍‌ତେ ସଫର୍, ବାକୟାତେ ଇକ୍‌ବାଲ୍, ସରୁଦେ ରଫ୍‌ତା ଏ ଇକ୍‌ବାଲ୍ । ଏହା ୧୯୪୪ରେ ଫକୀର ଓ୍ୱାହିଦୁଦ୍ଦିନ୍‌ଙ୍କ ଦ୍ୱାରା ଲିଖିତ "ରୋଜ୍‌ଗାରେ ଫକୀର"ରେ କବିଙ୍କ ଜୀବନୀର ୨ୟ ଭାଗରେ ସନ୍ନିବେଶିତ ହୋଇଛି ।

* * ଇକ୍‌ବାଲ୍ ଏବଂ ଭୋପାଳ ପୃଷ୍ଠା-୬୫, ୬୬ ।

ଯେ ସାମାଜିକ ଓ ସାହିତ୍ୟିକ ରଚନାମାନ ବିଭିନ୍ନ ପତ୍ରିକାକୁ ପଠାଉଥିଲେ ଏବଂ ଯେ ମହିଳାମାନଙ୍କ ପାଇଁ ୧୯୩୩ ରେ "ବାନୋ" ନାମକ ଏକ ଜନପ୍ରିୟ ଏବଂ ସମ୍ମାନାସ୍ପଦ ପତ୍ରିକାର ପ୍ରକାଶନ ଆରମ୍ଭ କରିଥିଲେ, ତାଙ୍କ ଅନୁରୋଧ କ୍ରମେ ଇକ୍‌ବାଲ୍ ତାଙ୍କ ପ୍ରସିଦ୍ଧ କବିତା "ଜଓ୍ୱାବେ-ଶିକ୍‌ଓ୍ୱା"ର ଏକ ପଂକ୍ତି ପଠାଇ ଥିଲେ । ଖାତୁନ୍ ଅରଶଦ୍‌ଙ୍କ କହିବା ଅନୁଯାୟୀ ୧୯୧୮ରେ ଯେତେବେଳେ ଇକ୍‌ବାଲ୍‌ଙ୍କ ଏହି କବିତାଟି ପ୍ରକାଶିତ ହେଲା ସେଥିରେ ନିମ୍ନଲିଖିତ ପଂକ୍ତି ଥିଲା :

"କୈଶ ଫିକ୍ରେ କଶେ-ତନ୍‌ହାଇ ଏ ସେହରା ନ ରହେ,
ସହର କ ଖାସ୍ତେ ହାଓ୍ୱା ବାଦିଆ ପୈମା ନ ରହେ ।
ଓହ ତୋ ଦିଓ୍ୱାନା ହୈ ଜଙ୍ଗଲ ମେଁ ରହେ ୟା ନ ରହେ
ୟେ ଜରୁରୀ ହୈ ହିଜାବେ-ରୁଖେ ଲୈଲି ନ ରହେ
ଶୌକେ ତହରିରେ ମଜାମିଁ ମେ ଘୁଲ ଯାତି ହୈ
ବୈଠ୍‌କର୍ ପରଦେ ମେ ବେ-ପରଦା ହୁଇ ଯାତି ହୈ ।"

( ଉପତ୍ୟକା ନିର୍ଜନ ଇଲାକା-ଉଦ୍‌ଭ୍ରାନ୍ତ କୈଶ୍‌ର ପାଇଁ ବିଚରଣ ଭୂମି
ସହରୀ ଯୁବକ ସିଏ, ଆଉଜାତେ୍ୟ ଗଡ଼ା, ନ ହେଉ ବିପଥଗାମୀ
ସହଜେ ତ ଲୈଲି ଲଜ୍ଜାବତୀ, ଲୁଣ୍ଠେ ତାର ଭାଷା ନାହିଁ ଆଜି
ପଥହରା ହେଉ ଅବା ଜଙ୍ଗଲରେ ରହୁ, ପାଗଳ ବେଶକୁ ସାଜି
କି କରିବ ସିଏ ପ୍ରେମ ପ୍ରତିଦାନେ, ସହଜେ ଅବଳା ନାରୀ
ପରଦା ପଛରେ ମଉନେ ବସିଛି, ଝରପଡ଼େ ଅଶ୍ରୁବାରି । )

ତା'ପରେ ସେ ଲେଖିକା ମୁସଲମାନ୍ ମହିଳାମାନଙ୍କ ପ୍ରତି ଇକ୍‌ବାଲ୍‌ଙ୍କ ସମାଲୋଚନାର ପ୍ରତିରୋଧ କରି ତାଙ୍କ ପାଖକୁ ଗୋଟିଏ ଚିଠି ଲେଖିଥିଲେ ଏବଂ ସେଥିରେ ଏ କଥା ମଧ୍ୟ ଉଲ୍ଲେଖ କରିଥିଲେ ଯେ ଅତୀତରେ ବିଶେଷ କରି ଇସ୍‌ଲାମର ଗୌରବମୟ ପ୍ରଥମାବସ୍ଥାରେ ମହିଳାମାନେ କିପରି ବିଭିନ୍ନ ପୁସ୍ତକ ରଚନା କରିଥିଲେ । ସେ ଏ କଥା ଜାଣି ନ ଥିଲେ ଯେ, ଇକ୍‌ବାଲ୍ କେବଳ ତାଙ୍କ ପ୍ରତିବାଦକୁ ଭ୍ରୂକ୍ଷେପ କରିବେ ନାହିଁ, ବରଂ ତାଙ୍କ ପ୍ରତିବାଦର ଉତ୍ତର ସ୍ୱରୂପ ଆଉ ଗୋଟିଏ ପଂକ୍ତି ଲେଖିବେ, ଯାହାକି ବର୍ତ୍ତମାନ ଏହି କବିତାରେ ଲିପିବଦ୍ଧ ହୋଇଛି । ସେ ତାଙ୍କ ଚିଠିର ଏକ ନାତିଦୀର୍ଘ

ଏବଂ ଭଦ୍ରୋଚିତ ଉତ୍ତର ପଠାଇଥିଲେ, ଯେଉଁଥିରୁ କି ତାଙ୍କର ସୁରୁଚି-ସମ୍ପନ୍ନତା ଓ ସହଜାତ ସରଳତାର ପରିଚୟ ମିଳେ । ସେଥିରେ ଉପରୋକ୍ତ ପଂକ୍ତିର ଶେଷପଦ ପରିବର୍ତ୍ତେ ନିମ୍ନଲିଖିତ ପଦଟି ଯୋଗ କରାଯାଇ ଥିଲା—

"ଗିଲଏ ଯୌର ନ ହୋ; ଶିକ୍‌ଓ୍ୱାଏ ବେଦାଦ୍ ନ ହୋ,
ଇଶ୍‌କ ଆଜାଦ୍ ହୋ କ୍ୟୌଁ, ହୁସନ୍ ଭି ଆଜାଦ୍ ନ ହୋ ।"

( ଆସୁ ପଛେ ପ୍ରତିବାଦ, ଅତ୍ୟାଗ୍ରର ଆସୁ ଦାରୁଣ ପୀଡ଼ନ
ମୁକ୍ତ ହେଲେ ପ୍ରିୟତମ; ରୁଦ୍ଧକକ୍ଷ ତେଜି ମୁହିଁ କରିବି ହିଁ ତାରେ ନିମନ୍ତ୍ରଣ । )

ତେଣୁ ଭୋପାଳର ଏହି ମହିଳାଙ୍କ ପ୍ରତିବାଦ ହିଁ ଇକ୍‌ବାଲଙ୍କୁ ତାଙ୍କ ପ୍ରସିଦ୍ଧ କବିତା "ଜଓ୍ୱାବ୍-ଏ-ଶିକ୍‌ଓ୍ୱା"ରେ ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନ କରିବା ପାଇଁ ବାଧ୍ୟ କରିଥିଲା ।

ପ୍ରକାରାନ୍ତେ ଏହିପରି ଭାବରେ ଭୋପାଳ ଏବଂ ଏହାର ଶିକ୍ଷିତ ତଥା ବିଶିଷ୍ଟ ବ୍ୟକ୍ତିଙ୍କ ସହିତ ଇକ୍‌ବାଲଙ୍କର ସମ୍ପର୍କ ସ୍ଥାପନ ହେଲା । କିନ୍ତୁ ସର୍ବ-ପ୍ରଥମେ ସେ ୧୦ ମେ ୧୯୩୧ ରେ ଭୋପାଳ ଯାଇଥିଲେ, ଏବଂ ତାଙ୍କର ରହଣି ଥିଲା 'କଶ୍‌ରେ ରାହତ୍ ମଞ୍ଜିଲ୍' ନାମକ ରାଜ୍ୟ ଅତିଥି-ଭବନରେ, ଯାହାକି ବର୍ତ୍ତମାନ ଧ୍ୱଂସ ପ୍ରାପ୍ତ । ଏହି ରହଣି କାଳରେ ସେ ନବାବ୍ ସାହେବ୍‌ଙ୍କୁ ଡାକି ତାଙ୍କ ସହିତ ମୁସଲମାନ୍‌ମାନଙ୍କର ରାଜନୈତିକ ସମସ୍ୟା ବିଷୟରେ ଆଲୋଚନା କରିଥିଲେ ।

୧୯୩୪ ରେ ଇକ୍‌ବାଲ ଭୀଷଣ ଭାବରେ ଗଳକ୍ଷତରେ ଆକ୍ରାନ୍ତ ହୋଇ ଭୋପାଳ ଆସିଲେ । ତାଙ୍କର ଗଣ୍ଠିବାତ ମଧ୍ୟ ତୀବ୍ରତର ହେଲା । ତାଙ୍କର ଘନିଷ୍ଠ ବନ୍ଧୁ, ସରରସ୍ ମସୁଦ, ଯେ କି ଭୋପାଳର ତତ୍‌କାଳୀନ ଶିକ୍ଷାମନ୍ତ୍ରୀ ଥିଲେ, ତାଙ୍କର ଅନୁରୋଧ କ୍ରମେ ବୈଦ୍ୟୁତିକ ଚିକିତ୍ସା ( Electric Therapy ) ପାଇଁ ଇକ୍‌ବାଲ୍ ଭୋପାଳ ଆସିଲେ ।

ଏହି ଚିକିତ୍ସା ପାଇଁ ଇକ୍‌ବାଲଙ୍କୁ ତିନଥର ଭୋପାଳ ଆସିବାକୁ ପଡ଼ିଥିଲା । ପ୍ରଥମ ଥର ସେ ୩୧ ଜାନୁୟାରୀ ୧୯୩୫ରୁ ୭ ମାର୍ଚ୍ଚ ୧୯୩୫, ଦ୍ୱିତୀୟ ଥର ୧୭ ଜୁଲାଇ ୧୯୩୫ରୁ ୨୮ ଅଗଷ୍ଟ ୧୯୩୫ ଏବଂ ଶେଷ ଓ ତୃତୀୟଥର ୨ । ୩ ମାର୍ଚ୍ଚ

୧୯୩୬ରୁ ୮ ଏପ୍ରିଲ ୧୯୩୬ ପର୍ଯ୍ୟନ୍ତ ଭୋପାଳରେ ରହିଥିଲେ । ଯଦିଓ ଭୋପାଳରେ ତାଙ୍କର ରହଣିକାଳ ମୋଟ ୪ ମାସ ଥିଲା ତଥାପି ତାଙ୍କର ପ୍ରଥମ ଯାତ୍ରା ଅର୍ଥାତ୍ ୧୯୩୧ରୁ ୧୯୩୮ରେ ତାଙ୍କର ମୃତ୍ୟୁ ପର୍ଯ୍ୟନ୍ତ ପ୍ରାୟ ୭ ବର୍ଷକାଳ ସେ ଭୋପାଳର ନବାବ୍ ସାହେବ ଓ ସର୍ ରସ୍ ମସୁଦ୍‌ଙ୍କ ସହ ବୌଦ୍ଧିକ ଓ ରାଜନୈତିକ ସମ୍ପର୍କରେ ଆସିଥିଲେ ।

ତାଙ୍କର ପ୍ରଥମ ଯାତ୍ରାର ରହଣିକାଳ ଅର୍ଥାତ୍ ଜାନୁୟାରୀ-ମାର୍ଚ୍ଚ ୧୯୩୫ରେ ସେ ସର୍ ରସ୍ ମସୁଦଙ୍କ ସରକାରୀ ବାସଭବନ 'ରିଆଜ୍ ମଞ୍ଜିଲ୍'ରେ ତାଙ୍କର ଅତିଥି ହୋଇଥିଲେ । ଏକ ମାସ ସାତଦିନ ରହଣିକାଳ ମଧ୍ୟରେ ସେ ତାଙ୍କର ୭ଟି ପ୍ରସିଦ୍ଧ କବିତା ରଚନା କରିଥିଲେ । *

ମେ ୧୯୩୫ ରେ ଭୋପାଳ ସରକାର ଇକ୍‌ବାଲଙ୍କୁ ଆଜୀବନ ମାସିକ ୫୦୦ ଟଙ୍କାର ଅବସର ବୃତ୍ତି ପ୍ରଦାନ କଲେ । ଭୀଷଣ ଆର୍ଥିକ ସଙ୍କଟ ମଧ୍ୟରେ ଗତି କରୁଥିବାବେଳେ ଏହା ତାଙ୍କୁ ଅପ୍ରତୁଳ ସାହାଯ୍ୟ କରିଥିଲା । ଇକ୍‌ବାଲଙ୍କର ସମସ୍ତ ଚେଷ୍ଟା ଓ ତତ୍କାଳୀନ ପ୍ରଧାନମନ୍ତ୍ରୀ ମହାରାଜା ସାର୍ କିଶନ ପ୍ରସାଦଙ୍କ ସମସ୍ତ ଉଦ୍ୟମ ସତ୍ତ୍ୱେ ସେ ହାଇଦ୍ରାବାଦ୍ ରାଜ୍ୟରୁ ବା ହାଇଦ୍ରାବାଦ୍ ମୁଖ୍ୟ ବିଚାରପତିଙ୍କ କାର୍ଯ୍ୟାଳୟରୁ କୌଣସି ଆର୍ଥିକ ସାହାଯ୍ୟ ଲାଭ କରି ପାରି ନ ଥିଲେ । ଏକ ନିମ୍ନପଦସ୍ଥ ବିଚାରପତି ପଦପାଇଁ ସେ ଆଶାୟୀ ଥିଲେ ମାତ୍ର ସେ ତାହା ପାଇ ପାରି ନ ଥିଲେ କିମ୍ବା ସାର୍ ଅକବର୍ ହାଇଦରିଙ୍କ ଦ୍ୱାରା ଉସ୍‌ମାନିଆ ବିଶ୍ୱବିଦ୍ୟାଳୟର କୁଳପତି ପଦପାଇଁ ଦିଆଯାଇଥିବା ଅମୂଳକ ପ୍ରତିଶ୍ରୁତି ମଧ୍ୟ ପାଳିତ ହୋଇ ନ ଥିଲା । ଉର୍ଦ୍ଦୁର ବିଶିଷ୍ଟ ସମାଲୋଚକ ସ୍ୱର୍ଗତଃ ପ୍ରଫେସର୍ ରସିଦ୍ ଅହେମଦ୍ ସିଦ୍ଦିକିଙ୍କ ଭାଷାରେ--"ଆସନ୍ତା ବଂଶଧରଗଣ କଦାପି ଭୋପାଳର ଏ ସ୍ୱତନ୍ତ୍ର ଅନୁଦାନକୁ ଭୁଲି ପାରିବେ ନାହିଁ ※ ※ ※ ※ ※ ଏହି ଅନୁଦାନ ନିଶ୍ଚିତ ଭାବେ ଇକ୍‌ବାଲଙ୍କୁ ତାଙ୍କର ସାଂସାରିକ ସମସ୍ୟା ସମାଧାନରେ ସାହଯ୍ୟ କରିଥିବ ।"

※ (i) ସୁଲତାନ--ପୃ.୬୭, (ii) ତସାଉଫ୍--ପୃ.୬୯, (iii) ଓହି, (iv) ମକ୍‌ସୁଦ--ପୃ. ୬୭, (v) ହୁକୁମତ୍-ପୃ. ୭୬, (vi) ନଗାହ୍-ପୃ.୧୦୬, (vii) ଉମ୍ମିଦ୍--ପୃ. ୧୮ ।

ତାଙ୍କର ଦ୍ୱିତୀୟ ରହଣି ଅର୍ଥାତ୍ ଏପ୍ରିଲ୍‌ରୁ ଅଗଷ୍ଟ ୧୯୩୫ରେ ସେ ସରକାରୀ ଅତିଥି ଭବନ "ଶିଶ୍ ମହଲ୍"ରେ ଅବସ୍ଥାନ କରିଥିଲେ । ଏହି ସମୟରେ ସେ ତାଙ୍କର ୫ଟି* ପ୍ରସିଦ୍ଧ କବିତା ରଚନା କରିଥିଲେ, ଯାହା ତାଙ୍କର କବିତା ସଂକଳନ (ଜରବେ କଲିମ୍)ରେ ସନ୍ନିବେଶିତ ହୋଇଛି । ଭୋପାଳକୁ ତାଙ୍କର ଶେଷ ଯାତ୍ରାବେଳେ ତାଙ୍କର ସ୍ୱାସ୍ଥ୍ୟ ଏପରି ଖରାପ ପଡ଼ିଥିଲା ଯେ, ସେ କୌଣସି ସୃଜନାତ୍ମକ କାର୍ଯ୍ୟ ପାଇଁ କ୍ଷମ ନ ଥିଲେ । ଏଥର ତାଙ୍କର ପୁତ୍ର ଯାଭେଦ୍ ମଧ୍ୟ ତାଙ୍କ ସଙ୍ଗରେ ଯାଇଥିଲେ । ତାଙ୍କର ପରବର୍ତ୍ତୀ ଚିଠିରୁ ଜଣାଯାଏ ଯେ, ସେ ପୁଣିଥରେ ଭୋପାଳ ଯିବା ପାଇଁ ଇଚ୍ଛା କରୁଥିଲେ, କିନ୍ତୁ ତାଙ୍କର ଏହି ଇଚ୍ଛା ଫଳବତୀ ହୋଇପାରି ନ ଥିଲା । ଶେଷରେ ୧୯ ଏପ୍ରିଲ୍ ୧୯୩୮ରେ ତାଙ୍କର ତିରୋଧାନର ଠିକ୍ ଦୁଇଦିନ ପୂର୍ବରୁ ସେ ତାଙ୍କର ଶେଷ ଚିଠି ଜନାବ୍ ମମ୍‌ନୁନ୍ ହସନ୍ ଖାନ୍ ସାହେବଙ୍କ ପାଖକୁ ଲେଖିଥିଲେ ।

ଏଠାରେ ମଧ୍ୟ ଏ କଥା ଉଲ୍ଲେଖଯୋଗ୍ୟ ଯେ, ଇକ୍‌ବାଲ ତାଙ୍କର ଉର୍ଦ୍ଦୁ କବିତାର ତୃତୀୟ ସଂକଳନ "ଜରବେ କଲିମ୍" ନବାବ୍ ସାହେବଙ୍କୁ ଉତ୍ସର୍ଗ କରିଥିଲେ ଏବଂ ତାଙ୍କର ଏକ ପଦରେ କହିଥିଲେ—

"ବଗିର ଇଁ ହମା ସରମାୟ ଏ ବାହାର ଅଜ୍‌ମନ୍
କେ ଗୁଲ୍ ବଦସ୍ତେ-ତୁ ଅଜ୍ ଶାଖ୍ ତାଜାତର ମାନଦ"

(ହୃଦୟ କବିତା-ବସନ୍ତ ବାରତା-ଫୁଲରଙ୍ଗ, ଗନ୍ଧକର ଗ୍ରହଣ
ତୁମ ହାତେ ଯେଉଁ ଗୋଲାପ ସ୍ତବକ-ଦେଖି ଜଳିଯାଏ ଗୋଲାପ ବଣ)

ଜାହାଙ୍ଗୀରଙ୍କ ଦରବାରରେ ଥିବା ଇରାନୀ କବି ତାଲିବ୍ ଆମଲିଙ୍କ ଦ୍ୱାରା ଏହି ପଦର ୨ୟ ପାଦ ରଚିତ ହୋଇଥିଲା । କଥିତ ଅଛି ତାଲିବ୍ ଆମଲି ଏହି ପଦର ୨ୟ ପାଦଟିକୁ ପ୍ରଥମେ ରଚନା କରିଥିଲେ । ଯଥା: —

"କେ ଗୁଲ୍ ବଦସ୍ତେ ତୁ ଅଜ୍ ଶାଖ୍ ତାଜାତର୍ ମାନଦ୍"

---

* (i) ସୁବ୍‌ହା-ପୃ.୭, (ii) ମୋମିନ୍-ପୃ.୪୧, (iii) ଇକ୍‌ବାଲ୍ କା ଫର୍‌ମାନ୍ ଆପ୍‌ନେ ସିଆସି ଫର୍ଜନ୍ଦୋ କେ ନାମ୍-ପୃ.୧୪୮-୧୪୯, (iv) ଜମିୟତ୍-ଏ-ଅକୱାମ୍-ଏ-ଶରକ୍-ପୃ.୧୫୧, (v) ମୁସୋଲିନ-ପୃ.୧୫୨, ।

ଘାଲିବ ୬ମାସ ଏକ୍ସ ପଦଟିର ପ୍ରଥମ ପାଦ ରଚନା କରିବାର ଚେଷ୍ଟାରେ ବିଫଳ ହୋଇ ସେ ପଦଟିକୁ ନିମ୍ନୋକ୍ତ ପ୍ରକାରେ ରଚନା କରିଥିଲେ —

"ଜ ଘାରତେ ଚମନଉ୍ ବର ବାହାର୍ ମିନ୍ନତ ହାସ୍ତ୍
କେ ଗୁଲ୍ ବଦସ୍ତେ ତୁ ଅଜ୍ ଶାଖ ତାଜାତର୍ ମାନଦ୍"

( ସମସ୍ତ ପୁଷ୍ପକୁ ବୃନ୍ତଚ୍ୟୁତ କରି, ବସନ୍ତର ମାନ କରିଛ ହ୍ରାସ
ସୁନ୍ଦର ଗୋଲାପ ତୁମ ହାତେ ଦେଖି ବୃନ୍ତର ଗୋଲାପ ପାଇଛୁ ତ୍ରାସ )

ଆପଣମାନେ ନିଶ୍ଚୟ ମୋ ସହ ଏକ ମତ ହେବେ ଯେ ଇକ୍‌ବାଲ୍‌ଙ୍କ ପଦଟି ଗାଲିବ୍ ଆମଲଙ୍କ ପଦଠାରୁ ଢେର୍ ସୁନ୍ଦର ।

ଇକବାଲ୍ ତାଙ୍କର ଉର୍ଦ୍ଦୁ କବିତାର ଶେଷ ସଂକଳନ (ଅର୍‌ମୁଗାନେ-ହେଜାଜ୍) ମଧ୍ୟ ନବାବ୍ ସାହେବଙ୍କୁ ଉତ୍ସର୍ଗ କରିଥିଲେ ଯାହା ତାଙ୍କ ମୃତ୍ୟୁପରେ ପ୍ରକାଶିତ ହୋଇଥିଲା ।

ଇକ୍‌ବାଲ୍‌ଙ୍କ ପାର୍ଶି ମସ୍‌ନର୍ଭି "ପସ୍ ଚେ ବାୟଦ୍ କର୍‌ଦ ଏ ଆକ୍-ୱାମେ ଶର୍‌କ୍"ର ରଚନା ମଧ୍ୟ ତାଙ୍କ ଭୋପାଳ ରହଣି ମଧ୍ୟରେ ଆରମ୍ଭ ହୋଇଥିଲା ଏବଂ ତାଙ୍କର ଭୋପାଳରୁ ପ୍ରତ୍ୟାବର୍ତ୍ତନର ୨ ମାସ ପରେ ଅର୍ଥାତ୍ ସେପ୍‌ଟେମ୍ବର ୧୯୩୬ରେ ସମାପ୍ତ ହୋଇଥିଲା ।

ଉପରୋକ୍ତ ଘଟଣାବଳୀରୁ ଏ କଥା ପ୍ରାଞ୍ଜଳ ଯେ, ଭୋପାଳ ସଂପର୍କ ବ୍ୟତୀତ ଇକ୍‌ବାଲ୍‌ଙ୍କ ଜୀବନର କୌଣସି ଅଂଶ ବା କାର୍ଯ୍ୟ ସଂପୂର୍ଣ୍ଣ ବୋଲି କୁହା-ଯାଇ ନ ପାରେ । ଏହା ତାଙ୍କ ଜୀବନର ଏକ ପ୍ରସିଦ୍ଧ ଘଟଣା ।

ତାଙ୍କ ଜୀବନର କ୍ଲେଶଦାୟକ ସମୟରେ ଭୋପାଳ ତାଙ୍କୁ ଯେଉଁ ପ୍ରଶାନ୍ତି ପ୍ରଦାନ କରିଛି ଓ୍ୱାର୍ଡସ୍ ଓ୍ୱାର୍ଥଙ୍କ ମତରେ "ତାହାହିଁ ହେଉଛି କବିତା ରଚନା କରିବାର ଉପଯୁକ୍ତ ପରିବେଶ ।" ତାଙ୍କ ମତରେ କବିତାର ସଂଜ୍ଞା ହେଉଛି "ପ୍ରଶାନ୍ତ ଚିତ୍ତରେ ଭାବୋଚ୍ଛ୍ୱାସର ଅଭିବ୍ୟକ୍ତି" ଶେଷରେ ଆମେ ଭାଗ୍ୟବାନ ଯେ ଆମ୍ଭମାନଙ୍କ ମଧ୍ୟରେ ଏଭଳି ବିରଳ ବ୍ୟକ୍ତିତ୍ୱ ଅଛନ୍ତି ଯେ ପ୍ରସିଦ୍ଧ କବିଙ୍କ ଘନିଷ୍ଠ ସମ୍ପର୍କରେ ଆସିଥିଲେ ଏବଂ ତାଙ୍କୁ ଖୁବ୍ ନିକଟରୁ ଦେଖିବାର ସୁଯୋଗ

ଯାଇଛନ୍ତି । ସେ ହେଉଛନ୍ତି ଯବାବ୍ ମମନୁନ୍ ହସନ୍ ଖାନ୍ ସାହେବ । ଡ଼ଃ ଇକ୍-ବାଲ୍‌ଙ୍କ ଭୋପାଳରେ ବିଭିନ୍ନ ସମୟରେ ରହଣି କାଳରେ ସେ ତାଙ୍କର ସେକ୍ରେଟାରୀ ହିସାବରେ କାର୍ଯ୍ୟ କରିବାର ସୁଯୋଗ ଓ ଗୌରବ ଲାଭ କରିଥିଲେ । ଆମର ସୌଭାଗ୍ୟ ଯେ ସେ କବିଙ୍କର ବିଭିନ୍ନ କବିତା ଅଧ୍ୟୟନରେ ଆମକୁ ସାହାଯ୍ୟ କରିବା ପାଇଁ ଏବେ ମଧ୍ୟ ଆମ ମଧ୍ୟରେ ବିଦ୍ୟମାନ । ମୁଁ ଇକ୍‌ବାଲ୍‌ଙ୍କ ଜଣେ ପ୍ରଶଂସକ ହୋଇଥିବା ସତ୍ତ୍ୱେ ତାଙ୍କୁ ସ୍ୱଚକ୍ଷୁରେ ଦେଖି ନ ଥିବାରୁ ମମନୁନ୍ ହସନ୍ ଖାନ୍‌ଙ୍କ ପ୍ରତି ଈର୍ଷାନ୍ୱିତ । ଜଣେ ପାକିସ୍ଥାନୀ ଯୁବକ ବି ମୋ ଭାବାବେଗକୁ ନିଜର ନିମ୍ନୋକ୍ତ ପଂକ୍ତିରେ ଉପଯୁକ୍ତ ଭାବରେ ରୂପ ଦେଇଛନ୍ତି –

"ମେଁ ଓ ମେହେରୁମ୍ କେ ପାୟା ନ ଜମାନା ତେରା
ତୁ ଓ ଖୁଶ୍‌ବଖତ୍ କେ ଯୋ ମେରେ ଜମାନେ ମେଁ ନହିଁ ।"

(ଖୁର୍ଶିଦ୍ ରିଜ୍‌ଭି)

(ମୁଁ ଜଣେ ଭାଗ୍ୟହୀନ କବି ତୁମ ଯୁଗେ ପ୍ରବେଶ ମୋ ନାହିଁ
ତୁମେ ସତେ ଭାଗ୍ୟବାନ, ମୋ ଯୁଗରେ ଜନ୍ମି ନାହିଁ । )

ଏହି ପଂକ୍ତିଟିକୁ ମୁଁ ସାମାନ୍ୟ ପରିବର୍ତ୍ତନ କରି ନିମ୍ନୋକ୍ତ ପ୍ରକାରରେ ଲେଖିଅଛି—

"ମେଁ ଓ ବଦ୍‌ବଖ୍ତ୍ ଯୋ ତେରେ ଜମାନେ ମେଁ ନ ଥା
ତୁ ଓ ଖୁସ୍‌ବଖତ୍ କେ ଯୋ ମେରେ ଜମାନେ ମେଁ ନହିଁ"

(ମୁଁ ଏପରି ଭାଗ୍ୟହୀନ ତୁମ ଯୁଗ ଦେଖି ନାହିଁ
ତୁମେ କେତେ ଭାଗ୍ୟଶାଳୀ, ଏ ଯୁଗରେ ଜନ୍ମି ନାହିଁ)

ମୁଁ ଏ କଥା ଜାଣି କୃତଜ୍ଞ ଯେ, ମୁଖ୍ୟମନ୍ତ୍ରୀ ଶ୍ରୀ ଅର୍ଜ୍ଜୁନ ସିଂଙ୍କ ବଳିଷ୍ଠ ନେତୃତ୍ୱରେ ସମ୍ପ୍ରତି ମଧ୍ୟପ୍ରଦେଶ ସରକାର ଇକ୍‌ବାଲ୍‌ଙ୍କ ଭୋପାଳ ସମ୍ପର୍କକୁ ବିଭିନ୍ନ ଉତ୍ସବ ଦ୍ୱାରା ଉଜ୍ଜୀବିତ କରି ରଖିବାର ଚେଷ୍ଟା କରୁଛନ୍ତି । ମଧ୍ୟପ୍ରଦେଶ ସରକାର ଇକବାଲ୍‌ଙ୍କ ରହିଥିବା "ଶିଶ୍ ମହଲ୍"ରେ "ଇକବାଲ୍ ଇନ୍‌ଷ୍ଟି-ଟ୍ୟୁଟ୍" ନିର୍ମାଣ କରୁଥିବାରୁ ଇକ୍‌ବାଲ୍‌ଙ୍କ ସମସ୍ତ ଉପାସକ ଏବଂ ଉର୍ଦ୍ଦୁ କବିତାର ସାଧାରଣ ପାଠକ ମଧ୍ୟପ୍ରଦେଶ ସରକାରଙ୍କଠାରେ କୃତଜ୍ଞ ରହିବେ । ପ୍ରକୃତରେ

ମୋର ଭାଷଣ ଉଦ୍‌ଘାଟନ କରିବାକୁ ଯାଇ ଶ୍ରୀ ଅର୍ଜୁନ ସିଂ ମଧ୍ୟପ୍ରଦେଶ ସରକାରଙ୍କର ଏହି ଇନ୍‌ଷ୍ଟିଚ୍ୟୁଟ୍ ସ୍ଥାପନ କରିବା କଥା ଉଲ୍ଲେଖ କରିଥିଲେ । ମୋର କେତେକ ବନ୍ଧୁ ବିଶ୍ୱାସ କରନ୍ତି ଯେ, ମୋର ବକ୍ତୃତାରେ ଉଦ୍‌ବୁଦ୍ଧ ହୋଇ ମଧ୍ୟପ୍ରଦେଶ ସରକାର ଭୋପାଳରେ ଏହି ଅନୁଷ୍ଠାନଟି ସ୍ଥାପନ କରିବା ନିମନ୍ତେ ନିଷ୍ପତ୍ତି ଗ୍ରହଣ କଲେ । ଏହା ସ୍ଥାପିତ ହେଲେ ମୁଁ ଏଥି ସହିତ ସଂଶ୍ଳିଷ୍ଟ ହେବାରେ ଗୌରବାନ୍ୱିତ ହେବି, କାରଣ ଏହା ଜାତୀୟ ଏବଂ ଆନ୍ତର୍ଜାତୀୟ ସ୍ତରରେ ଇକ୍‌ବାଲ୍‌ଙ୍କ ଉପରେ ଅଧ୍ୟୟନ ଓ ଗବେଷଣାର ଏକ ଖ୍ୟାତନାମା ଏବଂ ଅଗ୍ରଣୀ କେନ୍ଦ୍ରରୂପେ ବିବେଚିତ ହେବ ।

ଶେଷରେ ହରିୟାଣା ସାହିତ୍ୟ ଏକାଡେମୀ ଏହି ପୁସ୍ତିକାଟି ପ୍ରକାଶ କରିଥିବାରୁ ମୁଁ ନିଜର ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଅଛି ।

ଚଣ୍ଡୀଗଡ଼ — ସ୍ୱାକ୍ଷର

୧୫ ନଭେମ୍ବର ୧୯୮୪ — ସୟଦ୍ ମୁଜଫ୍‌ଫର ହୋସେନ୍ ବର୍ଣ୍ଣି



# ୨ୟ ସଂସ୍କରଣର ମୁଖବନ୍ଧ

ଗତବର୍ଷ ଯେତେବେଳେ ଭୋପାଳ ବିଶ୍ୱବିଦ୍ୟାଳୟ ମୋତେ "ଇକ୍‌ବାଲ୍ ଓ ତାଙ୍କର ଦର୍ଶନ" ବିଷୟରେ ଭାଷଣ ଦେବାପାଇଁ ନିମନ୍ତ୍ରଣ କଲେ, ମୁଁ ତତ୍‌କ୍ଷଣାତ୍ ସମ୍ମତି ପ୍ରଦାନ କଲି । କାରଣ ମୁଁ ଭାବିଲି, ଏଭଳି ଏକ ଉଚିତ୍ ବିଷୟରେ ମୁଁ ମୋର ନିଜର ମତାମତ ସ୍ପଷ୍ଟଭାବେ ବ୍ୟକ୍ତ କରିପାରିବି । ଇକ୍‌ବାଲ୍‌ଙ୍କ କବିତାକୁ ମୁଁ ଗଭୀର ଭାବେ ଅନୁଧ୍ୟାନ କରିଛି । ତଥାପି ପଣ୍ଡିତ ଓ ସମାଲୋଚକମାନେ ଇକବାଲ୍‌ଙ୍କ କବିତା ଓ ଦର୍ଶନ ଉପରେ ଏତେ ବେଶୀ ଲେଖିଛନ୍ତି ଯେ ଉପଯୁକ୍ତ ପାଣ୍ଡିତ୍ୟ ବିନା ତାଙ୍କ ଲେଖାର ଯେ କୌଣସି ଦିଗନ୍ତ ଉପରେ ବିଶେଷ ଆଲୋକପାତ କରିବା ଏକ ବୃଥା ପ୍ରୟାସ ହେବ । ଦୁର୍ଭାଗ୍ୟ-ବଶତଃ ଇକ୍‌ବାଲଙ୍କ କବିତାର ମୂଲ୍ୟାଙ୍କନ ପାଇଁ କେତେକ ନିର୍ଦ୍ଦିଷ୍ଟ ମାନଦଣ୍ଡ ନିର୍ଦ୍ଧାରିତ ହୋଇସାରିଛି ଏବଂ ଏହାକୁ ଅତିକ୍ରମ କରି ତାଙ୍କ କବିତା ଓ ଦର୍ଶନ ଉପରେ ଆଧୁନିକ ମତାମତ ଦେବା ଖୁବ୍ କଷ୍ଟକର ବ୍ୟାପାର । ଅଧିକନ୍ତୁ ସେ ଆମର ଆଦର୍ଶ, ବିଶ୍ୱାସ ଓ ଭ୍ରାନ୍ତଧାରଣା ମଧ୍ୟରେ ପିଞ୍ଜରାବଦ୍ଧ ।

ଇକ୍‌ବାଲ୍‌ଙ୍କୁ ଉପଯୁକ୍ତ ଭାବେ 'ପ୍ରାଚ୍ୟର କବି' ଆଖ୍ୟା ଦିଆଯାଇଛି । ଯେତେବେଳେ ପାଶ୍ଚାତ୍ୟ ସାମ୍ରାଜ୍ୟବାଦ ଏହାର ଚରମ ଶିଖରରେ ଅବତୀର୍ଣ୍ଣ ହୋଇଥିଲା ଏବଂ ଏସିଆର ପ୍ରାୟ ସବୁଦେଶ ଔପନିବେଶବାଦ ଯନ୍ତ୍ରଣାରେ ନିଷ୍ପେଷିତ ହେଉଥିଲା, ସେ ପ୍ରାଚ୍ୟର ଆଧ୍ୟାତ୍ମିକ ଚେତନା, ସାଂସ୍କୃତିକ ପ୍ରାଧାନ୍ୟ ଏବଂ ଗୌରବର ପୁନଃ ସମର୍ଥନ ଓ ନିଶ୍ଚିତ ସ୍ୱୀକୃତି ପାଇଁ ଦୃଢ଼ଭାବେ ଆହ୍ୱାନ ଦେଇଥିଲେ । ନିଜ କବିତାରେ ସେ ପ୍ରାଚ୍ୟର ଦର୍ଶନ ଉପରେ ଗଭୀରଭାବେ ଆଲୋକପାତ କରିଥିଲେ ଏବଂ ପ୍ରାଚ୍ୟ ଦେଶଗୁଡ଼ିକରେ ତାର ମୂଲ୍ୟବାନ ସାଂସ୍କୃତିକ ପରମ୍ପରା, ପ୍ରଜ୍ଞା, ଜୀବନ ପ୍ରତି ସେମାନଙ୍କର ସ୍ୱତନ୍ତ୍ର ଦୃଷ୍ଟିଭଙ୍ଗୀ ଓ ମାନବିକ ଚିନ୍ତାଧାରା ବିଷୟକ ଅମୂଲ୍ୟ ଦାନ ପ୍ରତି ସେମାନଙ୍କୁ ସଚେତନ କରିବାର ପ୍ରୟାସ କରିଥିଲେ । ଏହି ପଦ୍ଧତିରେ ଅବଶ୍ୟ ସେ ମାନବ ଇତିହାସ ଗଠନରେ ଇସ୍‌ଲାମ୍‌ର ଐତିହାସିକ ଭୂମିକା ଉପରେ ଆଲୋକପାତ କରିଛନ୍ତି । ଇସ୍‌ଲାମୀୟ ଚିନ୍ତାଧାରା ପ୍ରତି ଇକ୍‌ବାଲଙ୍କ ଅନୁରାଗ, ତାଙ୍କର ବିଶ୍ୱାସ ଦ୍ୱାରା ବ୍ୟାଖ୍ୟା

କରାଯାଇପାରିବ । ଏହା ଜୀବନର ଏକ ଧାରା ଓ ଆଚରଣବିଧି ପ୍ରଦାନ କରି-ବାର ଭିତ୍ତିଭୂମି ଥିଲା ଏବଂ ଆତ୍ମବିଶ୍ୱାସ, ଆତ୍ମୋନ୍ନତି ବା ଇକ୍‌ବାଲ୍‌ଙ୍କ ଭାଷାରେ "ଖୁଦି", "ଆତ୍ମନ୍‌" ବା "ଅହଂ" ବିକାଶ ପାଇଁ ସହାୟକ ଥିଲା । ଇକ୍‌ବାଲ୍‌ଙ୍କ ଇସ୍‌ଲାମୀୟ ଚିନ୍ତାଧାରାରେ ପ୍ରକୃତ ଜାତୀୟତାର ଉପାଦାନ ନିହିତ ଥିଲା । ଏହା ତତ୍‌କାଳୀନ ସାମ୍ରାଜ୍ୟବାଦୀ ଶକ୍ତିର ଔପନିବେଶିକ ଲୁଣ୍ଠନ ଓ ଜନମବିଦ୍ଧିଷ୍ଟ ଅତ୍ୟାଚାରର ଫଳରେ ଆହୁରି ଉନ୍ନତ ହୋଇଥିଲା କିନ୍ତୁ ଦୁର୍ଭାଗ୍ୟବଶତଃ ଯେଉଁ ପଣ୍ଡିତ ବା ସମାଲୋଚକଙ୍କର ଇସ୍‌ଲାମୀୟ ଶିକ୍ଷା ଓ ଦର୍ଶନରେ ପ୍ରବେଶ ନ ଥିଲା ସେମାନଙ୍କ ଦ୍ୱାରା ଇକ୍‌ବାଲ୍‌ଙ୍କ ଇସ୍‌ଲାମୀୟ ଚିନ୍ତାଧାରା ଉପରେ ଦୃଷ୍ଟିଭଙ୍ଗୀ ଉପସ୍ଥାପିତ କରାଗଲା । ଏହାଦ୍ୱାରା ସଂକୀର୍ଣ୍ଣମନା ସମାଲୋଚକଙ୍କ ଦୃଷ୍ଟିରେ ଇକ୍‌ବାଲ୍‌ଙ୍କ ବିରୁଦ୍ଧରେ ଭ୍ରାନ୍ତ ଧାରଣା ବୃଦ୍ଧି ପାଇଲା । ଫଳତଃ, ତାଙ୍କ ଶେଷ ଜୀବନର କେତେଗୁଡ଼ିଏ ବକ୍ତୃତା ଓ ବକ୍ତବ୍ୟକୁ ଏପରି ବ୍ୟାଖ୍ୟା କରାଗଲା, ଯେପରି କି ସେ ପାକିସ୍ଥାନର ନିର୍ମାତା ଥିଲେ । ଏପରି କି ସ୍ୱାଧୀନତା ପରେ ଭାରତର ଉଦ୍ଧ୍ ଅନୁରାଗୀମାନେ ମଧ୍ୟ ଇକ୍‌ବାଲ୍‌ଙ୍କ ନାମ ପାକିସ୍ଥାନ ସୃଷ୍ଟି ସହ ଜଡ଼ିତ ହୋଇ-ଯାଇଥିବାରୁ, ତାଙ୍କୁ ବିସ୍ମୃତି ଗର୍ଭକୁ ଠେଲିଦେଲେ । କହିବାକୁ ଗଲେ ୧୯୭୦ ପରେ ଇକ୍‌ବାଲ୍‌ ଭାରତରେ ପୁନର୍ଜୀବନ ଲାଭ କଲେ, ଯେଉଁ ଭାରତକୁ ସେ ପୃଥିବୀର "ସର୍ବୋତ୍କୃଷ୍ଟ ଦେଶ" ବୋଲି କହୁଥିଲେ । ଭାରତ ତାଙ୍କୁ କେବଳ ସ୍ୱତନ୍ତ୍ର ଜୀବନଧାରା ଓ ଅକ୍ଷୟ ସଭ୍ୟତାକୁ ପ୍ରଶଂସା କରିବାର ଶିକ୍ଷା ଦେଇ ନ ଥିଲା ବରଂ ଏହାଦ୍ୱାରା ଉଦ୍‌ବୁଦ୍ଧ ହୋଇ ସେ ଏହାର ପର୍ବତ, ନଦନଦୀ, ଉପତ୍ୟକା, ଅଧିତ୍ୟକା ବିଷୟରେ ନିଜର 'ସ୍ୱଦେଶପ୍ରେମୀ କବିତାରେ କେତେଗୁଡ଼ିଏ ଅତି ସୁନ୍ଦର ପଂକ୍ତି ରଚନା କରିବାକୁ ପ୍ରେରଣା ପାଇଥିଲେ । ଅନେକ ଚିନ୍ତା ପରେ ମୁଁ ସ୍ଥିର କଲି ଯେ, ଇକ୍‌ବାଲ୍‌ଙ୍କ କବିତାର ଏହି ଦିଗଟିକୁ ସମାଲୋଚନାତ୍ମକ ଦୃଷ୍ଟି-ଭଙ୍ଗୀରେ ପରୀକ୍ଷା କରାଯିବା ଉଚିତ । ସ୍ୱଦେଶ ପ୍ରେମ ବିଷୟରେ ତାଙ୍କର ଧାରଣା କ'ଣ ଥିଲା ? ମାତୃଭୂମି ପ୍ରତି ତାଙ୍କର ଦୃଷ୍ଟିଭଙ୍ଗୀ କିପରି ଥିଲା ? ଜାତୀୟତା ବିଷୟରେ ତାଙ୍କର ଧାରଣା କ'ଣ ଥିଲା ? ସେ କ'ଣ ଏକ ବିଚ୍ଛିନ୍ନତାବାଦୀ ଆନ୍ଦୋ-ଳନର ପ୍ରସ୍ତାବକ ଥିଲେ ନା ସେ ଜାତୀୟ ଏକତା ଓ ସଂହତିର ସମର୍ଥକ ଥିଲେ ? ଏହି ବକ୍ତୃତାରେ ସେହି ପ୍ରଶ୍ନଗୁଡ଼ିକର ଉତ୍ତର ଦେବାର ଚେଷ୍ଟା କରାଯାଇଛି ।

ତଥାପି ଏପରି ବିସ୍ତୃତ ବକ୍ତୃତାର କେତେକ ନିର୍ଦ୍ଧିଷ୍ଟ ନିୟମ ରହିଛି ଏବଂ ଏଥିପାଇଁ କେତେକ ମୁଖ୍ୟ ତଥ୍ୟ ମୁଁ ଏହି ଆଶାରେ ଛାଡ଼ିଦେଲି କାରଣ ମୁଁ

ଯେଉଁମାନଙ୍କୁ ଉଦ୍‌ବୋଧନ ଦେଉଥିଲି, ସେମାନେ ଏ ବିଷୟରେ ଅନେକ କଥା ସହିତ ପରିଚିତ ଥିଲେ । ଇଂରାଜୀରେ ଏହି ବକ୍ତୃତା ଛପାଯିବା ପରେ ଏବଂ ଉର୍ଦ୍ଦୁ ଓ ହିନ୍ଦୀରେ ଅନୁବାଦିତ ହେବା ପରେ ବିଭିନ୍ନ ଆଡ଼େ ଏହାର ଭୂୟସୀ ପ୍ରଶଂସା କରାଗଲା । ମୁଁ ବିଷୟଟି ସୁନ୍ଦର ଓ ନିରପେକ୍ଷଭାବେ ଉପସ୍ଥାପିତ କରିଥିବାରୁ ପଣ୍ଡିତ, ସମାଲୋଚକମାନେ ମଧ୍ୟ ଏହାର ପ୍ରଶଂସା କଲେ । ସାହିତ୍ୟ ପତ୍ରିକା ଓ ସମ୍ବାଦପତ୍ରମାନଙ୍କରେ ଏହାର ପ୍ରଶଂସା ମୋତେ ଏତେଦୂର ପ୍ରୋତ୍ସାହନ ଦେଲା ଯେ, ମୁଁ ଏହାକୁ ଏକ କ୍ଷୁଦ୍ର ପୁସ୍ତିକାରୂପ ଦେବାକୁ ଲାଳାୟିତ ହେଲି ।

ଏହି ବକ୍ତୃତା ଏତେ ଜନପ୍ରିୟତା ଲାଭ କରିଥିଲା ଯେ କେତେକ ବନ୍ଧୁ ଏହାକୁ ବିଭିନ୍ନ ଆଞ୍ଚଳିକ ଭାଷାରେ ଅନୁବାଦ କରିବାକୁ ସ୍ଥିର କଲେ । ଏହାର ଅସମୀୟ, ବଙ୍ଗଳା ଓ ତାମିଲ୍ ଅନୁବାଦ ଖୁବ୍ ଶୀଘ୍ର ପ୍ରକାଶିତ ହେବ । ସମ୍ପ୍ରତି କର୍ଣ୍ଣାଟକ ସାହିତ୍ୟ ଏକାଡେ଼ମୀ ଏହାକୁ କନ୍ନଡ଼ ଭାଷାରେ ଅନୁବାଦ କରିବାକୁ ଆଗ୍ରହ ପ୍ରକାଶ କରିଛନ୍ତି । ସମ୍ଭବତଃ ଏହା ଅନ୍ୟାନ୍ୟ କେତେକ ଆଞ୍ଚଳିକ ଭାଷାରେ ମଧ୍ୟ ଅନୁବାଦିତ ହୋଇପାରେ । ଯେଉଁ ବିଦ୍ୱାନ ଓ ବନ୍ଧୁମାନେ ମୋତେ ଏହି ସାହିତ୍ୟିକ ପ୍ରଚେଷ୍ଟାରେ ସାହାଯ୍ୟ କରିଛନ୍ତି, ସେମାନଙ୍କୁ ମୁଁ ମୋର ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି । ସମ୍ପ୍ରତି ବକ୍ତୃତାଟିର ୧ମ ସଂସ୍କରଣ ସରିଯାଇଥିବାରୁ ମୁଁ ଏହାକୁ କିଛି ପରିବର୍ଦ୍ଧିତ ଓ ପରିବର୍ତ୍ତିତ କରି ଏହାର ୨ୟ ସଂସ୍କରଣ ପ୍ରକାଶ କରିବାକୁ ଉତ୍ସାହିତ ହୋଇଛି । ଏହି ବହିଟି ବିଭିନ୍ନ ଆଞ୍ଚଳିକ ଭାଷାରେ ଅନୁବାଦିତ ହେଉଥିବାରୁ ବକ୍ତୃତାରେ ଯେଉଁ କବିତାଗୁଡ଼ିକ ସଂକ୍ଷେପରେ ଉଦ୍ଧୃତ କରାଯାଇଥିଲା, ସେଗୁଡ଼ିକୁ ମୁଁ ସଂପୂର୍ଣ୍ଣ ଭାବରେ ଏଥିରେ ସନ୍ନିବେଶ କରିଛି । ଯେଉଁମାନେ ଉର୍ଦ୍ଦୁ ଭାଷା ଜାଣନ୍ତି ସେମାନେ ଇକ୍‌ବାଲ୍‌ଙ୍କ କବିତା ସହ ପରିଚିତ । କିନ୍ତୁ ଅନ୍ୟ ଭାଷାଭାଷୀ ପାଠକମାନଙ୍କ ପାଇଁ କେତେକ ପଂକ୍ତି ବା କେତୋଟି କବିତା ସଂକେତ ସ୍ୱରୂପ ଉଲ୍ଲେଖ କରିଦେଲେ ଯଥେଷ୍ଟ ହେବନାହିଁ ତେଣୁ ବିଷୟଟିର ଉପସ୍ଥାପନା ପାଇଁ କବିତାଗୁଡ଼ିକୁ ଅନ୍ତର୍ଭୁକ୍ତ କରିବାର ଯଥାର୍ଥତା ଏବଂ ଏହାଦ୍ୱାରା ଇକ୍‌ବାଲ୍‌ଙ୍କ କେତେକ ସର୍ବୋତ୍କୃଷ୍ଟ ପଂକ୍ତି ମଧ୍ୟ ଆଞ୍ଚଳିକ ଭାଷାରେ ଅନୁବାଦିତ ହୋଇପାରିବାର ସାମର୍ଥ୍ୟକୁ ଦୃଷ୍ଟିରେ ରଖି ମୁଁ ବକ୍ତୃତାଟିକୁ ପରିବର୍ଦ୍ଧିତ ଓ ପରିବର୍ତ୍ତିତ କରି ପୁସ୍ତକାକାରରେ ପରିଣତ କଲି । ଏଥିପାଇଁ ମୁଁ ଏ ସମ୍ପର୍କରେ କୌଣସି ତଥ୍ୟ ବାଦ୍ ଦେଇନାହିଁ, କିନ୍ତୁ ମୁଁ ବିଷୟଟି ପ୍ରତି ଉପଯୁକ୍ତ ନ୍ୟାୟ ପ୍ରଦାନ କରିଛି କି ନାହିଁ ତାହା ମୁଁ କହିପାରୁ ନାହିଁ ।

ବକ୍ତୃତାଟିକୁ ନୂତନ ରୂପ ଦେବାବେଳେ ମୁଁ କେତେକ ବନ୍ଧୁଙ୍କର ମୂଲ୍ୟବାନ ପରାମର୍ଶକୁ ଗ୍ରହଣ କରିଛି । ସେମାନଙ୍କର ମୂଲ୍ୟବାନ ପରାମର୍ଶ ପାଇଁ ମୁଁ କୃତଜ୍ଞ । ଏହି ବହିଟିର ଦୋଷତ୍ରୁଟି ବିଷୟରେ ଅବଗତ ହେଲେ ପରବର୍ତ୍ତୀ ସଂସ୍କରଣରେ ଏହା ଦୂର କରାଯାଇପାରିବ ।

ଇକ୍‌ବାଲ୍‌ଙ୍କ ଉପରେ ଏ ବହିଟି ଯେ ଏକ ଅମୂଲ୍ୟ ସଂପଦ—ଏ ଅହଂକାର ମୋର ନାହିଁ । ମୁଁ ଏ କଥା ମଧ୍ୟ ଦାବୀକରୁ ନାହିଁ ଯେ, ଏହା "ଇକ୍‌ବାଲ୍ ଆବିଷ୍କାର" ଅଟେ । ତଥାପି ଉଦାରମନା ପାଠକମାନେ ଏ କଥା ସ୍ୱୀକାର କରିବେ ଯେ, ଏଥିରେ ଇକ୍‌ବାଲ୍‌ଙ୍କୁ ଭାରତରେ ପୁନଃ ପ୍ରତିଷ୍ଠିତ କରିବା ନିମନ୍ତେ ଏକ ନିଷ୍କପଟ ପ୍ରଚେଷ୍ଟା କରାଯାଇଛି । ଯଦି ଅଧୁନା ଇକ୍‌ବାଲ୍‌ଙ୍କ ପ୍ରତି ଥିବା ଭ୍ରାନ୍ତ ଧାରଣା ଲୋକମାନଙ୍କ ମନରୁ ଦୂର ହେବ ଏବଂ ଇକ୍‌ବଲ୍ ଏ ଦେଶର ପ୍ରସିଦ୍ଧ କବିଙ୍କ ମଧ୍ୟରେ ତାଙ୍କର ଯଥାର୍ଥ ସ୍ଥାନ ପାଇପାରିବେ, ତେବେ ମୋର ଶ୍ରମ ସାର୍ଥକ ହେବ ।

ସାହିତ୍ୟିକମାନେ ମୋର ଏହି ପୁସ୍ତିକାଟିର ଭୂୟସୀ ପ୍ରଶଂସା କରିଛନ୍ତି । ସେମାନଙ୍କର ଇଚ୍ଛା ଯେ, ମୁଁ ଇକ୍‌ବାଲ୍‌ଙ୍କ କବିତାର ଅନ୍ୟଦିଗ ଓ ଦର୍ଶନ ଉପରେ ଲେଖିବା ଉଚିତ । କେତେବର୍ଷ ଧରି ମୁଁ ଇକ୍‌ବାଲ୍‌ଙ୍କୁ ଅଧ୍ୟୟନ କରୁଛି ଏବଂ ତାଙ୍କର କବିତାଗୁଡ଼ିକୁ ଅନୁଧ୍ୟାନ କରୁଛି । ମୋର ଦୃଢ଼ ବିଶ୍ୱାସ ଯେ, ଇକ୍‌ବାଲ୍ ଅତୀତର ନୁହଁନ୍ତି ବରଂ ଭବିଷ୍ୟତର କବି । ଭାବୀ ବଂଶଧରମାନଙ୍କୁ ତାଙ୍କର ଆହ୍ୱାନ, ପୂର୍ବ ବା ବର୍ତ୍ତମାନ ବଂଶଧରମାନଙ୍କୁ ବେଶୀମାତ୍ରାରେ ଉଦ୍‌ବୁଦ୍ଧ କରିବ ।

ଏ ବହିଟିର ସଂକଳନରେ ଯେଉଁ ବନ୍ଧୁମାନେ ମୋତେ ସାହାଯ୍ୟ କରିଛନ୍ତି ସେମାନଙ୍କୁ ମୁଁ ଆନ୍ତରିକ ଧନ୍ୟବାଦ ଦେଉଛି । ମୋର ପରମବନ୍ଧୁ ଡଃ ନିଶାର୍ ଅହେମଦ୍ ଫାରୁକିଙ୍କ ପ୍ରତି ମୁଁ ବିଶେଷ କୃତଜ୍ଞ, ଯାହାଙ୍କ ଅକୁଣ୍ଠିତ ଓ ଅକ୍ଲାନ୍ତ ଚେଷ୍ଟା ବିନା ବହିଟିର ପ୍ରକାଶନ ସମ୍ଭବ ହୋଇ ନ ଥାନ୍ତା । "ଇକ୍‌ବାଲ୍‌ଙ୍କ ଶିକ୍ଷାଗତ ଦର୍ଶନ" (ଯାହା ବର୍ତ୍ତମାନ ସୁଦ୍ଧା ପ୍ରସିଦ୍ଧ)ର ଲେଖକ ସ୍ୱର୍ଗତ ଡଃ କେ. ଜି. ସୈୟେଦିନ୍‌ଙ୍କ ବିଦୁଷୀ କନ୍ୟା ସୟୀଦା ସଇଦା ସୈୟେଦିନ୍ ଇକ୍‌ବାଲ୍‌ଙ୍କ କେତୋଟି କବିତାକୁ ଚମତ୍କାର ଭାବେ ଇଂରାଜୀରେ

ଅନୁବାଦ କରିଛନ୍ତି । ତାଙ୍କୁ ଧନ୍ୟବାଦ ନ ଦେଲେ ମୁଁ ମୋ କର୍ତ୍ତବ୍ୟରେ ଅବହେଳା କରିବି । ଶ୍ରୀ ସୁଲତାନ୍ ଅନଜୁମ୍ ଯେଉଁ ଅକ୍ଳାନ୍ତ ପରିଶ୍ରମ କରି ବହିଟିକୁ ପ୍ରକାଶ କରିଛନ୍ତି, ତାଙ୍କୁ ଧନ୍ୟବାଦ ନ ଦେଇ ରହିପାରୁ ନାହିଁ । ଶେଷରେ ହରିୟାଣା ସାହିତ୍ୟ ଏକାଡେମୀ ବହିଟିକୁ ଯଥା ସମୟରେ ଓ ସୁନ୍ଦର ଭାବରେ ପ୍ରକାଶ କରିଥିବାରୁ ମୁଁ ଆନ୍ତରିକ ଧନ୍ୟବାଦ ଅର୍ପଣ କରୁଛି ।

ସ୍ୱାକ୍ଷର

**ସୟଦ ମୁଜଫ୍‌ଫର୍ ହୁସେନ୍ ବର୍ଣ୍ଣି**



# * ଦେଶାତ୍ମବୋଧ

ଇକ୍‌ବାଲଙ୍କ ତିରୋଧାନର ଅର୍ଦ୍ଧ ଶତାବ୍ଦୀ ପରେ ମଧ୍ୟ ଜାତୀୟ ସଂହତି ପାଇଁ ତାଙ୍କ ଆହ୍ୱାନ ବିଷୟରେ ଅନେକ ଭୁଲ ଧାରଣା ରହିଛି । ଇକ୍‌ବାଲ ଜଣେ ଜ୍ୱଳନ୍ତ ଦେଶଭକ୍ତ, ସାମ୍ପ୍ରଦାୟିକ ସଦ୍‌ଭାବର ବଳିଷ୍ଠ ସମର୍ଥକ ଏବଂ ଭାରତୀୟ ଦାର୍ଶନିକ ଓ ସାଧୁମାନଙ୍କର ପ୍ରଶଂସାକାରୀ ବ୍ୟକ୍ତି ଥିଲେ । ଇସ୍‌ଲାମ୍ ଧର୍ମ ସହ ତାଙ୍କର ଘନିଷ୍ଠ ସମ୍ପର୍କ ଥିବା ସତ୍ତ୍ୱେ ସେ ଭାରତୀୟ ଦର୍ଶନ ଓ ଚିନ୍ତାଧାରା ଅଧ୍ୟୟନ କରିଥିଲେ ଓ ତାକୁ ଗ୍ରହଣ କରିଥିଲେ । ବର୍ତ୍ତମାନ ଆମ ଦେଶର ସଙ୍କଟସଙ୍କୁଳ ମୁହୂର୍ତ୍ତରେ ଯେତେବେଳେ ଜାତି, ଧର୍ମ, ବର୍ଣ୍ଣ ଓ ଆଞ୍ଚଳିକତା ପାଇଁ ତିକ୍ତତା, ବିଦ୍ୱେଷ ଓ ସଂଘର୍ଷ ଲାଗିରହିଛି, ତାଙ୍କର ଦେଶପ୍ରୀତି ଆହ୍ୱାନର ଯଥେଷ୍ଟ ଗୁରୁତ୍ୱ ରହିଛି ।

## ଦେଶପ୍ରେମ

ଦେଶପ୍ରେମ ହେଉଛି ଜାତୀୟ ସଂହତିର ମୂଳଦୁଆ । ଇକ୍‌ବାଲ ତାଙ୍କ କବିତାର ପ୍ରଥମାବସ୍ଥାରେ କେତେଗୁଡ଼ିଏ ସୁନ୍ଦର ଚମତ୍କାର ଓ ହୃଦୟସ୍ପର୍ଶୀ ସ୍ୱଦେଶାନୁରାଗୀ କବିତା ରଚନା କରିଥିଲେ ।

ଏ କଥା ଉଲ୍ଲେଖଯୋଗ୍ୟ ଯେ ତାଙ୍କର ଉର୍ଦ୍ଦୁର ପ୍ରଥମ କବିତା ସଂକଳନ "ବାଙ୍ଗ୍ ଏ ଦରା" (୧୯୨୪) ହିମାଳୟକୁ ଲକ୍ଷ୍ୟକରି ଆରମ୍ଭ ହୋଇଛି । ଏ କଥା ସ୍ମରଣ କରାଯାଇ ପାରେ ଯେ, ୧୯୦୦ରେ ଲାହୋର ଠାରେ ଅନୁଷ୍ଠିତ ଅଞ୍ଜୁମନ୍-ଏ- ହିମାୟତ୍-ଏ-ଇସ୍‌ଲାମ୍‌ର ବାର୍ଷିକ ଅଧିବେଶନରେ ଇକ୍‌ବାଲ ଯେତେବେଳେ ତାଙ୍କର କବିତା "ନାଲା-ଏ ୟତିମ୍" (ପିତୃମାତୃହୀନ ସନ୍ତାନର କ୍ରନ୍ଦନ) ଆବୃତ୍ତି କଲେ, ତାଙ୍କୁ ଅନେକ ଖ୍ୟାତି ମିଳିଥିଲା । ତଥାପି ତାଙ୍କର ପ୍ରଥମ ସଂକଳନଟି ଏହି କବିତାରୁ ଆରମ୍ଭ ହୋଇନାହିଁ । କିମ୍ବା ସେ ଏହି କବିତାଟିକୁ କୌଣସି ସଂକଳନରେ ସ୍ଥାନ ଦେଇ ନାହାଁନ୍ତି । ହିମାଳୟ ସମ୍ପର୍କୀୟ ତାଙ୍କ କବିତାରେ ସେ ଭାରତର ପ୍ରାଚୀନ ସଭ୍ୟତା ଓ ହିମାଳୟ ପର୍ବତ ଶ୍ରେଣୀର

ସୌନ୍ଦର୍ଯ୍ୟର ପ୍ରଶସ୍ତି ଗାନ କରିଛନ୍ତି । ତାଙ୍କ ମତରେ ହିମାଳୟ କେବଳ ଏକ ପର୍ବତ ଶ୍ରେଣୀ ନୁହେଁ, ଏହା ଭାରତୀୟ ଅଖଣ୍ଡତାର ଏକ ଜାଗ୍ରତ ପ୍ରହରୀ ।

**ହିମାଲ୍ :**

ଐ ହିମାଲୟ ! ଐ ଫସିଲେ କିଶ୍ୱରେ ହିନ୍ଦୁସ୍ତାଁ
ଚୁମ୍‌ତା ହୈ ତେରି ପେଶାନିକୁ ଝୁକ୍‌କର୍ ଆସ୍‌ମାଁ !
ତୁଝ୍ ମେଁ କୁଛ୍ ପୈଦା ନାହିଁ ଦେରିନା ରୋଜି କେ ନିଶାଁ
ତୁ ଜଓ୍ୱାଁ ହୈ ଗର୍‌ଦିଶେ ଶାମୋ ସହର୍ କେ ଦର୍‌ମିଆଁ
ଏକ୍ ଜଲ୍‌ଓ୍ୱା ଥା କଲିମେ ତୁରେ ସିନା କେ ଲିଏ
ତୁ ତଜଲ୍ଲି ହୈ ସରାପା ଚଶମେ ବିନା କେ ଲିଏ

ଇମ୍‌ତେହାନେ ଦିଦଏ ଜାହିର୍ ମେ କୋହିସ୍ତାଁ ହୈ ତୁ,
ପାସ୍‌ବାଁ ଅପ୍‌ନା ହୈ ତୁ, ଦିଓ୍ୱାରେ ହିନ୍ଦୁସ୍ତାଁ ହୈ ତୁ
ମତ୍‌ଲଏ ଅଓ୍ୱଲ ଫଲକ୍ ଜିସ୍‌କା ହୋ ଓ ଦିଓ୍ୱାଁ ହୈ ତୁ
ସୁଏ ଖିଲ୍‌ଓ୍ୱତ୍ ଗାହେ ଦିଲ୍ ଦାମନ୍ କଶେ ଇନ୍‌ସାଁ ହି ତୁ
ବର୍ଫ ନେ ବାନ୍ଧି ହୈ ଦସ୍ତାରେ ଫଜିଲତ୍ ତେରେ ସର୍
ଖନ୍ଦାଜନ୍ ହୈ ଯୋ କୁଲାହେ ମେହ୍‌ରେ ଆଲମ୍ ତାବ୍ ପର୍

ତେରି ଉମ୍‌ରେ ରଫ୍‌ତା କି ଏକ୍ ଆନ୍ ହୈ ଅହଦେ କୋହନ୍
ଓ୍ୱାଦିଓଁ ମେଁ ହୈଁ ତେରି କାଲି ଘଟାଏଁ ଖେମାଜନ୍
ଚୋଟିଆଁ ତେରି ସୁରୈୟା ସେ ହୈଁ ସର୍ ଗର୍ମେ ସୁଖନ୍
ତୁ ଜମିଁ ପର୍ ଔର ପେହ୍‌ନାଏ ଫଲକ୍ ତେରା ଓ୍ୱତନ୍
ଚଶମ୍-ଏ-ଦାମନ୍ ତେରା ଆଇନା-ଏ-ସୈୟାଲ ହୈ
ଦାମନ୍-ମୌଜେ ହାଓ୍ୱା ଜିସ୍‌କେ ଲିଏ ରୁମାଲ ହୈ .

ଅବର୍ କେ ହାଥୋଁ ମେଁ ରେହ୍‌ଓ୍ୱାର ହଓ୍ୱାକେ ଓ୍ୱାସ୍ତେ
ତାଜିଆନା ଦେ ଦିଆ ବର୍‌କେ ସରେ କୋହସାର ନେ !
ଐ ହିମାଲ୍ ! କୋଇ ବାଜିଗାହ୍ ହୈ ତୁ ଭି ଜିସେ
ଦସ୍ତେ କୁଦ୍‌ରତ୍ ନେ ବନାୟା ହୈ ଅନାସିର୍ କେ ଲିଏ

ହାୟ୍ କ୍ୟା ଫର୍ତେ ତରବ୍ ମେଁ ଝୁମ୍‌ତା ଯାତା ହୈ ଅବର୍
ଫିଲେ ବେ ଜଞ୍ଜୀର୍ କି ସୁରତ୍ ଉଡ଼ା ଯାତା ହୈ ଅବର୍

ଜୁମ୍‌ବିଶେ ମୌଜେ ନସିମେ ସୁବ୍‌ହା ଗହ୍‌ୱାରା ବନ
ଝୁମ୍‌ତି ହୈ ନଶ୍‌ଏ ହସ୍ତି ମେଁ ହର୍ ଗୁଲ୍ କି କଲି
ୟୁଁ ଜବାନେ ବର୍ଗ ସେ ଗୋୟା ହୈ ଉସ୍‌କି ଖାମୁଶି
ଦସ୍ତେ ଗୁଲ୍‌ଚିଁ କି ଝଟକ୍ ମୈ ନେ ନହିଁ ଦେଖି କଭି
କହ୍ ରହି ହୈ ମେରି ଖାମୁଶି ହି ଅଫ୍‌ସାନା ମେରା
କୁଞ୍ଜେ ଖିଲ୍‌ୱତ୍ ଖାନା-ଏ-କୁଦ୍‌ରତ୍ ହୈ କାଶାନା ମେରା
ଆତି ହୈ ନଦ୍ଧି ଫରାଜେ କୋହ ସେ ଗାତି ହୁଇ
କୌଶରୋ ତସ୍‌ନିମ୍ କି ମୌଜୌଁ କୋ ଶର୍‌ମାତି ହୁଇ
ଆଇନା ସା ଶାହିଦେ କୁଦରତ୍ କୋ ଦିଖ୍‌ଲାତି ହୁଇ
ସଙ୍ଗ୍ ରହ୍‌ସେ ଗାହ୍ ବଚ୍‌ତି ଗାହ୍ ଟକରାତି ହୁଇ
ଛେଡ଼୍‌ତି ଯା ଇସ୍ ଇରାକେ ଦିଲ୍‌ନଶିଁ କେ ସାଜ୍ କୋ
ଐ ମୁସାଫିର୍ ଦିଲ୍ ସମଝ୍‌ତା ହୈ ତେରି ଆୱାଜ୍ କୋ

ଲୈଲିଏ ଶବ୍ ଖୋଲ୍‌ତି ହୈ ଆକେ ଯବ୍ ଜୁଲ୍‌ଫେ ରସା
ଦାମନେ ଦିଲ୍ ଖେଁଚ୍‌ତି ହୈ ଆବ୍‌ସାରୋଁ କି ସଦା,
ୱୋ ଖମୋଶି ଶାମ୍ କି ଜିସ୍ ପର୍ ତକଲ୍ଲୁମ୍ ହୋ ଫିଦା
ୱୋ ଦରଖ୍‌ତୌଁ ପର୍ ତଫକ୍‌କୁର୍ କା ସମାଁ ଛାୟା ହୁଆ
କାଁପତା ଫିର୍‌ତା ହୈ କ୍ୟା ରଙ୍ଗେ ଶଫକ୍ କୋହସାର ପର
ଖୁଶ୍‌ନୁମା ଲଗ୍‌ତା ହୈ ଯୋ ଗାଜା ତେରେ ରୁଖ୍‌ସାର୍ ପର୍

ଐ ହିମାଲା ! ଦାସ୍ତାଁ ଉସ୍ ୱକ୍ତ୍ କି କୋଇ ସୁନା
ମସ୍କନେ-ଆବାଏ-ଇନ୍‌ସାଁ ଜବ୍ ବନା ଦାମନ୍ ତେରା
କୁଛ୍ ବତା ଉସ୍ ସିଧିସାଧି ଜିନ୍ଦଗୀ କା ମାଜ୍‌ରା
ଦାଗ୍ ଜିସ୍‌ପର୍ ଗାଜାଏ-ରଙ୍ଗେ-ତକଲ୍ଲୁଫ୍ କା ନ ଥା
ହାଁ ଦେଖାଦେ ଐ ତସ୍‌ୱିର୍ ଫିର୍ ୱୋ ସୁବ୍‌ହା ଶାମ୍ ତୁ
ଦୌଡ଼୍ ପିଛେ କି ତରଫ୍ ଐ ଗର୍ଦିଶେ ଆୟାମ ତୁ !

(ହିମାଳୟ ! ତୁହି ଅଟୁ ଦୁର୍ଗ ଭରତର
ଆକାଶଟା ନଇଁ ଆସେ ଚୁମିବାକୁ ତୋ' ଉନ୍ନତ ଶିର ।
ବର୍ଷ ମାସ ଦିନ ଦଣ୍ଡ ପଛକୁ ପକାଇ
କେତେ ଯୁବା, ଲୋଭମାୟୀ – ଏ ବୟସେ ତୁହି ।
ତୁର୍ ପାହାଡ଼ରେ ଦିନେ ଦେଖାଦେଲା  ମହା ଦିବ୍ୟ ଜ୍ୟୋତି
ଦିବ୍ୟ ଦୃଷ୍ଟି ପାଇଁ ଅଟୁ ତୁହି – ଜ୍ୟୋତିର୍ମୟ ଜ୍ୟୋତି ।
ତୁ ଅଟୁ ମାତ୍ର ପର୍ବତ-ଯବୁର ଚକ୍ଷୁରେ
ରକ୍ଷାକର୍ତ୍ତା ତୁହି ଅଟୁ-ପ୍ରହରୀ ରୂପରେ ।
ତୁ ଅଟୁ ଏପରି ଏକ କବିତା ସ୍ତବକ
ପ୍ରଥମ ପଦଟି ଯା'ର-ଆକାଶ ଗୋଟାକ ।
ତୋ ନଭ୍ରତ ବାସ ପ୍ରତି—ଟାଣିଥାଉ ସବୁରିଙ୍କ ମନ
ତୁଷାର ମଣ୍ଡିତ ଶିର— ମୁକୁଟ ସମାନ ।
ଆଲୋକର ଉତ୍ସ ସୂର୍ଯ୍ୟ କେତେ ଦୂରେ ଥାଇ
ମରଇ ଲାଜରେ ସଦା-ଈର୍ଷାନ୍ୱିତ ହୋଇ ।

ତୋ ଜୀବନେ ଅତୀତ ଯୁଗଟା ମାତ୍ର ଅଟେ କେତୋଟି ପଲକ
ତୋ ଇଲାକା, ଉପତ୍ୟକା-କଳାମେଘ ଆଚ୍ଛାଦିତ-ତାଳଇ ଚମକ ।
ତୋ ଶିଖରେ ଛୁଇଁ ଛୁଇଁ ଯାଏ ଗ୍ରହ ଗ୍ରହାନ୍ତର
ସଚରାଚର ଏ ବିଶ୍ୱ—ଅଟେ ଏକ ତୋର ଏକ ଘର ।
ତୋ' ପାଦକୁ ସଦା ଧୋଇ ଦିଏ—କୁଳୁକୁଳୁ ତାନେ ସେ ତଟିନୀ
ତୋ' ମୁଣ୍ଡକୁ ଗର୍ବେ ଧରି ଖେଳେ—ସତେ ଅବା ଏକାନ୍ତ କାମିନୀ

ତୋ' କୋଳରେ ମେଘ ଖେଳେ, ଚପଳା ବିଜୁଳି
ବେଗଗାମୀ ଅଶ୍ୱ ପବନଟା—ସୃଷ୍ଟି କରେ ଭୁବୁକ୍ ଧାବେଳ ।
ହିମାଳୟ ତୁହି ଅଟୁ ପରିବ୍ୟାପ୍ତ ଚିର କ୍ରୀଡ଼ାସ୍ଥଳୀ .
ପ୍ରକୃତି ଗଢ଼ିଛି ତୋତେ, କେତେ ଯୁଗ, କେତେ ସ୍ନେହ ଗୋଳି
ମେଘମାଳା ମନ ପୁଲକରେ, ତୋ' ବୁକୁରେ ବିଚରଣ କରେ
ମତ୍ତହସ୍ତୀ ପରି ଗର୍ଜି—ଝୁଲି ଝୁଲି ଦିଗନ୍ତ ବାଟରେ ।

ପ୍ରଶ୍ନତ ଆକାଶ ତଳେ ସୁଶୀତଳ ମନ୍ଦ ସମୀରଣ
ହସି ହସି ଫୁଟିଫାଟି ପଡ଼େ—ବୃନ୍ତରେ ସୁମନ ।
ନୀରବରେ ନୀରବତା ନିଜ କଥା ନିଜେ ଶୁଣୁଥାଏ
କାହାର ବା ସାଧ ଅଛି—ବୃନ୍ତଚ୍ୟୁତ ହୋଇନି ଏ ଯାଏ ।
ପ୍ରକୃତିର ନିର୍ଜନତା; ସେଇ ମୋର ସବୁକିଛି—ସେହି ମୋର ଘର
ମୋ କାହାଣୀ ନୀରବତା ଗାଏ—ସେଇ ମୋର ସାକ୍ଷୀ, ସହଚର ।

ତୋ' ଶିଖରୁ ନଦନଦୀ ସୃଷ୍ଟି, ହର୍ଷଭରେ ଗୀତ ଗାଇ ଗାଇ
* ସ୍ୱର୍ଗେ ମନ୍ଦାକିନୀ ଆଉ ମର୍ତ୍ତ୍ୟର ତଟିନୀ ନିଜେ ମରୁଥାଇ
କେତେ ଘାତ ପ୍ରତିଘାତ, ଅତିକ୍ରମି ପଥପ୍ରାନ୍ତେ ବନ୍ଧୁର ଶଯ୍ୟାକୁ
ପ୍ରକୃତିର ପୂଜାରୀକୁ ସନ୍ତୋଷ ହଜାଇ--ତା ମୁହଁ ଦେଖାଇ ଦେବାକୁ
କବି ମନେ ତୋଳୁ ତୁ ଝଙ୍କାର, ବୀଣା ତାରେ ଅପୂର୍ବ ମୂର୍ଚ୍ଛନା
ହେ ନଦୀ ତୁ ଏକାନ୍ତ ପଥିକ ! ତୋ' ଗୀତିକା କରେ ଆନମନା

** ଲୈଲି (ଖସି ଦେବୀ) ଘନକୃଷ୍ଣ କବରୀ ତା' ମୁକୁଳା ଏ ଯେବେ
ତୋ' ବକ୍ଷରେ ଅସଂଖ୍ୟ ପ୍ରପାତ —ମନ ମୀନ ଝାଂରେ ନୀରବେ ।
ସନ୍ଧ୍ୟା ନୀରବତା ପାଶେ ବାବଦୂକ ବଚନ = ବଧିର
ଚନ୍ଦ୍ରାଲୋକେ ମୂକ ବୃକ୍ଷଲତା —ସନ୍ଧ୍ୟାଲଗ୍ନେ ଅତୀବ ଅଧିର ।
ହରିବଳୟ ଜେମା ଆସି ତୋ' ଦେହରେ ଫଗୁ ବୋଳିଦିଏ
ରଙ୍ଗର ହୋରି ତୋ' ଦେହେ—ଆହା ସତେ କେଡ଼େ ଶୋଭାପାଏ ।

ହେ ହିମାଦ୍ରି ! କହିବୁକି ବାରେ ଆଜି ସେ ଯୁଗର ଗାଥା
ପ୍ରଥମ ମଣିଷ ଜନ୍ମ, ତୋ କୋଳ ତ ମାଆ ସମ—ସେଇ ଗୁପ୍ତ କଥା
ତୁ ଦେଖିଛୁ ମଣିଷର ଉଚମନ, ସରଳ ଜୀବନ
ଆଜି ସିନା ସଭ୍ୟ ଲୋକେ-ଆବିଳତା ଘାରିଛି ପବନ
ହେ ମୋର କଳ୍ପନାରାଣୀ ! ଦେଖା ମୋତେ ସେ ଯୁଗ ଆଲୋକ
ମାଗୁଛି ସମୟେ ଆଜି, ଦେଖାଇ ସେ ସେ ଯୁଗ ଝଲକ ।)

---

* କୌଶର୍ ଓ ତସନମ୍—ସ୍ୱର୍ଗର ଦୁଇଟି ନଦୀ ।

** ଲୈଲି ମଜନୁଙ୍କ ପ୍ରେମ କାହାଣୀ ଭିତ୍ତିରେ ଲୈଲି ନିପଟ କୃଷ୍ଣବର୍ଣ୍ଣା ଥିଲେ ।

ଇକ୍‌ବାଲ୍ ଦେଶର ବିଭିନ୍ନ ସଂପ୍ରଦାୟ ମଧ୍ୟରେ ସୁସଂପର୍କ ଓ ସଦ୍‌ଭାବ ପ୍ରତିଷ୍ଠାର ପୃଷ୍ଠପୋଷକ ଥିଲେ । ମୁଖ୍ୟତଃ ତାଙ୍କର ଶିଶୁମାନଙ୍କ ପାଇଁ ସଂଗୀତରେ ସେ ଏକଥା ପ୍ରଚାର କରିଛନ୍ତି । ଧର୍ମ, ଜାତି ଓ ଭାଷାଗତ ବିଭିନ୍ନତା ସତ୍ତ୍ୱେ ଏ ଦେଶରେ ଏକତା ରହିଛି । ତାଙ୍କର ଦେଶପ୍ରେମମୂଳକ କବିତାଗୁଡିକରେ "ତରାନଏ ହିନ୍ଦୀ" ଏକ ମାଇଲ ଖୁଣ୍ଟ ସଦୃଶ । ମାତୃଭୂମି ପାଇଁ ତାଙ୍କର ଗଭୀର ସ୍ନେହ ଓ ଭକ୍ତି ଏହି କବିତାରେ ଐକାନ୍ତିକ ଭାବେ ପର୍ଯ୍ୟବେସିତ । ଦେଶ ବିଖଣ୍ଡିତ ହୋଇନଥିଲେ, ମୋର ପୂର୍ଣ୍ଣ ବିଶ୍ୱାସ, ଏହା ନିଶ୍ଚିତ ଭାବେ ଆମ ଜାତୀୟ ସଂଗୀତର ମର୍ଯ୍ୟାଦା ଲାଭ କରିଥାନ୍ତା ।

## ତରାନଏ ହିନ୍ଦୀ

ସାରେ ଜହାଁ ସେ ଅଚ୍ଛା ହିନ୍ଦୁସ୍ତାଁ ହମାରା
ହମ୍ ବୁଲ୍‌ବୁଲେଁ ହୈଁ ଇସ୍‌କୀ ୟେ ଗୁଲ୍‌ସିତାଁ ହମାରା
ଗୁର୍‌ବତ୍ ମେଁ ହେଁ ଅଗର୍ ହମ୍ ରହତା ହୈ ଦିଲ୍ ୱତନ୍ ମେଁ
ସମ୍‌ଝୋ ୱହିଁ ହମେଁ ଭି ଦିଲ୍ ହୋ ଯହାଁ ହମାରା
ପରବତ୍ ୱୋ ସବ୍‌ସେ ଊଁଚା ହମ୍‌ସାୟା ଆସ୍‌ମାଁ କା
ୱହ ସନ୍ତରୀ ହମାରା ୱହ ପାସବାଁ ହମାରା !
ଗୋଦି ମେଁ ଖେଲତି ହୈଁ ଇସ୍‌କୀ ହଜାରୋଁ ନଦିୟାଁ
ଗୁଲ୍‌ଶନ୍ ହୈ ଜିନ୍‌କେ ଦମ୍‌ସେ ରଶ୍‌କେ ଜିନାଁ ହମାରା
ଐ ଅବରୁଦେ ଗଙ୍ଗା ୱହ ଦିନହେଁ ୟାଦ ତୁଝ୍ କୋ
ଉତ୍‌ରା ତେରେ କିନାରେ ଜବ୍ କାର୍‌ୱାଁ ହମାରା
ମଜହବ୍ ନହିଁ ସିଖାତା ଆପସ୍ ମେଁ ବୈର୍ ରଖ୍‌ନା
ହିନ୍ଦୀ ହୈଁ ହମ୍ ୱତନ୍ ହୈ ହିନ୍ଦୁସ୍ତାଁ ହମାରା
ୟୁନାନୋ-ମିଶ୍‌ରୋ ରୋମା ସବ୍ ମିଟ୍ ଗଏ ଜହାଁସେ
ଅବ୍‌ତକ୍ ମଗର ହୈ ବାକି ନାମୋ ନିଶାଁ ହମାରା
କୁଛ୍ ବାତ୍ ହୈ କି ହସ୍‌ତି ମିଟ୍‌ତି ନହିଁ ହମାରା
ସଦିୟୋଁ ରହା ହୈ ଦୁଶ୍‌ମନ୍ ଦୌରେ ଜମାଁ ହମାରା

ଏକ୍‌ବାଲ୍ ! କୋଇ ମହରମ ଅପ୍‌ନା ନହିଁ ଜହାଁ ମେଁ
ମାଲୁମ୍ କ୍ୟା କିସିକୋ ଦର୍‌ଦେ ନହାଁ ହମାରା ।

(ଜଗତେ ଯେ ଦେଶ ଶ୍ରେଷ୍ଠ-ହିନ୍ଦୁସ୍ଥାନ ଆମର
ଆମେ ସବୁ ବୁଲ୍ ବୁଲ୍-ସେ ବଗିଚ୍ଚ ଆମର
ବିଦେଶରେ ଆମେ ଥିଲେ ଯେ ଯୁଆଡ଼େ—ସ୍ୱଦେଶରେ ଥାଏ ଧ୍ୟାନ
କାୟରେ, ମନରେ ଆମେ ସେହିଠାରେ, ଯେଉଁଠାରେ ଥାଏ ମନ
ଆକାଶକୁ ଯେଉଁ ଉଚ୍ଚ ପରବତ ଛୁଇଁ ଛୁଇଁ ଯାଇଅଛି
ଦେଶ ମାତୃକାର ଜାଗ୍ରତ ପ୍ରହରୀ, ଦମ୍ଭେ ମଥା ଟେକିଅଛି ।
ଯା ବକ୍ଷେ ଶୋଭିତ ଶତ ନିର୍ଝର ଶତ ଶତ ନଦୀନାଳ
ସରଗେ ଦେବତା ଈର୍ଷାରେ ସନ୍ତପ୍ତ-ଯା' ହାତେ ଏ ସୃଷ୍ଟି ଖେଳ ।
ପବିତ୍ର ଗଙ୍ଗୋତ୍ରୀ; କହିବୁ କି ସତ, ଅଛି କରେ ତୋର ମନ
କେବେ ହୋଇଥିଲା ତୋହର ସନ୍ନିଧେ ଜନପଦ ସଂସ୍ଥାପନ ?
ଆମର ଧରମ ଗୋଟିଏ କଥାରେ—ମଣିଷ-ମଣିଷ ଭାଇ
ଆମେ ଭାରତୀୟ, ଭାରତ ଆମର ଭେଦଭାବ ଯହିଁ ନାହିଁ ।
କାଳର କବଳେ ହଜିଛି ରୋମ୍, ଗ୍ରୀସ୍, ମିଶର ଦେଶ
ପୃଥିବୀ କୋଳରେ ଏବେ ହସୁଅଛି ଆମର ଭାରତବର୍ଷ
ପୂରୁବ ସୁକୃତ, ମହାନୀୟତାରୁ ଆମେ ଗରବରେ ଠିଆ
ଯୁଗ ଯୁଗ ଧରି କଟିଛି ଝଞ୍ଜା, ଧର୍ମେ ଗଠିତ ହିଆ
ଇକ୍‌ବାଲ୍ ! କହ କିଏ ଏ ବିଶ୍ୱରେ ଅଟେ ବିଶ୍ୱାସୀ ତୋର
ବୁଝିବ ତୋ ମନ ବ୍ୟଥା, ଯୁଗ ଯୁଗ ଯନ୍ତ୍ରଣା ତୋହର ?)

ସାହିତ୍ୟ ପତ୍ରିକା "ଜୌହର" (ଦିଲ୍ଲୀ) ର ୧୯୩୮ରେ ଇକ୍‌ବାଲ୍‌ଙ୍କ ସ୍ୱତନ୍ତ୍ର ସଂଖ୍ୟା ପାଇଁ ମହାତ୍ମାଗାନ୍ଧୀ ଇକ୍‌ବାଲଙ୍କ କବିତା 'ତରାନଏ ହିନ୍ଦୀକୁ' ପ୍ରଶଂସା କରି ଏହାର ସମ୍ପାଦକଙ୍କ ପାଖକୁ ଗୋଟିଏ ଚିଠି ଲେଖିଥିଲେ । ସେ ଚିଠିଟି ନିମ୍ନୋକ୍ତ ମର୍ମରେ ସେ ଉର୍ଦ୍ଦୁରେ ଲେଖିଥିଲେ –

"ଚିଠି ପାଇଲି । ସ୍ୱର୍ଗତଃ ଇକ୍‌ବାଲଙ୍କ ବିଷୟରେ ମୁଁ କଣ କହିବି ? ଏତିକି କହୁଛି ଯେ, ଇକ୍‌ବାଲଙ୍କ କବିତା—'ତରାନଏ ହିନ୍ଦୀ' ପଢ଼ି କାନ୍ଦ

ପକାଇଲି । ଏହି କବିତାଟି ମୁଁ ବରୋଦା ଜେଲରେ ଶତାଧିକବାର ଗାଇଥିବି । ଚିଠିଟି ଲେଖିଲାବେଳେ କବିତାଟିର ସୁମଧୁର ମୂର୍ଚ୍ଛନା ଏବେ ମଧ୍ୟ ମୋର ଶ୍ରୁତିକୁ ତରଙ୍ଗାୟିତ କରୁଛି ।"

ଆଉ ଏକ ଘଟଣାରେ, ହିନ୍ଦୀ ଓ ଉର୍ଦ୍ଦୁ ମଧ୍ୟରୁ କାହାକୁ ରାଷ୍ଟ୍ରଭାଷା କରାଯିବାର ବର୍ଷ ବର୍ଷ ଧରି ଚାଲିଥିବା ବିବାଦର ସମାଧାନ କରିବାକୁ ଯାଇ ଗାନ୍ଧିଜୀ ଇକ୍‌ବାଲ୍‌ଙ୍କ ଏହି ଜାତୀୟ ସଙ୍ଗୀତଟି ଉଦାହରଣ ଦେଇ ରାଷ୍ଟ୍ରଭାଷାର ନମୁନା ଦେଇଥିଲେ ଏବଂ କହିଥିଲେ ଇକ୍‌ବାଲ୍‌ଙ୍କ "ହିନ୍ଦୁସ୍ତାଁ ହମାରା" କବିତାଟି ପଢ଼ି କେଉଁ ଭାରତୀୟ ହୃଦୟ ଆନ୍ଦୋଳିତ ନ ହେବ ? ଯଦି କାହାର ହୃଦୟରେ ଆଲୋଡ଼ନ ସୃଷ୍ଟି ନ ହୁଏ ତାହେଲେ ଏହାକୁ ଦୁର୍ଭାଗ୍ୟ ବୋଲି କହିବି । ଇକ୍‌ବାଲ୍‌ଙ୍କ ଏହି ସଙ୍ଗୀତଟିର ଭାଷା ହିନ୍ଦୀ, ନା ଉର୍ଦ୍ଦୁ ନା ହିନ୍ଦୁସ୍ତାନୀ ? କିଏ କହିବ ଏଇଟା ଭାରତୀୟ ଭାଷା ନୁହେଁ ? ଏଥିରେ ମଧୁରତା ନାହିଁ ବୋଲି ? ଏଥିରେ ଉଚ୍ଚ ଚିନ୍ତାଧାରା ନାହିଁ ? ଶେଷରେ ମୋ ନିଜ ମତରେ ଏକଥା ନିଶ୍ଚିତ ଯେ ସଂସ୍କୃତ ମିଶା ହିନ୍ଦୀ କିମ୍ବା ପାର୍ଶିମିଶା ଉର୍ଦ୍ଦୁ ଏ ଜାତିର ମନ ଜିଣି ପାରିବ ନାହିଁ । ଏକଥା କେବଳ ହିନ୍ଦୁସ୍ତାନୀ ଦ୍ଵାରା ହିଁ ସମ୍ଭବ । ଆମର ଅନ୍ତର୍ବିବାଦକୁ ଛାଡ଼ିଦେଲେ, ଆମେ ଏହି କୃତ୍ରିମ ବିବାଦକୁ ଭୁଲିବୁ ଏବଂ ଏହାକୁ ସୃଷ୍ଟି କରିଥିବାରୁ ଲଜ୍ଜିତ ହେବୁ ।"

କେଉଁ ପରିସ୍ଥିତିରେ ଏହି ଜାତୀୟ ସଙ୍ଗୀତ ଜନ୍ମନେଇଥିଲା ସେ କଥା ଚିନ୍ତା କଲେ ଆଶ୍ଚର୍ଯ୍ୟ ଲାଗେ । ଲାଲ୍‌ ହରଦୟାଲଙ୍କ 'Youngmen's Indian Association'ର ଉଦ୍‌ଘାଟନ ଉତ୍ସବରେ ଇକ୍‌ବାଲ୍‌ ତାଙ୍କର ସଭାପତି ଅଭିଭାଷଣରେ ଏହି ସଙ୍ଗୀତଟି ଗାନ କରିଥିଲେ । ଏହି ସଭାରେ ଉପସ୍ଥିତ ମହମ୍ମଦ ଉମର (ନୁର୍‌ଇଲାହୀ—ଛଦ୍ମନାମରେ ନାଟକ ସାଗରର ରଚୟିତା)ଙ୍କ ପ୍ରତ୍ୟକ୍ଷଦର୍ଶୀ ବିବରଣୀକୁ ସୟଦ ଜାଫର୍‌ ହାଶମୀ ପ୍ରକାଶ କରିଛନ୍ତି । ତାଙ୍କ ମତରେ—"ଲାଲା ହରଦୟାଲ, ଯେ କି ଭାରତରୁ ତାଙ୍କର ନିର୍ବାସନ ପରେ ଆମେରିକାରେ କିଛି ସମୟ ରହଣି କରିଥିଲେ, ଲାହୋର ସରକାରୀ କଲେଜର

* D. G. Tendulkar—Mahatma, Vol. VIII, Page-296

ଏମ୍. ଏ. ଶ୍ରେଣୀର ଛାତ୍ରଥିଲେ । ହରଦୟାଲ୍ ଜଣେ ଅସାଧାରଣ ବ୍ୟକ୍ତିତ୍ୱସମ୍ପନ୍ନ ଯୁବକ ଥିଲେ । ପୁରାତନ ଯୁଗରେ ଜନ୍ମିଥିଲେ ସେ ନିଶ୍ଚୟ ଜଣେ ସାଧୁ ବା ସନ୍ନ୍ୟାସୀ ହୋଇଥାନ୍ତେ । କହିବା ବାହୁଲ୍ୟ ଯେ, ତାଙ୍କର ସ୍ମରଣ ଶକ୍ତି ଅଦ୍ଭୁତ ଥିଲା, ସେ ଯାହା ଥରେ ପଢୁଥିଲେ, ମନେ ରଖୁଥିଲେ । ନିଜ କଲେଜର ଛାତ୍ରମାନଙ୍କ ବ୍ୟତୀତ ସେ ଅନ୍ୟାନ୍ୟ କଲେଜର ଛାତ୍ରମାନଙ୍କ ମଧ୍ୟରେ ସମସ୍ତଙ୍କ ପ୍ରିୟ ଥିଲେ । ୧୯୦୪ରେ ଲାହୋରରେ ଏକ ମାତ୍ର କ୍ଲବ୍ YMCAର ସେ ସଭ୍ୟ ଥିଲେ । ସେ ଜଣେ ଦେଶଭକ୍ତ ଓ ଜାତୀୟତାବାଦୀ ଯୁବକ ଥିଲେ ଏକଦା ତାଙ୍କର କ୍ଲବ୍‌ର ସେକ୍ରେଟାରୀଙ୍କ ସହିତ ଏକ ସାମାନ୍ୟ କଳି ଯୋଗୁଁ ସେ "Youngmen's Indian Association" ସ୍ଥାପନ କରିଥିଲେ । ପ୍ରାୟ ସବୁକଲେଜର ଛାତ୍ରମାନେ ହରଦୟାଲଙ୍କୁ ସମର୍ଥନ କରୁଥିଲେ । ଏ ଘଟଣାଟି ହେଉଛି ଇକ୍‌ବାଲ୍ ସରକାରୀ କଲେଜର ଜଣୈକ ଅଧ୍ୟାପକ ଥିବା ସମୟର । ଏହା ହେଉଛି ଇକ୍‌ବାଲଙ୍କ ଜୀବନଶୈଳୀର କବିତା ସଂକଳନର ଆଦ୍ୟାବସ୍ଥା । ହରଦୟାଲଙ୍କ ସହିତ ତାଙ୍କର ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ଥିଲା । କ୍ଲବ୍‌ର ଉଦଘାଟନ ଉତ୍ସବରେ ସଭାପତିତ୍ୱ କରିବା ପାଇଁ ଇକ୍‌ବାଲଙ୍କୁ ଯେତେବେଳେ ହରଦୟାଲ ନିମନ୍ତ୍ରଣ କଲେ ସେ ତାକୁ ସାଦରେ ଗ୍ରହଣ କରିଥିଲେ । ଅପରାହ୍ଣ ୩ଟା ବେଳେ ସଭା ଆରମ୍ଭ ହୋଇଥିଲା । ଏହି ସଭାରେ ଇକ୍‌ବାଲ ତାଙ୍କର ଧାରାବାହିକ ଭାଷଣ ଦେବା ପରିବର୍ତ୍ତେ ତାଙ୍କର "ସାରେ ଯହାଁସେ ଅଚ୍ଛା, ହିନ୍ଦୁସ୍ତାଁ ହମାରା" ନାମକ ଦେଶାତ୍ମବୋଧ କବିତାଟି ଆବୃତ୍ତି କରିଥିଲେ । ଇକ୍‌ବାଲ ଏହି କବିତାଟି ବୋଲୁଥିବା ସମୟରେ ଶ୍ରୋତୃବୃନ୍ଦ ସ୍ତବ୍‌ଧଚକିତ ହୋଇଯାଇଥିଲେ । *

୨୧ ଅଗଷ୍ଟ ୧୯୪୭ରେ ( ବର୍ତ୍ତମାନ ବଙ୍ଗଳା ଦେଶରେ ଥିବା ) ବେଲେଘାଟାରେ ଗାନ୍ଧୀଜୀଙ୍କ ପ୍ରାର୍ଥନା ସଭାରେ ଏହି ଗୀତଟି ବୋଲା ଯାଇଥିଲା ଯେତେବେଳେ ଭାରତ ଓ ପାକିସ୍ତାନର ଜାତୀୟ ପତାକା ସର୍ବେ ଉତ୍ତୋଳିତ ହୋଇଥିଲା । ଗାନ୍ଧୀଜୀ ଅନୁରୋଧରେ ତାଙ୍କର ଜଣେ ମୁସଲମାନ ସହ-ବନ୍ଦୀଙ୍କର

* ଅଲ୍ଲାମା ଇକ୍‌ବାଲ୍ କେ ଡଗନେ କ ଶାନ୍-ଏ-ନୋକୁଲ୍ : ସୟଦ୍ ଜାଫର୍ ହାଶମୀ ସାପ୍ତାହିକ "ଚଟନ" ଲାହୋର, ୧ ମେ' ୧୯୬୭, ସୂଚନା : ଔରାକ୍ -ଏ-ଗୁମ୍‌ଗସ୍ତା : ରହିମ୍ ବକ୍ସ ଶାହିନ୍ ପୃ. ୩୯୮, ଯାଦୁଗର-ଏ-ହିନ୍ଦ ନଜାଦ୍ : ଅଡକ୍ ସିଦ୍ଦିକି, ପୃ. ୨୭

ଜେଲରେ ଇକ୍‌ବାଲ୍‌ଙ୍କର 'ହିନ୍ଦୁସ୍ତାଁ ହମାରା'' ଗୀତଟି ବୋଲଥିବା କଥା ମନେ ପକାଇଥିଲେ, ଇକ୍‌ବାଲ୍‌ଙ୍କ ଏହି କବିତାଟିର ରାଗିଣୀ ଚମତ୍କାର ଥିଲି । ସେ କବିତାଟିର ପଂକ୍ତି ମଧ୍ୟରେ ସବୁଠାରୁ ଚମତ୍କାର ଥିଲି--''ଆମର ଧରମ ଗୋଟିଏ କଥାରେ ମଣିଷ-ମଣିଷ-ଭାଇ'' । ଗାନ୍ଧିଜୀ ଆଶା ପ୍ରକାଶ କରିଥିଲେ ଏବଂ ପ୍ରାର୍ଥନା କରିଥିଲେ ଯେ ଶୁଭାରମ୍ଭଟି ଶେଷ ପର୍ଯ୍ୟନ୍ତ ଶୁଭଙ୍କର ହେଉ ଏବଂ ନିଜ ନିଜର ଅସୁବିଧା ଦୂରୀକରଣ ପାଇଁ ଆମ୍ଭେମାନେ ତରବାରିର ଆଶ୍ରୟ ନ ନେଉ ।'' *

ମୋତେ ଏକଥା ପ୍ରକାଶ କରିବାକୁ ଖୁସି ଲାଗେ ଯେ, ମୁଁ ଯେତେବେଳେ କେନ୍ଦ୍ର ସୂଚନା ପ୍ରସାରଣ ବିଭାଗର ସେକ୍ରେଟାରୀ ଥିଲି ଦୂରଦର୍ଶନର (Signature Tune) ଆବାହନୀ ମୂର୍ଚ୍ଛନାଟି, ଇକ୍‌ବାଲ୍‌ଙ୍କ ଏହି ସଙ୍ଗୀତଟିକୁ ଆଧାର କରି ପଣ୍ଡିତ ରବିଶଙ୍କର ପ୍ରସ୍ତୁତ କରିଥିଲେ । ତାହା ୧୯୭୫—୭୬ରେ ଇନ୍ଦିରାଗାନ୍ଧିଙ୍କ ଦ୍ୱାରା ଅନୁମୋଦିତ ହୋଇଥିଲି । ବାସ୍ତବରେ ସେ ନିର୍ଦ୍ଦେଶ ଦେଇଥିଲେ ଯେ, ଦୂରଦର୍ଶନର ଆବାହନୀ ମୂର୍ଚ୍ଛନାଟି ଏହି ଜାତୀୟ ସଙ୍ଗୀତଟିକୁ ଭିତ୍ତିକରି ପ୍ରସ୍ତୁତ ହେବା ଉଚିତ ।

ତାଙ୍କର ଅନ୍ୟ ଏକ କବିତା ''ହିନ୍ଦୁସ୍ତାନୀ ବଚ୍ଚୋଁକା କୌମୀ ଗୀତ'' ରେ ସେ ଦେଶରେ ବିଭିନ୍ନ ଜାତି ଥିବା ସତ୍ତ୍ୱେ, ଏକତାର ଗାନ ଗାଇଛନ୍ତି । ସେ କହନ୍ତି : ଏ ଦେଶରେ ଚିଶ୍ତି ତାଙ୍କର ସତ୍ୟର ମତ ପ୍ରଚାର କରିଥିଲେ । ଗୁରୁ ନାନକ ସମସ୍ତଙ୍କର ଈଶ୍ୱର ସମାନର ବାର୍ତ୍ତା ଦେଇଥିଲେ । ତୁର୍କ ଓ ମଙ୍ଗୋଲମାନେ ଏ ଦେଶକୁ ମାତୃଭୂମି ରୂପେ ଗ୍ରହଣ କରିଥିଲେ । ହାଜିଦ-ଆରବରୁ ଆରବୀୟମାନେ ମଧ୍ୟ ଏହି ବିରାଟ ଦେଶର ଅଧିବାସୀ ହେବା ପାଇଁ ଦେଶାନ୍ତରୀ ହୋଇଥିଲେ ।

## ହିନ୍ଦୁସ୍ତାନୀ ବଚ୍ଚୋଁକା କୌମୀ ଗୀତ

ଚିଶ୍ତିନେ ଜିସ୍ ଜମିଁ ମେଁ ପୈଗାମେ ହକ୍ ସୁନାୟା !
ନାନକ୍ ନେ ଜିସ୍ ଚମନ୍ ମେଁ ଓ୍ୱହଦ କା ଗୀତ୍ ଗାୟା !

---

* D. G. Tendulkar : Mahatma, Vol. III, Page-109

ତାତାରିୟୋଁ ନେ ଜିସ୍‌କୋ ଅପ୍‌ନା ଓ୍ୱତନ୍ ବନାୟା
ଜିସ୍‌ନେ ହିଜାଜିୟୋଁ ସେ ଦଶ୍‌ତେ ଅରବ୍ ଛୁଡ଼ାୟା
ମେରା ଓ୍ୱତନ୍ ଓ୍ୱହି ହୈ, ମେରା ଓ୍ୱତନ୍ ଓ୍ୱହି ହୈ ।

ୟୁନାନିୟୋଁ କୋ ଜିସ୍‌ନେ ହୈରାନ୍ କର୍ ଦିଆ ଥା
ସାରେ ଜହାଁ କୋ ଜିସ୍‌ନେ ଇଲ୍‌ମୋ ହୁନର୍ ଦିଆ ଥା
ମିଟ୍ଟି କୋ ଜିସ୍‌କି ହକ୍‌ନେ ଜର୍ କା ଅସର୍ ଦିଆ ଥା
ତୁର୍କୋଁ କା ଜିସ୍‌ନେ ଦାମନ୍ ହୀରୋଁ ସେ ଭର୍ ଦିଆ ଥା
ମେରା ଓ୍ୱତନ୍ ଓ୍ୱହି ହୈ, ମେରା ଓ୍ୱତନ୍ ଓ୍ୱହି ହୈ ।

ଟୁଟେ ଥେ ଯୋ ସିତାରେ ଫାରସ୍ କେ ଆସ୍‌ମାଁ ସେ
ଫିର୍ ତାବ୍ ଦେ କେ ଜିସ୍‌ନେ ଚମ୍‌କାଏ କହ୍‌କଶାଁ ସେ
ଓ୍ୱହଦତ୍ କି ଲୈ ସୁନି ଥି ଦୁନିଆ ନେ ଜିସ୍ ମକାଁ ସେ
ମିରେ ଅରବ୍ କୋ ଆଇ, ଠଣ୍ଡୀ ହାଓ୍ୱା ଜହାଁ ସେ
ମେରା ଓ୍ୱତନ୍ ଓ୍ୱହି ହୈ, ମେରା ଓ୍ୱତନ୍ ଓ୍ୱହି ହୈ ।

ବନ୍ଦେ କଲିମ୍ ଜିସ୍‌କେ, ପରବତ୍ ଜହାଁ କେ ସିନା
ନୂହେ୍ ନବି କା ଆକର୍ ଠେହ୍‌ରା ଜହାଁ ସଫିନା
ରଫ୍‌ଅତ୍ ହୈ ଜିସ୍ ଜମିନ୍ କି ବାମେ ଫଲକ୍ କା ଜିନା
ଜନ୍ନତ କି ଜିନ୍ଦଗୀ ହୈ ଜିସ କି ଫଜା ମେ ଜୀନା
ମେରା ଓ୍ୱତନ୍ ଓ୍ୱହି ହୈ, ମେରା ଓ୍ୱତନ୍ ଓ୍ୱହି ହୈ ।

## ଭାରତୀୟ ପିଲାଙ୍କ ପାଇଁ ଜାତୀୟ ସଂଗୀତ

ଚିସ୍ତି ଯେଉଁଠାରେ ପ୍ରଚାର କରିଲେ ସତ୍ୟ ସ୍ୱରୂପ ବାଣୀ
ସବୁରିଙ୍କ ପାଇଁ ଭଗବାନ ଏକ-ନାନକ କହିଲେ ପୁଣି
ଯେ ଦେଶ ମାଟିକୁ ତୁର୍କ ଅଧିବାସୀ କରିନେଲେ ନିଜଦେଶ
ଆରବ୍ ଦେଶରୁ ଆସିଲେ ଜନତା ପାଇଲେ ସ୍ୱସ୍ତି ନିଶ୍ୱାସ
ସେଇ ମୋ ଜନମ ଭୂମି, ସେଇ ମାଟି ମାଆ ମୋର ।

ଥରକ ପରଶେ ଗ୍ରୀକ୍ ପଣ୍ଡିତ ପ୍ରଣମନ୍ତ ବାରବାର
ସାଗ୍ ବିଶ୍ୱକୁ ଦେଇଥିଲା ଯିଏ, ଜ୍ଞାନ, ସଂସ୍କୃତିର ଜ୍ୟୋତି
ସ୍ୱର୍ଣ୍ଣ ଗରଭ ଜନନୀ ଆମର ଜଗତ ଭିତରେ ମୋତି ।
ଅଷ୍ଟ ଐଶ୍ୱର୍ଯ୍ୟରେ ଭରିଥିଲା ଥାଳ ସର୍ବି ଭୂଷର୍ଣ୍ଣ ଜନତାର
ସେଇ ମୋ ଜନମ ଭୂମି, ସେଇ ମାଟି ମାଆ ମୋର ।

ଇସ୍ଲାମୀ ପଣ୍ଡିତେ ଏ ଦେଶ ଦେଇଛନ୍ତି ଗଉରବ ସନମାନ
ଏକଇ ଈଶ୍ୱର-ତତ୍ତ୍ୱୋଧିକ ନୁହେଁ-ଯେ ଦେଶେ ଧର୍ମର ଗାନ
ହଜରତ୍ ମହମ୍ମଦ୍ ଅନୁଭବୀ ହୃଦ-ଏ ଦେଶୁ ଧର୍ମ ସମୀର
ସେଇ ମୋ ଜନମଭୂମି-ସେଇ ମାଟି ମାଆ ମୋର ।

* ଯେଉଁ ଦେଶଟିର ପ୍ରତ୍ୟେକ ମଣିଷ, ହଜରତ୍ ମୁସା ପରି
ଯେଉଁ ଦେଶଟିର ପ୍ରତ୍ୟେକ ପର୍ବତ ସିନା ପର୍ବତ ସରି
* * ଯେ ଦେଶ ଘାଟରେ ଲାଗିଥିଲା ଆସି ନୁହଙ୍କର ଏକ ତରୀ
ଯାହାର ଉଚ୍ଚତା ସ୍ୱର୍ଗାରୋହଣେ ଅଟଇ ନିଶୁଣୀ ପରି
ମରତ ଏ ନୁହେଁ, ସରଗ ଭୁବନ, କୋଳ ଯା ଅମୃତ ଧାର
ସେଇ ମୋ ଜନମ ଭୂମି, ସେଇ ମାଟି ମାଆ ମୋର

ତାଙ୍କ କବିତା "ବଚେଁ। କ ଦୋଆ" (ପିଲାମାନଙ୍କର ପ୍ରାର୍ଥନା)ରେ ସେ କହିଛନ୍ତି ଯେ, ପୁଷ୍ପ ଯେପରି ଉଦ୍ୟାନର ଶୋଭା ବର୍ଦ୍ଧନ କରେ, ଜଣେ ନିଜ ଦେଶରେ ସେହିପରି ବାସ କରିବା ଉଚିତ, ଯାହା ଫଳରେ କି ମାତୃଭୂମିର ଶୋଭା ବର୍ଦ୍ଧନ ହେବ ।

---

* ବାଇବେଲ୍ ମତ ଅନୁଯାୟୀ ମହାପୁରୁଷ ମୁସା (Moses) ଦିବ୍ୟଜ୍ୟୋତି ଦର୍ଶନ କରିଥିଲେ ।

* * ବାଇବେଲ ମତ ଅନୁଯାୟୀ ପ୍ରଳୟ-ପୟୋଧିର ଆବିର୍ଭାବ ପରେ ମହାପୁରୁଷ ନୁହ (Noah) ନିଜ ତରୀରେ ସମସ୍ତ ଜୀବଜନ୍ତୁଙ୍କୁ ବୋହି ନେଇ ରକ୍ଷା କରିଥିଲେ ।

"ହମୋ ମେରେ ବମ୍‌ସେ ସୁଁ ହି ମେରେ ଓ୍ୱତନ୍ କା ଜାନତ୍
ଜସ୍ ତରହ ଫୁଲ୍‌ସେ ହୋତି ହୈ ଚମନ୍ କା ଜାନତ୍"

(ଶୋଭା ପାଉ ଦେଶ ମୋର ମୋ ଦ୍ୱାରା ଏମିତି
ପୁଷ୍ପ ଦ୍ୱାରା ଶୋଭାପାଏ ଉଦ୍ୟାନ ଯେମିତି ।)

ତାଙ୍କ କବିତା "ନୟା ଶିଓ୍ୱାଲ"ରେ ତାଙ୍କ ଦେଶପ୍ରେମ ବେଶ୍ ପ୍ରକଟିତ ହୋଇଥିଲା । ଏଠାରେ ସେ କହନ୍ତି ଯେ, ମୋ ଦେଶ ଧୂଳିକଣାର ପ୍ରତ୍ୟେକ ଅଣୁ ମୋ ପାଇଁ ଭଗବାନ ସଦୃଶ ।

"ଖାକେ-ଓ୍ୱତନ୍ କା ମୁଝ୍‌କୋ ହର୍ ଜର୍‌ରା ଦେଓ୍ୱତା ହୈ"
(ମୋ ଦେଶ ମାଟିର ପ୍ରତ୍ୟେକ ଅଣୁ, ମୋ ପାଇଁ ଦେବତା ସମ ।)

ଦେଶର ବିଭିନ୍ନ ସଂପ୍ରଦାୟ ମଧ୍ୟରେ ଥିବା ତିକ୍ତତା ଓ ବିଭାଜନ ବିଷୟରେ ଇକ୍‌ବାଲ୍ ଖୁବ୍ ସଚେତନ ଥିଲେ । ଏହି କବିତାଟିରେ ସେ ଏହି ତିକ୍ତତାର କାରଣଗୁଡ଼ିକ ବିଶ୍ଳେଷଣ କରି କହିଛନ୍ତି ଯେ, ଏହା ବିଭିନ୍ନ ଧର୍ମଗତ ପାର୍ଥକ୍ୟ ଯୋଗୁ ହିଁ ସୃଷ୍ଟି ହୋଇଛି । ନିଜର ସମସ୍ତ ବିଭେଦ ତ୍ୟାଗ କରି ଏକତ୍ର ବନ୍ଧୁଭାବେ ବସବାସ କରିବା ପାଇଁ ସେ ଉଭୟ ହିନ୍ଦୁ ଓ ମୁସଲମାନମାନଙ୍କୁ ପରାମର୍ଶ ଦେଇଅଛନ୍ତି । ଏକତା, ପାରସ୍ପରିକ ପ୍ରେମ ଓ ଜାତୀୟତା ଭିତ୍ତିରେ ସେ ଏକ ନୂତନ ଭାରତ ଗଢ଼ିବାର ସ୍ୱପ୍ନ ଦେଖିଛନ୍ତି । ତାଙ୍କ ମତରେ ବିଭିନ୍ନ ସଂପ୍ରଦାୟ ମଧ୍ୟରେ ଚିରନ୍ତନ ଐକ୍ୟ, ପ୍ରେମ ଓ ଭାତୃଭାବ ସ୍ଥାପନ କରିବା ପାଇଁ ସମସ୍ତେ ଗୋଟିଏ ପ୍ରତିମା ଅର୍ଥାତ୍ ଭାରତକୁ ପୂଜା କରିବା ଦରକାର । ହିନ୍ଦୁ = ମୁସଲମାନ ଏକତା ବିଷୟରେ ଇକ୍‌ବାଲ୍‌ଙ୍କ ଏହି ସୁନ୍ଦର କବିତା, ବୋଧହୁଏ ଭାରତର ଅନ୍ୟ କୌଣସି ଭାଷାରେ ନଥିବ ।

## ନୟା ଶିଓ୍ୱାଲା

ସଚ୍ କହଦୁଁ ଐ ବରହ୍ମନ୍ ଗର୍ ତୁ ବୁରା ନ ମାନେ
ତେରେ ସନମ୍ କଦୋଁ କେ ବୁତ୍ ହୋ ଗଏ ପୁରାନେ

ଅପନୋଂସେ ବୈର୍ ରଖ୍ନା ତୁନେ ବୁଟୋଁ ସେ ଶିଖା
ଜଙ୍ଗୋ ଜଦଲ୍ ଶିଖାୟ୍ନା ଓ୍ୱାଏଜ୍ କୋ ଭି ଖୁଦାନେ
ତଙ୍ଗ୍ ଆକେ ମୈନେ ଆଖିର୍ ଦୈରୋ ହରମ୍ କୋ ଛୋଡ୍ଡ଼ା
ଓ୍ୱାଏଜ୍ କା ଓ୍ୱାଜ୍ ଛୋଡ୍ଡ଼ା ଛୋଡ୍ଡ଼େ ତେରେ ଫଂସାନେ
ପଥ୍‌ଥର କ ମୂରତୋଁ ମେଁ ସମ୍ଝା ହୈ ତୁ ଖୁଦା ହୈ
ଖାକେ ଓ୍ୱତନ୍ କା ମୁଝ୍‌କୋ ହର୍ ଜର୍‌ରା ଦେଓ୍ୱତା ହୈ
ଆ ଗୈରୟୂତ୍ କେ ପରଦେ ଏକ୍‌ବାର୍ ଫିର୍ ଉଠାଦେଁ
ବିଛଡୋଁ କୋ ଫିର୍ ମିଲଦେଁ, ନକ୍‌ଶେ ଦୁଇ ମିଟା ଦେଁ

ସୁନ୍ନା ପଡ଼ା ହୁଇ ହୈ ମୁଦ୍‌ଦତ୍ ସେ ଦିଲକି ବସ୍ତି
ଆ, ଏକ୍ ନୟା ଶିଓ୍ୱାଲ୍ ଇସ୍ ଦେଶ୍ ମେଁ ବନାଦେଁ
ଦୁନୟା କେ ତୀରଥୋଁ ସେ ଉଁଚା ହୋ ଅପ୍‌ନା ତୀରଥ୍
ଦାମାନେ ଆସମାଁ ସେ ଇସ୍‌କା କଲସ୍ ମିଲାଦେଁ ।

ହର୍ ସୁବ୍‌ହ ଉଠ୍ କେ ଗାଏଁ ମନ୍ତର ଓ୍ୱ ମିଠେ ମିଠେ
ସାରେ ପୂଜାରୟୋଁ କୋ ମୈ ପୀତ କ ପିଲାଦେଁ
ଶକ୍ତି ଭି ଶାନ୍ତି ଭି ଭକ୍ତୋଁ କେ ଗୀତ୍ ମେଁ ହୈ
ଧର୍‌ତୀକେ ବାସୀୟୋଁ କ ମୁକ୍ତି ପିରୀତ ମେଁ ହୈ ।

## ନୂତନ ଶିବାଳୟ (ମନ୍ଦିର)

( ବ୍ରାହ୍ମଣ ତୁମେ, ପଣ୍ଡୁରୁଛୁ ସତ୍ୟ ଏକ, ରାଗ, ଦ୍ୱେଷ ନ ଧରିବ ମନେ
ମନ୍ଦିର ଯନ୍ତ୍ରି, ପାଷାଣର ମୂର୍ତ୍ତି, ପୁରୁଣା ସଂସ୍କାର ଜ୍ଞାନେ ।
ଦେଉଳେ ପୂଜିଲ କାଠ, ପାଷାଣକୁ ମଣିଷ ହୋଇଲା ହୀନ
ମୌଲବୀ ତୁମେ "ଖୋଦା"ଙ୍କ ନାମେ ମଣିଷକୁ କଲ ଦୀନ ।
ସବୁ ସତ୍ୟ ଆଜ ମିଥ୍ୟା ପାଲଟିଲା-ଯେତେ ମନ୍ତ୍ର, ଉପାଖ୍ୟାନ ।
ମୋ ଦେଶ ମାଟିର ପ୍ରତ୍ୟେକ ଅଣୁ ମୋ ପାଇଁ ଦେବତା ସମ ।
ଆସିଛୁ ସମସ୍ତେ ଆସ ଏକ ମନେ, ଭୁଲି ସବୁ ଭେଦଭାବ
ହୃଦୟ ବନ୍ଧନେ ଏକ ହେବା ଆମେ ତା' ହେବ ଦେବ ବିଭବ ।

କେତେକାଳୁ ମାର୍ଜିବ ମାଟିରେ ରଖିଯିବା ନୂତନ ଶ୍ରଷ୍ଟର
ମଣିଷ ଦେବତା ଏକା-କାଠ ନୁହେଁ, ହୃଦୟ ଏକଇ ମନ୍ଦିର ।
ସେଇ ହେବ ଏକତୀର୍ଥ ଆକାଶଠୁ ବଳି ଗରୀୟାନ
ମଣିଷ ହିଁ ସତ୍ୟ ଭାଇ, ଶୁଭ୍ରତହିଁ, ମଣିଷର ଜୟଗାନ ।

ସତ୍ୟ ପ୍ରେମର ମନ୍ଦିରପାନେ ଆସ ହେ ପୂଜକ ଭାଇ
ନବୀନ ପ୍ରଭାତେ ଗାଇବା ଗୀତିକା-ମଣିଷ, ମଣିଷ ଭାଇ
ଭକତ ଭକତି ଗୀତିରେ ଭରିଛି ଶାନ୍ତି, ମୁକ୍ତିର କଥା
ମାନବ-ପ୍ରେମରେ ଏ ଦେଶ ମହାନ, ଜୀବନ ଭାରତ-ଗାଥା ।)

ଏହି କବିତାଟି ବିଷୟରେ ପ୍ରଫେସର୍ ୟୁସୁଫ୍ ସଲିମ୍ ଚିସ୍ତିଙ୍କର ମତାମତ ବେଶ୍ ଗୁରୁତ୍ୱପୂର୍ଣ୍ଣ, "ସଙ୍ଗୀତ ମାଧ୍ୟମରେ ଏହା ହେଉଛି ଇକ୍‌ବାଲ୍‌ଙ୍କ ଦେଶପ୍ରେମମୂଳକ କବିତାର ଉତ୍କୃଷ୍ଟ ଉଦାହରଣ···ପାଠକ ମନରେ ମାତୃଭୂମିର ଗୌରବର ଏକ ଅଲିଭା ଆଲେଖ୍ୟ ପ୍ରଦାନ କରିବାରେ ଇକ୍‌ବାଲ୍ ତାଙ୍କର ସମସ୍ତ କାବ୍ୟିକ ଶ୍ରୀଭୂଷା ପ୍ରୟୋଗ କରିଛନ୍ତି । ଇକ୍‌ବାଲ୍‌ଙ୍କ କେତେକ ସମାଲୋଚକ କହନ୍ତି ଯେ ହିନ୍ଦୁ = ମୁସଲମାନ ଏକତା ଉପରେ ଏହା ସର୍ବୋତ୍କୃଷ୍ଟ କବିତା ।

## ସାଂପ୍ରଦାୟିକ ବିଭେଦ ପାଇଁ କ୍ଷୋଭ

କ୍ରମାଗତ ସାମ୍ପ୍ରଦାୟିକ ବିଭେଦ ଏବଂ ଦ୍ୱନ୍ଦ୍ୱ ତାଙ୍କୁ ଗଭୀର ଭାବରେ ବ୍ୟଥିତ କରିଥିଲା । ତାଙ୍କ କବିତା "ସଦା-ଏ-ଦର୍ଦ"ରେ ତାଙ୍କର ଏହି ବ୍ୟଥା ଚମତ୍କାର ଭାବେ ପ୍ରତିଫଳିତ ।

### ସଦା–ଏ–ଦର୍ଦ

ଜଲ୍ ରହା ହୁଁ କଲ୍ ନହିଁ ପଡ଼୍ତି କସି ପହଲୁ ମୁଝେ
ହାଁ ଡୁବୋ ଦେ ଏ ମୋହିତେ ଆବେ ଗଙ୍ଗା ତୁ ମୁଝେ
ସର ଜମିନ୍ ଅପ୍‌ନ କୟାମତ୍ କା ନଫାକ୍ ଅଙ୍ଗେଜ୍ ହୈ
ଓ୍ୱସ୍‌ଲ୍ କୈସା ୟାଁ ତୋ ଏକ୍ କୁର୍‌ବେ ଫିରକ୍ ଆମେଜ୍ ହୈ ।

ବଦ୍‌ଲେ ଯୂକ୍ ରଂଗୀକେ ଯେ ନାଆଶ୍‌ନାଇ ହୈ ଗଜବ୍
ଏକ୍ ହି ଖିର୍‌ମନ୍ କେ ଦାନୌଁ ମେଁ ଯୁଦାଇ ହୈ ଗଜବ୍
ଜିସ୍‌କେ ଫୁଲୋଁ ମେଁ ଉଖୁଓ୍ୱତ୍ କ ହଓ୍ୱା ଆଇ ନହିଁ
ଉସ୍ ଚମନ୍ ମେଁ କୋଇ ଲୁତ୍‌ଫେ ନଗ୍‌ମା ପୈରାଇ ନହିଁ

ଲଜ୍ଜତେ-କୁରବେ ହକୀକତ୍ ମିଟା ଯାତା ହୁଁ ମେଁ
ଇଖ୍‌ତିଲାଫେ ମୌଜଏ ସାହିଲ୍ ସେ ଘବ୍‌ରାତା ହୁଁ ମେଁ

ଦାନଏ ଖିର୍‌ମନ୍ ନୁମା ହୈ ଶାଏର୍ରେ ମୁଜଜ୍ ବୟାଁ
ହୋ ନ ଖିର୍‌ମନ୍ ହି ତୋ ଇସ୍ ଦାନେ କି ହସ୍ତି ଫିର୍ କହାଁ ?
ହୁସ୍‌ନ ହୋ କ୍ୟା ଖୁଦ୍‌ନୁମା ଗର୍ କୋଇ ମାଇଲ୍ ହି ନହୋ
ଶମା କୋ ଜଲନେ ସେ କଥା ମତ୍‌ଲବ୍ ଯୋ ମେହେଫିଲ୍ ହି ନ ହୋ
ଜୌକେ ଗୋୟାଇ ଖମୋଶି ସେ ବଦଲତା କ୍ୟୁଁ ନହିଁ ?
ମେରେ ଆଇନେ ସେ ଯେ ଯୌହର ନିକଲତା କ୍ୟୁଁ ନହିଁ

କବ୍ ଜବାଁ ଖୋଲ ହମାରୀ ଲଜ୍ଜତେ ଗୁଫ୍‌ତାର୍ ନେ
ଫୁଙ୍କ୍ ଡାଲ୍ ଯବ୍ ଚମନ୍ କୋ ଆତଶେ ପୈକାର୍ ନେ ।

## ଯନ୍ତ୍ରଣାର ସ୍ୱର

(ଜଳୁଛି ମୁଁ ହୁତୁ ହୁତୁ ଶାନ୍ତି ନ ମିଳଇ
ବହିଯାଅ ଗଙ୍ଗାଜଳ ମୋ ଉପର ଦେଇ
ନାନାମତ, ନାନାପଥ, ବିଭ୍ରଜିତ ଦେଶ
ଏକମନ୍ତ୍ର, ଜାଗ୍ରତ ଏକତା – ଏଠି ମାତ୍ର ବିଫଳ ପ୍ରୟାସ ।
ଯୁଗେ ଯୁଗେ ବିଭେଦ ହିଁ ଯନ୍ତ୍ରଣାଦାୟକ
ଏକ ବସୁମାତା ଏକ ଅନ୍ନଥାଳି ପାଶେ ଶତ୍ରୁତା ଯେତେକ
ଯେ ଫୁଲରେ ସ୍ନେହ, ପ୍ରେମ, ମହକ ଯେ ନାହିଁ
ସେ ଉଦ୍ୟାନେ ସଙ୍ଗୀତ ଲହରୀ—ଲଭ କହ କାହିଁ ?
ଏକତା ବନ୍ଧନ ପାଇଁ ଏକା ଏକା ମରୁଅଛି ମୁହିଁ
ଆତ୍ମିକ ରଣାଙ୍ଗନରେ ମର୍ମେ ମର୍ମେ କେତେ ବ୍ୟଥା ସହି

ଅଟେ ଯାଦୁକର କବି ଶସ୍ୟାଗାର ଏକକ ଶସ୍ୟଟି
ଶସ୍ୟାଗାର ବିନା କହ—ଫୁଟିବକି କବିତା ଫୁଲଟି ?

ଉପାସକ ବିନା ସୌନ୍ଦର୍ଯ୍ୟ ସୁମନ ମରି ମରି ଝରିଯାଏ
ବିନା ଆସରରେ ଆଲୋକ ବର୍ତ୍ତିକା ଜଳି ଜଳି ଲିଭିଯାଏ ।
ଭାବୁଛୁ କେବଳ ଏ ଯାଏ କପରି ମୂକ ମୁଁ ପାଲଟି ନାହିଁ !
ମୋ କବି ପ୍ରତିଭା ବିନା ପଢ଼ନ୍ତା ଲୁଟେ ହକ କାହିଁ ଯାଉ ନାହିଁ,

ହାୟ ହାୟ ଆମ ଭୁଣ୍ଡ ବାକ୍ୟ—ସ୍ଫୁରଣ ଘଟିଲା କେବେ
ଜାଳି ପୋଡ଼ି ତାହା ଭସ୍ମ କରିଦେଲା ଦେଶସାରା ବିଭେଦାଗ୍ନି ଯେବେ ।)

ଏହି ସମସ୍ତ ମଧ୍ୟରେ ତାଙ୍କର ରଚିତ ଅନେକ କବିତାରେ ଏକତା ପାଇଁ ଯନ୍ତ୍ରଣାଦଗ୍ଧ ଅନ୍ୱେଷା, ବିଭେଦତା ଦୂରୀକରଣ ପାଇଁ ମାର୍ମିକ ଆବେଦନ ଏବଂ ଏକତା ପାଇଁ ତାଙ୍କର ବାର୍ତ୍ତା ସୁସ୍ପଷ୍ଟ । ତାଙ୍କର ଗୋଟିଏ କବିତା — "ସପ୍‌ନୁଦ୍ କ ଲୌହେ-ଭୂରବତ୍ ପର୍" ରେ ସାଂପ୍ରଦାୟିକ ଏକତା ପାଇଁ ତାଙ୍କର ବାର୍ତ୍ତା ଅତି ପ୍ରାଞ୍ଜଳ ଏବଂ ଦୃଢ଼ —

"ଓ୍ୱା ନ କରନା ଫିରକା ବନ୍ଦକେ ଲିଏ ଅପ୍‌ନି ଜୁବାଁ
ଛୁପ୍‌କେ ହୈ ବୈଠା ହୁଆ ହାଙ୍ଗାମାଏ ମହଶର୍ ୟହାଁ
ଓସଲ୍ କେ ଅସବାବ୍ ପୈଦା ହୋଁ ତେରି ତହରିର୍ ସେ
ଦେଖ୍ କୋଇ ଦିଲ୍ ନ ଦୁଃଖ୍ ଯାଏ ତେରି ତକ୍‌ରିର୍ ସେ
ମହଫିଲେ ନୌ ମୈଁ ପୁରାନି ଦାସ୍ତାନୋ କୋ ନ ଛେଡ଼୍
ରଙ୍ଗ ପର୍ ଯୋ ଅବ୍ ନ ଆୟେଁ ଉନ୍ ଫସାନୋଁ କୋ ନ ଛେଡ଼୍"

( ସାଂପ୍ରଦାୟିକ ବିଭେଦ ପାଇଁ କେବେହେଲେ ଖୋଲ ନାହିଁ ତୁଣ୍ଡ
ଗୋପନେ ବିପତ୍ତି ଘଟୁ ଅଗୁନିକେ ମୋଡ଼ିଦେବ ମୁଣ୍ଡ
ତୋ ଲେଖାରୁ ଝଙ୍କୃତ ହେଉ ସମତା ଓ ମିଳନର ସ୍ୱର
କା ହୃଦେ ନ ଆସୁ କେବେ ଢଳେ ଦୁଃଖଧାର

ନୂତନ ଆସରେ ମୋତେ କହ ନାହିଁ ସେ ପୁରୁଣା କଥା
ରଙ୍ଗହୀନ କଥାର ତରଙ୍ଗେ ଦିଅନାହିଁ କାହା ମନେ ବ୍ୟଥା )

ଏକଥା ମଧ୍ୟ ସ୍ମରଣଯୋଗ୍ୟ ଯେ ସାର୍ ସୟଦ୍ ଅହେମଦ ଖାଁ ହିନ୍ଦୁ = ମୁସଲମାନ୍ ଏକତା ପାଇଁ ପ୍ରଗାଢ଼ ଚେଷ୍ଟା କରିଥିଲେ । ଇଂରେଜମାନଙ୍କ ସହିତ ଭାରତୀୟମାନଙ୍କୁ ବସିବାର ସୁବିଧା ନ ଦେବାରୁ ସେ ୧୮୬୭ ରେ ଇଂରେଜ ଦରବାରରୁ ଉଠିକରି ଚାଲି ଆସିଥିଲେ । *

ଇକ୍‌ବାଲ୍ ବିଶ୍ୱାସ କରୁଥିଲେ ଯେ ଯଦି ଆକ୍‌ବରଙ୍କ "ଦିନେ ଏଲାହି" ଏବଂ କବିରଙ୍କ ମିତବାଣୀ ଲୋକମାନଙ୍କ ପାଖରେ ଯଥାର୍ଥ ଭାବରେ ପହଞ୍ଚି ପାରିଥାନ୍ତା, ତାହାହେଲେ ଜାତିଭେଦ ଅନେକାଂଶରେ କମି ଯାଇଥାନ୍ତା । ୨୯ ଡିସେମ୍ବର, ୧୯୩୦ରେ ଏଲାହାବାଦରେ ଅନୁଷ୍ଠିତ ମୁସ୍‌ଲିମ୍ ଲିଗ୍‌ର ବାର୍ଷିକ ଉତ୍ସବରେ ସଭାପତିତ୍ୱ କରି ସେ କହିଥିଲେ—"ରେନାନ୍ (Renan)ଙ୍କ ମତରେ ମଣିଷ ତାର ଜାତି ବା ଧର୍ମର ଦାସ ନୁହେଁ, ନଦୀର ଗତିପଥ ବା ପର୍ବତମାଳାର ଦିଗ ତାଙ୍କୁ ଶୃଙ୍ଖଳିତ କରେ ନାହିଁ । ସୁସ୍ଥ ମନ ଓ ବିବେକ ଥିବା ମଣିଷର ଏକ ବିରାଟ ଦଳ ଏପରି ଏକ ନୈତିକ ଚେତନା ଗଢ଼ିତୋଳେ, ଯାହାକୁ ଆମେ "ଜାତି" କହୁ । ଏ ପ୍ରକାର ସଙ୍ଗଠନ ସମ୍ଭବ ଯଦିଓ ଏଥିପାଇଁ ମନୁଷ୍ୟକୁ ବାସ୍ତବ ଭାବରେ ପୁନର୍ଜୀବନ ଦେବାରେ ଏବଂ ତାଙ୍କୁ ଏକ ନୂତନ ଆବେଗ ଦେବାରେ ଏକ ଦୀର୍ଘ ଓ କ୍ଳାନ୍ତିକର ପଦ୍ଧତି ଆବଶ୍ୟକ । ଏ ଦେଶର ଜନତା କବିରଙ୍କର ମିତବାଣୀ ଓ ଆକବରଙ୍କର ଦିନେ ଇଲାହି ଦ୍ୱାରା ଉଦ୍‌ବୁଦ୍ଧ ହୋଇଥିଲେ, ଏ କଥା ଭାରତରେ ସମ୍ଭବ ହୋଇ ପାରିଥାନ୍ତା । ଅଭିଜ୍ଞତାରୁ ଜଣାଯାଏ ଯେ, ଭାରତର ବିଭିନ୍ନ ଜାତି ଓ ବିଭିନ୍ନ ଧର୍ମର ଲୋକମାନେ ଏକ ବୃହତ୍ତର ସତ୍ତାରେ ନିଜ ନିଜର ସ୍ୱାତନ୍ତ୍ର୍ୟକୁ ନିମଜ୍ଜିତ କରିବାର ଆଗ୍ରହ ପ୍ରଦର୍ଶନ କରି ନାହାନ୍ତି । ପ୍ରତ୍ୟେକ ଦଳ ଏହାର ସାମୂହିକ ସ୍ଥିତି ପାଇଁ ଉଦ୍‌ଗ୍ରୀବ । ରେନାନ୍‌ଙ୍କ ମତରେ, ନୈତିକ ଚେତନା—ଯେଉଁଥିରେ ଜାତିର ନିର୍ଯ୍ୟାସ ନିହିତ—ଗଠନ କରିବା ଏକ ପ୍ରତିଦାନ ଦାବୀ କରେ, ଯାହାକି ଭାରତର ବିଭିନ୍ନ

* ହିସ୍ଟ୍ରି-ଆଡ୍‌ଓ୍ୱିଦ ମୌଲନା ଅଲ୍‌ତାଫ୍ ହୋସେନ ହାଲି ପୃ-୩୬୧

ଧର୍ମର ଲୋକମାନେ ଦେବା ପାଇଁ ପ୍ରସ୍ତୁତ ନୁହନ୍ତି, ତେଣୁ ଭାରତୀୟ ଜାତିର ଏକତା ଅନେକଙ୍କର ସହିତ ଓ ସହଯୋଗ ଦ୍ୱାରା ହିଁ ସମ୍ଭବ । ଅଙ୍ଗୀକାରବଦ୍ଧ ନ ହେଲେ ଏହ ସମ୍ଭବ ନୁହେଁ ।"

ଇକ୍‌ବାଲ୍ ଭଲ ଭାବରେ ଜାଣନ୍ତି ଯେ, ସମସ୍ତ ସାମ୍ରାଜ୍ୟବାଦୀ ଶକ୍ତି "ବିଭାଜନ କରି ଶାସନ କର" ପଦ୍ଧତି ଅନୁସରଣ କରି ବଞ୍ଚନ୍ତି । ତେଣୁ ସେ ତାଙ୍କର ଦେଶବାସୀଙ୍କୁ ସତର୍କ କରାଇଛନ୍ତି ଯେ, ଆମର ବିଭିନ୍ନ ବିଭାଗ ମଧ୍ୟରେ ସାଂପ୍ରଦାୟିକ ଓ ଧର୍ମବର୍ଦ୍ଧିଷ୍ଣୁ ସଂଘର୍ଷ ହିଁ ଭାରତକୁ ଶାସନ କରୁଥିବା ସାମ୍ରାଜ୍ୟବାଦୀ ଶକ୍ତିକୁ ସାହାଯ୍ୟ କରୁଛି । ସେତେବେଳେ ଆମ ସମାଜକୁ ପ୍ରପୀଡ଼ିତ କରିଥିବା ସମସ୍ତ ପ୍ରକାର ବାଧା, ବ୍ୟାଧି ଓ ଯେଉଁସବୁ ଉପାଦାନ ଜାତୀୟ ସହିତର ବିରୋଧୀ ଥିଲେ, ସେଗୁଡ଼ିକର ବିଶ୍ଳେଷଣ ସେ ନିଜ କବିତା— "ତସ୍‌ୱିରେ-ଦରଦ୍" ରେ କରିଛନ୍ତି ।

## ତସ୍‌ୱିରେ ଦରଦ୍

ନହିଁ ମିନ୍ନତ୍ କଶେ-ତାବେ ଶନିଦନ୍ ଦାସ୍ତାଁ ମେରି
ଖମୋଶି ଗୁଫ୍‌ତଗୁ ହୈ, ବେ ଜବାନୀ ହୈ ଜବାଁ ମେରି
ୟେ ଦସ୍ତୁରେ-ଜବାଁ ବନ୍ଦୀ ହୈ କୈସା ତେରି ମହଫିଲ ମେଁ
ୟହାଁ ତୋ ବାତ୍ କରନେ କୋ ତରସ୍‌ତି ହୈ ଜବାଁ ମେରି

ଉଠାଏ କୁଛ୍ ୱରକ୍ ଲାଲେ ନେ କୁଛ୍ ନର୍‌ଗିସ୍ ନେ କୁଛ୍ ଗୁଲ୍‌ନେ
ଚମନ୍ ମେଁ ହର ତରଫ୍ ବିଖ୍‌ରି ହୁଇ ହୈ ଦାସ୍ତାଁ ମେରି
ଉଡ଼ାଲି କୁମ୍‌ରିୟୋଁନେ, ତୁତିୟୋଁନେ, ଅନ୍ଦଲିବୋଁନେ
ଚମନ୍ ୱାଲୋଁନେ ମିଲ୍‌କର୍ ଲୁଟ୍‌ଲି ତରଜେ ଫୁଗାଁ ମେରି
ଟପକ୍ ଐ ଶମା ଆଁସୁ ବନ୍ କେ ପରୱାନୋଁ କି ଆଖୋଁମେ
ସରାପା ଦର୍ଦ ହୁଁ ହସ୍‌ରତ୍ ଭରି ହୈ ଦାସ୍ତାଁ ମେରି
ଏଲାହି ! ଫିର୍ ମଜା କ୍ୟା ହୈ ୟହାଁ ଦୁନିୟାଁ ମେଁ ରହନେ କା ?
ହୟାତେ ଯାୱେଦାଁ ମେରି, ନା ମର୍‌ଗେ ନା ଗହାଁ ମେରି

ମେରା ରୋନା ନହିଁ, ରୋନା ହୋ ଦେ ସାରେ ଗୁଲଷ୍ତାଁ କା
ଓ ଗୁଲ୍ ହୁଁ ମୈଁ ଖେଜାଁ ହର୍ ଗୁଲ୍ କି ହୈ ରୋଯା ଖେଜାଁ ମେରା ।

## ଯନ୍ତ୍ରଣାର ଚନ୍ଦ

( ବ୍ୟଥା ବେଦନାର ଗୀତ ଶୁଣିବାକୁ ଜଣେ କେହ୍ନି ନାହିଁ
ନୀରବେ କରେ ଗୁହାରି, ନୀରବତା ପଞ୍ଜରିଠେ ବସିଅଛି ମୁହିଁ
ତୋ ଆସରେ ପାଟିବନ୍ଦ ସତେ ଏକ ଅଦ୍ଭୁତ କାନୁନ୍
ପାଟିଖୋଲ କଥା ହେବା ପାଇଁ, ଅବିରତ ମନ ଛନ୍‌ଛନ୍ ।

ସାରା ବଗିଚ୍ଛଟା ଭରି, ଦୁଃଖ ମୋର ଉଡ଼ି ଉଡ଼ି ବୁଲେ
ମୋ' ଦୁଃଖରେ ଯୁଇ, ଜାଇ, ମଲ୍ଲୀ—ସମଭାଗୀ ମଣିଷର ଭୁଲେ
ଯାହବା ବସିଛି ମୁହିଁ ପାଟି ବନ୍ଦ୍ କରି
ମୋ' ଦୁଃଖ ଗାଇ ବୁଲନ୍ତି ବଣୀ ଶୁଆ ଶାରୀ ।

ମହମବତୀଟି ପରି ତିଳ ତିଳ ଦଗ୍‌ଧ ହୁଏ ଏକା
ମୋ' ଆଖିରୁ ଟୋପା ଟୋପା ଲୁହ—ବରହିତ ନଜସ୍ୱ ଇଲକା
ଦୁଃଖର ମୂର୍ତ୍ତିଟି ଅବା—ମୋ କାହାଣୀ ଦୁଃଖଭରା ନଈ
ହେ ପ୍ରଭୁ ! ଏତେ ବଡ ପୃଥିବୀରେ ବଞ୍ଚିବାର ଗୌରବ ବା କାହିଁ ?

ଇଚ୍ଛାମୃତ୍ୟୁ ଅସମ୍ଭବ, ନୁହେଁ ମୁଁ ତ କେବେ ମୃତ୍ୟୁଞ୍ଜୟୀ
ସାରା ଦେଶ କାନ୍ଦେ ମୋର, ଆକାଶରେ ବେଦନାର ଛାଇ
ମୁଁ ଏକଇ ଝରିବଉଳ, ଫୁଲକତ ଶରତ ଲଗନେ
ସୁଖଶାନ୍ତି ସନ୍ଧାନରେ, ନୀରବରେ ବସିଅଛି ଧ୍ୟାନେ । )

ନିଜ ଦେଶବାସୀଙ୍କୁ ଉଦ୍‌ବୋଧନ ଦେଇ ସେ ସତର୍କ କରାଇଛନ୍ତି ଯେ, ସେମାନେ ଅତୀତ ଗୌରବରେ ଉତ୍ଫୁଲ୍ଲ ନ ହୋଇ ବର୍ତ୍ତମାନ ପ୍ରତି ଦୃଷ୍ଟି ଦିଅନ୍ତୁ ଓ ଭବିଷ୍ୟତ ପାଇଁ ସଚେତନ ହୁଅନ୍ତୁ । ସେ ଭଲ ଭାବରେ ଜାଣନ୍ତି ଯେ, କେବଳ ଅଶ୍ରୁମୋଚନ କଲେ ଏ ଦେଶର ହତାଶାବସ୍ଥା ସୁଧୁରିବ ନାହିଁ । ଏଇ ମର୍ମରେ ତାଙ୍କ ଲେଖନୀରୁ ଝରିଛି—

ରୁଲତା ହୈ ତେରା ନଜ୍ଜାରା ଐ ହିନ୍ଦୁସ୍ତାଁ ମୁଝ୍‌କୋ
କେ ଇବ୍‌ରତ୍ ଖେଜ ହୈ ତେରା ଫସାନା ସବ୍ ଫସାନୋଁ ମେଁ
ଦିଆ ରୋନା ମୁଝେ ଐସା କେ ସବ୍‌କୁଛ୍ ଦେ ଦିଆ ଗୋୟା
ଲିଖା କଲମେ-ଅଜଲ୍ ନେ ମୁଝ୍‌କୋ ତେରେ ନୋହା ଖାନେ ମେଁ
ନଶାନେ-ବର୍ଗେ-ଗୁଲ୍ ତକ୍ ଭି ନ ଛୋଡ଼୍ ଇସ୍ ବାଗ୍ ମେଁ ଗୁଲ୍‌ଚିଁ
ତେରି କିସ୍‌ମତ୍ ସେ ରଜମ୍ ଆରାୟିୟାଁ ହୈଁ ବାଗ୍‌ବାନୋଁ ମେଁ
ଛୁପାକର୍ ଆସ୍ତିଁ ମେଁ ବିଜ୍‌ଲିୟାଁ ରଖି ହୈ ଗର୍‌ଦୁଁ ନେ
ଅନାଦିଲ୍ ବାଗ୍ କେ ଗାଫିଲ୍ ନ ବୈଠେଁ ଆଶିଆନୋଁ ମେଁ
ସୁନ୍ ଐ ଗାଫିଲ୍ ଶଦା ମେରି ୟେହ ଐସି ଚିଜ୍ ହୈ ଜିସ୍‌କୋ
ୱିଜଫା ଜାନ୍‌କର୍ ପଢ଼୍‌ତେ ହୈଁ ତାଏର୍ ବୋ-ସ୍ତାନୋ ମେଁ
ୱତନ୍ କି ଫିକର୍ କର୍ ନାଦାଁ, ମୁସିବତ୍ ଆନେ ୱାଲି ହୈ
ତେରି ବରବାଦିୟୋଁ କେ ମଶ୍‌ୱରେ ହୈଁ ଆସ୍‌ମାନୋଁ ମେଁ
ଜରା ଦେଖ୍ ଇସ୍ କୋ ଯୋ କୁଛ୍ ହୋ ରହା ହୈ ହୋନେ ୱାଲି ହୈ
ଧରା କ୍ୟା ହୈ ଭଲା ଅହଦେ କୋହନ୍ କି ଦାସ୍ତାନୋଁ ମେଁ
ଏ ଖାମୋଶି କହାଁ ତକ୍, ଲଜ୍ଜତେ ଫରିୟାଦ୍ ପୈଦା କର୍
ଜମିଁ ପର୍ ତୁ ହୋ ଅର୍ ତେରି ସଦା ହୋ ଆସ୍‌ମାନୋଁ ମେଁ
ନ ସମ୍‌ଝୋଗେ ତୋ ମିଟ୍ ଯାଓଗେ ଐ ହିନ୍ଦୁସ୍ତାଁ ୱାଲୋ
ତୁମହାରି ଦାସ୍ତାଁ ତକ୍ ଭି ନ ହୋଗି ଦାସ୍ତାନୋଁ ମେଁ
ୟହି ଆଇନେ କୁଦ୍‌ରତ୍ ହୈ ୟହି ଅସ୍‌ଲୁବେ ଫିତ୍‌ରତ୍ ହୈ ।
ଯୋ ହୈ ରାହେ ଅମଲ୍ ମେଁ ଗାମ୍‌ଜନ୍ ମହବୁବେ ଫିତ୍‌ରତ୍ ହୈ ।

( ହେ ଭାରତ ! ତୋ’ ଦୈନ୍ୟ ଦେଖିଲେ ମୋତେ ଶତ ଦୁଃଖ ଆସେ
ଜଗତ୍‌ଯାକର କାହାଣୀ / ତୋ’ କାହାଣୀ ଭୟାନକ ଦିଶେ
ଭାଷା, ଭାବ, କଥନକା ଶକ୍ତି, ସବୁ କଣ୍ଠି ଈଶ୍ୱରଙ୍କ ଦାନ
ତୋ ଦୁଃଖ ଗୀତ ଗାଇବ ମୁଁ, ଏ ଜନ୍ମରେ ହୋଇବ ମହାନ
ବଗିଚାର ମାଳିଭାଇ ! ସାଉଁଟିନେ ସବୁ ଏପରି କି ଫୁଲର ପାଖୁଡ଼ା
ତୋ’ ହାତର ପରଶରେ, ଧନ୍ୟ ହବ ଧରା-ଧନ୍ୟ ତୁମ୍ଭ ହେ ମାଳିକାପୁଡ଼ା
ନସ୍ତୁନ୍ତ ଦେଖିଛୁ ଅନେକ ଦୁଃଖ, ଭାଗ୍ୟରେ ବା ସୁଖ କାହିଁ
ହାତ ଗୋଡ଼ ବାନ୍ଧି ବସିଲେ ହେବନି, ଦେଶ ମାତୃଙ୍କ ସେବା ପାଇଁ

ହେ ଭୂଲ୍ ମଣିଷ, ଶୁଣିବ କି ଆଜ କବିର ଅନ୍ତର କଥା
ଯୁଗେ ଯୁଗେ ସବୁ ମଣିଷ ବୁଝିଛି, କବିତାର ମର୍ମ ବ୍ୟଥା
ମୂରୁଖ ଜନତା ଆଗେ ଗୃହ୍ନିଁ ଦେଖ, ଅଛୁ ଯେ କେତେ ବିପଦ
ଅଚିରେ ଲଭିବ ମୃତ୍ୟୁ, ସ୍ୱର୍ଗ ରାଜ୍ୟ ଲୁମ ପାଇଁ ଲେଖା ଯେ ପ୍ରମାଦ
ବର୍ତ୍ତମାନ ସମ୍ମୁଖେ ଆଖି ରଖି ପାଦ ଦିଅ ଆଗକୁ ଆଗକୁ
ଅନ୍ତରର ସ୍ୱପ୍ନ ଖୋଲି କହ ଲାଲ ମୁକ୍ତ ଦେଲେ ଭୁକ୍ତ କଙ୍କାଳକୁ !
କେତେ କାଳ ଆଉ ନୀରବେ ବସିବ ପ୍ରତିବାଦ ହେଉ ଭାଷା
ସାରା ଜଗତଟା ଚମକି ଉଠିବ—କଟିଯିବ ଅମାନିଶା
ମୋ ଦେଶର ଯୀଚ ଭଉଣୀ ସଭିଏ—ଜାଗିଉଠ ଆଜ ବାରେ
ଜାତି ଇତିହାସ ନିଜ ହାତେ ଅଛି--ହେଳାରେ, ହଜିଯିବ ପରପାରେ ।
କର୍ମକୁଶଳ ମଣିଷର ବନ୍ଧୁ, ପ୍ରକୃତି, ପୁରୁଷ ଯେଣୁ
ଏ ନିୟମ କେବେ ଅସତ୍ୟ ହେବନି, କବି ବ୍ୟଥା ପାଏ ତେଣୁ । )

ତାଙ୍କର ଏକାନ୍ତ ଇଚ୍ଛା ଯେ, ଦେଶର ଯେଉଁ ଦାରୁଣ ପରିସ୍ଥିତି କଥା ତାଙ୍କ କବିତାରେ ପ୍ରତିଫଳିତ ହୋଇଛି, ପ୍ରତ୍ୟେକ ଭାରତୀୟ ତାକୁ ହୃଦୟଙ୍ଗମ କରନ୍ତୁ ଏବଂ ପୃଥିବୀରେ ଯେଉଁ ବୈପ୍ଳବାତ୍ମକ ପରିବର୍ତ୍ତନ ଘଟିଛି, ସେଥିପ୍ରତି ସତର୍କ ଓ ସଜାଗ ରୁହନ୍ତୁ । ଆବେଗପୂର୍ଣ୍ଣ ଦେଶପ୍ରେମ ଓ ଜାତୀୟ ଅଭିବୃଦ୍ଧି ଓ ଉନ୍ନତିର ପ୍ରବଳ ଆକାଂକ୍ଷା ଇକ୍‌ବାଲ୍‌ଙ୍କ ନିମ୍ନଲିଖିତ ପଦ୍ୟାବଳୀରୁ ବେଶ୍ ସୁସ୍ପଷ୍ଟ ହୁଏ—

"ହୋଏଦା ଆଜ୍ ଅପ୍‌ନେ ଜଖ୍‌ମେଁ ପିହ୍ନାଁ କରକେ ଛୋଡ୍ଁଗା
ଲହୁ ରୋ ରୋ କେ ମହଫିଲ୍ କୋ ଗୁଲସ୍ତାଁ କରକେ ଛୋଡ୍ଁଗା
ଜଲାନା ହୈ ମୁଝେ ହର୍ ଶାମ୍ମେ ଦିଲକୋ ସୋଜେ ପିହ୍ନାଁ । ସେ
ତେରୀ ଜୁଲ୍‌ମତ୍ ମେଁ ମୈଁ ରୌଶନ୍ ଚିରାଗାଁ କରକେ ଛୋଡ୍ଁଗା
ମଗର୍ ଗୁନ୍‌ଚୋଁ କି ସୁରତ୍ ହୋଁ ଦିଲେ ଦର୍ଦ ଆଶ୍‌ନା ପୈଦା
ଚମନ୍ ମେଁ ମୁଶ୍‌ତେ ଖାକ୍ ଅପ୍‌ନ ପରେଶାଁ କରକେ ଛୋଡ୍ଁଗା
ପିରୋନା ଏକ୍ ହି ତସ୍‌ବିହ ମେଁ ଇନ୍ ବିଖ୍‌ରେ ଦାନୋଁ କୋ
ଯୋ ମୁଶ୍‌କିଲ୍ ହୈ ତୋ ଇସ୍ ମୁଶ୍‌କିଲ୍ କୋ ଆଁସା କରକେ ଛୋଡ୍ଁଗା
ମୁଝେ ଏ ହମ୍‌ନଶୀଁ ରହନେ ଦେ ଶଗ୍‌ଲେ ସିନା କାଭି ମେଁ

କେ ମୈଁ ଦାଗେ ମୁହବ୍‌ବତ୍ କୋ ନୁମାୟାଁ କରକେ ଛୋଡ୍ଡୁଂଗା
ଦେଖା ଦୁଗାଁ ଯହାଁ କୋ ଯୋ ମେରୀ ଆଖୋଁନେ ଦେଖା ହୈ
ତୁଝେ ଭି ସୁରତେ ଆଇନା ହୈରାଁ କରକେ ଛୋଡ୍ଡୁଂଗା
ଯୋ ହୈ ପର୍ଦୋଁ ମେଁ ପିହ୍ନାଁ ଚଶମେ ବିନା ଦେଖ୍ ଲେତି ହୈ
ଯମାନେ କି ତବିୟତ୍ କା ତକାଜା ଦେଖ୍ ଲେତି ହୈ ।

( ସମସ୍ତ ଆସିଛୁ ଆଜ ଅନ୍ତରର କ୍ଷତକୁ ମୁଁ ପ୍ରକାଶ କରିବି
ଲକ୍ଷ ପଛେ ଲକ୍ଷ ହେଉ ମୋ ଦେଶକୁ ଫୁଲରେ ଭରିବି ।
ଅନ୍ତର୍ଦୀପ ପ୍ରଜ୍ୱଳିତ କରି ଚଉହଦ୍ଦ ଆଲୋକ ଜାଳିବି
ସତ୍ୟର କୁସୁମ ପରଶେ, ଜଗତରେ ମହକ ଭରିବି ।
ଏ ମାଟିର ଯେତେକ କଳିକା, ଏକ ସୂତ୍ରେ ଗୁନ୍ଥିବି ମାଳଟି
ଆସୁ ପଛେ ଯେତେ ବାଧା ବିଘ୍ନ, ହସାଇବି ଦେଶ ଧୂଳି,ମାଟି ।
ଏକା ମୋତେ ଶ୍ରୁଉଦିଅ ଜଳିବାକୁ, ଯେତେ ମୋର ବନ୍ଧୁ, ପରିଜନ
ସମସ୍ତ ଆସିଛୁ ଆଜ ପ୍ରେମ କ୍ଷତ, କରିବି ମୁଁ ତିଳେ ଉନ୍ମୋଚନ ।
ଯାହା ମୁଁ ଦେଖିଛୁ, ଜାଣିଛୁ, ସାରା ବିଶ୍ୱେ ପ୍ରସୃରିବ ତାହା
ମୋ ମନର ପ୍ରତିଛବି ସବୁ, ଗୋଲାପ ପାଖୁଡ଼ା ପରି ବିକଶିବ ଆହା ।
ଲୁକ୍କାୟିତ ସତ୍ୟସବୁ, ଆଖି ନୁହେଁ ଜ୍ଞାନନେତ୍ର ଦେଖେ
ସମୟର ରଥଚକ ଗଡ଼ିଗଲେ, ସେ କେବଳ ଆଗକୁ ହିଁ ଦେଖେ ।)

ଇକ୍‌ବାଲ୍‌ଙ୍କ ଇଚ୍ଛା ଯେ, ଦେଶବାସୀ ନିଜ ଦେଶର ଗୌରବକୁ ହୃଦୟଙ୍ଗମ କରନ୍ତୁ । ଚିନ୍ତାରେ ମହାନତା ଭରିଯାଉ ଓ ମାନସିକ ସଂକୀର୍ଣ୍ଣତାକୁ ଦୂରେଇ ଦେଇ ଜୀବନର ଉଚ୍ଚତର ମାନପାଇଁ ପ୍ରୟାସୀ ହୁଅନ୍ତୁ । ତାଙ୍କ ମତରେ ଜାତିର ମାନସିକ ଅଭିବୃଦ୍ଧି ପାଇଁ ସଂକୀର୍ଣ୍ଣତା ଓ ସାମ୍ପ୍ରଦାୟିକତା ବିଷ ସଦୃଶ । ଏହାଦ୍ୱାରା ବ୍ୟକ୍ତିଗତ ଓ ସାମୂହିକ ସାମର୍ଥ୍ୟ ଅଯଥା ବିଭେଦରେ ଅପଚୟ ହୁଏ ଏବଂ ଅବଶେଷରେ ଜାତୀୟ ଚରିତ୍ର ଗଠନର ଧାରା ବାଧାପ୍ରାପ୍ତ ହୁଏ । ଇକ୍‌ବାଲ୍ ଅମ୍ଭଙ୍କୁ ଜୀବନର ଶ୍ରେଷ୍ଠତ୍ୱର ରହସ୍ୟ ହୃଦୟଙ୍ଗମ କରିବାକୁ ଆହ୍ୱାନ ଦେଉ ଅଛନ୍ତି ଏବଂ ସତର୍କ କରୁଛନ୍ତି ଯେ ଅତ୍ୟାଚାର, ଅବିଚାର ଓ ଉଦାସୀନତା ହିଁ ପ୍ରକୃତରେ ସବୁ ବ୍ୟକ୍ତିଗତ ଓ ଜାତୀୟ ବ୍ୟାଧିର ମୂଳ । ଭାରତୀୟ ଚିନ୍ତାଧାରା

ଅନୁସରଣରେ କୁହାଗଲେ – ଏହାର ନଗ୍ନୀକରଣ – ଆଧ୍ୟାତ୍ମିକତାବାଦ, ଆତ୍ମ-ଶୁଦ୍ଧି, ଧ୍ୟାନ ଓ ଯୋଗ ଦ୍ୱାରା ହିଁ ସମ୍ଭବ ।

କଯ୍ୟା ରଫ୍ଅତ୍ କି ଲଜ୍ଜତ୍ ସେ ନ ଦିଲ୍ କୋ ଆଶ୍ନା ତୁ ନେ
ଗୁଜାର ଉମର୍ ପସ୍ତି ମେଁ ମିଶାଲେ-ନକ୍ସେ-ପା ତୁ ନେ
ରହା ଦିଲ୍ ବସ୍ତ ଏ ମହଫିଲ୍ ମଗର୍ ଅପ୍ନି ନଗାହୋଁ କୋ
କଯ୍ୟା ବେରୁନେ ମହଫିଲ୍ ସେ ନ ହୈରତ୍ ଆଶନା ତୁ ନେ
ଫିଦା କରତା ରହା ଦିଲ୍ କୋ ହସିନୋ କି ଅଦାଓଁ ପର୍
ମଗର୍ ଦେଖି ନ ଇସ୍ ଆଇନେ ମେଁ ଅପ୍ନି ଅଦା ତୁନେ
ତାଆସ୍ସୁବ୍ ଛୋଡ଼୍ ନାଦାଁ ! ଦହର୍ କେ ଆଇନା ଖାନେ ମେଁ
ଯେ ତସ୍ୱିରେଁ ହେଁ ତେରି ଜିନ୍ କୋ ସମଝା ହୈ ବୁରା ତୁନେ
ସରାପା ନାଲ୍ ଏ ବେଦାଦେ ସୋଜେ ଜିନ୍ଦଗୀ ହୋ ଯା
ସିପନ୍ଦ୍ ଆସା ଗିରହ ମେଁ ବାନ୍ଧ୍ ରକ୍ଖି ହୈ ସଦା ତୁନେ ।
ସଫାଏ ଦିଲ୍ କୋ କ୍ୟା ଆରାଇଶେ ରଙ୍ଗେ ତାଆଲ୍ଲୁକ୍ ସେ
କଫେ ଆଇନା ପର୍ ବାନ୍ଧି ହୈ ଓ୍ୱିଦ୍ ନାଦାଁ ହିନା ତୁନେ ।

(ଅବଶୋଷ ରହିଗଲା ତେଣୁ, ଉର୍ଦ୍ଧ୍ୱଗତି ନିମ୍ନ ହେଲା ଯେଣୁ
ଲିଭିଗଲା ପାଦଚିହ୍ନ, ହଜିଗଲା ଦମ୍ଭ ଅଭିମାନ, ଜୀବନଟା ତୁଚ୍ଛ ହେଲା ତେଣୁ ।
କୃପ ବେଙ୍ଗ ପରି ତୁମେ, ନିଜ ସୁଖେ ନିଜେ ମଗ୍ନ ହେଲ
ଜଗତକୁ ସଂକୁଚିତ କରି, ନିଜ ଅନ୍ଧତ୍ୱରେ ଦାସତ୍ୱ କି ଭଲ !
ହେ ମୂଢ଼ ମାନବ ସଂସାରଟା କାଚଘର ଦିଶଇ ସୁନ୍ଦର
ହାତରୁ ଖସିଲେ ତୁଟେ; ରୂପ, ଭେକ ସବୁ ହିଁ ଅସାର ।
ଜୀବନରୁ ମୁକ୍ତି ପାଇଁ ଯେତେ ଦୁଃଖ, ଯେତେ ଅବିଚାର
ପ୍ରତିବାଦ ସ୍ୱର ତୋଳ, ନିଜ ହାତେ କରି ବାରେ, ତାର ପ୍ରତିକାର
ମନଟି ସୁନ୍ଦର ଥିଲେ, ଦେହଟାକୁ ପଚାରେ ବା କିଏ
ସୁନ୍ଦରୀ ନାୟିକା ରୂପେ ଈର୍ଷାନ୍ୱିତା ହେବା-ତା' ପାଶେ କି ଯାଏ !

ଏହି ସାରାଂଶ ତାଙ୍କର ନିମ୍ନଲିଖିତ କବିତାରେ ଅଧିକ ପ୍ରସାରିତ ହୋଇଛି, ଯେଉଁଥିରେ ସେ ମାନବୀୟ ପ୍ରେମ; ସହାନୁଭୂତି, ଅନୁକମ୍ପା ଓ ପର ଦୁଃଖକାତରତାର ବାଣୀ ପ୍ରଚାର କରିଛନ୍ତି । ଅନୁକମ୍ପା ଦ୍ୱାରା ହିଁ ମନୁଷ୍ୟ ବିଶ୍ୱ

ବହିର୍ଭୂତ ବସ୍ତୁ ସମ୍ପର୍କରେ ଅନୁମାନ କରିପାରେ ଓ ବସ୍ତୁର ଅନ୍ତର୍ନିହିତ ବାସ୍ତବତା ବିଷୟରେ ଧାରଣା କରିପାରେ । ଇକ୍‌ବାଲ୍‌ଙ୍କ ମତରେ କେବଳ ବାହ୍ୟ ବସ୍ତୁର ଅବଲୋକନ ପାଇଁ ଆଖିର ସୃଷ୍ଟି ହୋଇନାହିଁ ବରଂ ମନୁଷ୍ୟ ଜାତିର ଦୁଃଖ ଦୁର୍ଦ୍ଦଶାରେ ଅଶ୍ରୁ ବିମୋଚନ ପାଇଁ ମଧ୍ୟ ତାହା ଉଦ୍ଦିଷ୍ଟ । ସାରା ପୃଥିବୀକୁ ଦେଖି-ପାରୁଥିବା ସ୍ଥଳେ ମନୁଷ୍ୟ ଯଦି ନିଜ ଅନ୍ତରାତ୍ମାକୁ ଦେଖି ନ ପାରେ ତାହେଲେ ଏହାଠାରୁ ବଳି କ୍ଷୋଭର ବିଷୟ ଆଉ କଣ ହୋଇ ପାରେ ? ଏହି କବିତାରେ ଇକ୍‌ବାଲ୍ ସାମ୍ପ୍ରଦାୟିକତାକୁ ଏକ ବୃକ୍ଷ ସହିତ ତୁଳନା କରିଛନ୍ତି, ଯାହାର ଫଳ ସ୍ୱରୂପ ଦଣ୍ଡାୟମାନ-ସଙ୍କୀର୍ଣ୍ଣତା ଓ ଅନୁଦାରତା । ସେ କହନ୍ତି ଯେ, ଆଦମ (Adam) ଯେପରି ନିଷିଦ୍ଧ ଫଳ ଭକ୍ଷଣ କରିବାରୁ ବୈକୁଣ୍ଠରୁ ବିତାଡ଼ିତ ହୋଇଥିଲେ, ସେହିପରି ଯେଉଁ ବ୍ୟକ୍ତି ସାମ୍ପ୍ରଦାୟିକତାରୂପୀ ବୃକ୍ଷର ଫଳ ଆସ୍ୱାଦନ କରିବ ସେ ଅକଥନୀୟ ଦୁଃଖ ଓ ଯନ୍ତ୍ରଣାର ଶିକାର ହେବ । ଇକ୍‌ବାଲ୍ କହନ୍ତି ଯେ, ପ୍ରତ୍ୟେକ ବ୍ୟକ୍ତି ନିଜର ମୂଲ୍ୟ ବୁଝିବା ଉଚିତ ଏବଂ ଜାତୀୟ ଏକତା, ପାରସ୍ପରିକ ପ୍ରେମ ଓ ସହାନୁଭୂତି ଦ୍ୱାରା ଆତ୍ମ ନିରୀକ୍ଷଣ ଏବଂ ପୁନର୍ମିଳନର ପଥ ପରିଷ୍କାର କରିବା ଉଚିତ —

ଦିଖା ୱୋ ହୁସ୍ନେ ଆଲମ୍ ସୋଜ୍ ଅପ୍‌ନି ଚଶ୍‌ମେ ପୁର୍‌ନମ୍ କୋ
ଯୋ ତଡ଼୍‌ପାତା ହୈ ପର୍‌ୱାନେ କୋ, ରୁଲ୍‌ୱାତା ହୈ ଶବ୍‌ନମ୍ କୋ
ନିରା ନଜ୍ଜାରା ହୈ ଏ ବୁଲ୍‌ହୱସ୍ ! ମକ୍‌ସଦ୍ ନହିଁ ଇସ୍‌କା
ବନାୟା ହୈ କିସିନେ କୁଛ୍ ସମଝ୍‌କର୍ ଚଶ୍‌ମେ ଆଦମ୍ କୋ
ଅଗର୍ ଦେଖା ଭି ଇସ୍‌ନେ ସାରେ ଆଲମ୍ କୋ ତୋ କ୍ୟା ଦେଖା
ନଜର୍ ଆଇ ନ କୁଛ୍ ଅପ୍‌ନି ହକୀକତ୍ ଜାମ୍ ସେ ଜମ୍ କୋ
ସଜର୍ ହୈ ଫିରକା ଆରାଇ ତାଆସ୍‌ସୁବ୍ ହୈ ସମର୍ ଇସ୍‌କା
ୟେ ୱୋ ଫଲ୍ ହୈ କେ ଜନ୍ନତ ସେ ନିକଲ୍‌ୱାତା ହୈ ଆଦମ୍ କୋ
ନ ଉଠ୍‌ଠା ଜଜ୍‌ବଏ ଖୁର୍‌ଶିଦ୍ ସେ ଏକ୍ ବର୍‌ଗେ ଗୁଲ୍‌ତକ୍ ଭି
ଏ ରିଫ୍‌ଅତ୍ କି ତମନ୍ନା ହୈ କେ ଲେ ଉଡ୍‌ତି ହୈ ଶବ୍‌ନମ୍ କୋ
ଫିରି କରତେ ନହିଁ ମଜ୍‌ରୁହେ ଉଲ୍‌ଫତ୍ ଫିକ୍‌ରେ ଦର୍‌ମାଁ ମେଁ
ୟେ ଜଖ୍‌ମି ଆପ୍ କର୍‌ଲେତେ ହୈଁ ପୈଦା ଅପ୍‌ନେ ମର୍‌ହମ୍ କୋ
ମୁହବବ୍‌ତ୍ କେ ଶରର୍ ସେ ଦିଲ ସରାପା ନୁର୍ ହୋତା ହୈ
ଜରାସେ ବିଜ୍ ସେ ପୈଦା ରିଆଜେ ତୁର୍ ହୋତା ହୈ

(ଅଶ୍ରୁସିକ୍ତ ନୟନ ମେଲାଇ ଦେଖିନଅ ସାରା ବିଶ୍ୱ, ରୂପମୋହ ଜାଲପୋଡ଼ି ଯାଏ
ପତଙ୍ଗ ବି ବିଚଳିତ ହୁଏ, ସକାଳର ଶିଶିର ଆଖି ବି, ଲୁହେ ଭରିଯାଏ ।
ବାହ୍ୟ ଦୃଶ୍ୟ ବିଲୋକନ ପାଇଁ ଦୁଇନେତ୍ର ବିଧାତା ଦେଇନ
ଉଦ୍ଦେଶ୍ୟ ତା' ମହତ୍ତର, ଯେଯାଏ ସେ ଜଗତ ଦେଖିନ ।
* ଏତେ ବଡ଼ ଜାମ୍‌ସେଦ୍‌-ପାରସ୍ୟର ରାଜା, ନିଜକୁ ସେ ଦେଖି ନ ପାରିଲା
ବିଶ୍ୱକୁ ଦେଖିଲା ସିନା-ପିଆଲାରେ ନିଜ ଭାଗ୍ୟ କଳନା ନୋହିଲା ।
ସମ୍ପ୍ରଦାୟ, ଭେଦଭାବ-ଏକ ବୃକ୍ଷେ ବିଦ୍ୱେଷର କୋଟି କୋଟି ଫଳ
ନନ୍ଦନକାନନ ମନା-ଆଦମର ସେଇ ଇଚ୍ଛା-ଭୁଞ୍ଜିବି ମୁଁ ସେ ନିଷିଦ୍ଧ-ଫଳ ।
ସର୍ବଶକ୍ତି ମୂଳାଧାର ସୂର୍ଯ୍ୟ-ରାହୁଁଲେ ବି ଗୋଲାପଟା ହସି ଉଠିବନି
ଇଚ୍ଛାଶକ୍ତି ପ୍ରଧାବିତ ଯହିଁ-ଶିଶିର ବିନ୍ଦୁ ବି ଉର୍ଦ୍ଧ୍ୱେ-ତା ଦାସ ପାବନୀ ।
ପ୍ରେମକ୍ଷତ, ପ୍ରେମଦାଗ ରୋମାଞ୍ଚିତ କରେ-ଜଡ଼ବୃତ୍ତି ଚିହ୍ନ କିବା ଲୋଡ଼ା
ଆତ୍ମ ପ୍ରେମେ ଅନ୍ଧ ସିଏ-ଜଗତର ବାହ୍ୟାଗ୍ରହ, ଥିଲେ ଥାଉ ଯେତେ ହାତୀ ଘୋଡ଼ା ।

ପ୍ରେମର ଆଲୋକେ, ପ୍ରେମର ସ୍ପନ୍ଦନେ ମୃତ ମନ ଜାଗିଥାଏ
** କ୍ଷୁଦ୍ର ଢୁର୍ ବାଜିଁ ଜନମ ଲଭଇ-ଢୁର୍ ବୃକ୍ଷ ଶୋଭାପାଏ ।

ପ୍ରତ୍ୟେକ ବ୍ୟକ୍ତିର ଉଚ୍ଚତର ଲକ୍ଷ୍ୟ ଓ ଉନ୍ନତତାର ମୂଲ୍ୟବୋଧର ଆକାଂକ୍ଷା ବ୍ୟତୀତ କୌଣସି ଜାତିର ଉନ୍ନତି ଅସମ୍ଭବ । ଏହି ଆକାଂକ୍ଷା ବ୍ୟତୀତ ବ୍ୟକ୍ତିର ମୁକ୍ତି ନାହିଁ ବା ଜାତିର ଉନ୍ନତି ନାହିଁ । ବ୍ୟକ୍ତି ବା ଜାତି ନିଜର ଅନ୍ତର୍ନିହିତ ଶକ୍ତିକୁ ଉପଲବ୍ଧି କରି ଓ ବିନିଯୋଗ କରି ଉନ୍ନତି ପଥରେ ଅଗ୍ରସର ହୋଇପାରେ । ଇକ୍‌ବାଲ୍‌ଙ୍କ ମତରେ ନିଜର ଉନ୍ନତି ପାଇଁ ଅନ୍ୟ ଉପରେ ନିର୍ଭର କରିବା ହିଁ ପ୍ରକୃତରେ ଦାସତ୍ୱ । ଅଧିକନ୍ତୁ ସେ କହନ୍ତି ଯେ ମନୁଷ୍ୟ ମନୁଷ୍ୟ ମଧ୍ୟରେ ପାର୍ଥକ୍ୟ ସୃଷ୍ଟି କରିବାର ଅନ୍ୟନାମ ହିଁ ଦାସତ୍ୱ ଏବଂ ସ୍ୱାଧୀନତାର ଗୃହକାଠି ହେଉଛି-ମାନବ ପ୍ରେମ । ଇକ୍‌ବାଲ୍ ଖୁବ୍ ବ୍ୟଥିତ ଯେ,

* କିମ୍ବଦନ୍ତୀ ଅନୁଯାୟୀ ପାରସ୍ୟ ସମ୍ରାଟ ଜାମ୍‌ସେଦ୍, ପୃଥିବୀରେ କ'ଣ ଘଟୁଛି, ନିଜ ପିଆଲାର ପ୍ରତିଫଳନରୁ ଜାଣି ପାରୁଥିଲେ ।

** ସିନାଇ ପର୍ବତ ।

ବିଦେଶୀ ଶାସକ ଭାରତର ଭାଗ୍ୟବିଧାତା ସାଜି ଯାଇଛନ୍ତି ଏବଂ ସବୁଠାରୁ ଦୁଃଖର ବିଷୟ ଯେ, ଆମ ଦେଶ ଉଦାସୀନ ହୋଇପଡ଼ୁଛି ଏବଂ ଆତ୍ମମର୍ଯ୍ୟାଦା ଭୁଲିଛି । ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ଦାସତ୍ୱ କେବଳ ଦୁଃଖଦାୟକ ନୁହେଁ, ସବୁଠାରୁ ବଳି ଦୁଃଖଦାୟକ ଘଟଣା ହେଉଛି ବିଭିନ୍ନ ସମ୍ପ୍ରଦାୟ ମଧ୍ୟରେ ଥିବା ବିଭେଦ ଓ ଅସୂୟାଭାବ । ଏପରି ସ୍ଥଳେ ଆମର କର୍ତ୍ତବ୍ୟ ହେଉଛି ଅନ୍ୟଠାରୁ ବିଚ୍ଛିନ୍ନ ହୋଇ ନିଜ ଦେଶବାସୀଙ୍କ ମଧ୍ୟରେ ଆତ୍ମମର୍ଯ୍ୟାଦା, ଜାତୀୟ ଗର୍ବ ଓ ଏକତା ସୃଷ୍ଟି କଲେ, ଜାତିର ସୁପ୍ତ ଭାଗ୍ୟର ପୁନର୍ଜାଗରଣ ସମ୍ଭବ ହେବ ।

ଦର୍ଓ୍ୱା ହର୍ ଦୁଃଖ୍ କି ହୈ ମଜ୍‌ବୁରେ ଫେଗେ ଆର୍‌ଜୁ ରହେନା
ଏଲେକେ ଜଖମ୍ ହୈ ଆଜି ଦେ ଅହସାନେ ରଫୁ ରହେନା
ଶଗବେ ଦେଖୁଦ ସେ ତା ଫଲକ୍ ପରଓ୍ୱାଜ୍ ହୈ ମେରି
ଶିକସ୍ତେ ରଙ୍ଗ୍‌ସେ ସିଖା ହୈ ମୈନେ ବନ୍‌କେ ବୁ ରହେନା
ତୁମ୍ ହେଁ କ୍ୟା ବଦପୈ ଗିଦୟାଁ ଓ୍ୱତନ୍ କି ନୌହା ଖ୍ୟାନ ମେଁ
ଇବାଦତ୍ ଚଶମେ ଶାଏର୍ କି ହୈ ହର୍‌ଦମ୍ ବା ଓ୍ୱଦୁ ରହେନା
ବନାଏଁ କ୍ୟା ସମଝ୍‌କର୍ ଶାଖେ ଗୁଲ୍‌ପର୍ ଆସିୟାଁ ଅପ୍‌ନା
ଚମନ୍ ମେଁ ଆହ କ୍ୟା ରହନା ଯୋ ହୋ ବେଆବରୁ ରହନା
ଯୋ ତୁ ସମ୍‌ଝେ ତୋ ଆଜାଦ ହୈ ପୋଶିଦା ମୋହବତ୍ ମେଁ
ଗୁଲାମି ହୈ ଅସିରେ- ଇମତଆଜେ-ମା ଓ ତୁ ରହନା
ୟେ ଇସ୍‌ତଗ୍‌ନା ହୈ ପାନି ମେଁ ନଗୁଁ ରଖ୍‌ତା ହୈ ସାଗର୍ କୋ
ତୁଝେ ଭି ଚାହିଏ ମିସ୍‌ଲେ ହୁବାବେ ଆବ୍‌ଜୁ ରହନା
ନ ରହ ଅପନୋ ସେ ବେ ପରଓ୍ୱା ଇସି ମେ ଖୈର ହୈ ତେରି
ଅଗର୍ ମନ୍‌ଜୁର୍ ହୈ ଦୁନିଆ ମେଁ ଓ ବେଗାନାଖୁ ରହନା
ଶଗବେ ରୁହ ପରଓ୍ୱର୍ ହୈ ମୁହବତ୍ ନୋଏ ଇନ୍‌ସାଁ କି
ଶିଖାୟା ଇସ୍‌ନେ ମୁଝ୍‌କୋ ମସ୍ତ୍ ବେଜାମୋ ସବୁ ରହନା
ମୁହବ୍‌ବତ୍ ହି ସେ ପାଇ ହୈ ଶଫା ବମାର୍ କୌମୋ ନେ
କିୟା ହୈ ଅପ୍‌ନେ ବଖ୍‌ତେ ଖୁଫ୍‌ତା କୋ ବେଦାର୍ କୌମୋ ନେ

(ହୃଦୟିଣି କନ୍ଦରରୁ ଆଶା ନଷ୍ଟ-ଦୁଃଖ ଦୁର୍ଦ୍ଦଶାକୁ ସବୁ ସାଗରେ ଠେଲିବ ଅଉଷଧି କିବା ଲୋଡ଼ା କ୍ଷତ ପାଇଁ, ମନ ଚକଚକ-କ୍ଷତ, ଅପେ ଶୁଖିଯିବ ।

ନିଜକୁ ଭୁଲିଲେ ଆଉ ଅନ୍ୟଙ୍କୁ ଭୁଲିଲେ ମିଳା ସରଗ ପ୍ରାପତ
ଫୁଲ-ରଙ୍ଗ ଗନ୍ଧ ନୁହେଁ, ଫୁଲ ହିଁ ସୁରଭି-ବିଚାର ନିପୃତ ।
ଆଖିକୋଣେ ଜକଜକ ଲୁହ—ସେଥିରେ କି ଦେଶ ଆଗେଇବ
ଅନ୍ତର ଝରଣା ଯେବେ ଝରିବ ଭାଷାରେ-ସବୁକ୍ଲେଷ ଆପେ ଦୂରେଇବ ।
ଆତ୍ମନିଷ୍ଠା ବ୍ୟତିରେକେ କି ଜଗତରେ ବଞ୍ଚିବାରେ କହ
ଏତେ ବଡ଼ ବଗିଚାରେ ଭୃଙ୍ଗାଟାରେ ବଞ୍ଚି ରହି, କି ସୌରଭ ମୋହ ?
ପ୍ରେମ ହିଁ ତ ସ୍ୱାଧୀନତା, ପ୍ରେମ-ଅଟେ ଚିର ପରବଶତା
ମଣିଷ ନୁହଇ ଦାସ-ହୃଦୟେ ବିଭେଦ ଅଛି-ତାହା ହିଁ ଶତ୍ରୁତା ।
ଦେଶ ପାଇଁ ନିଃସ୍ୱ ଭାବନା-ଭାସମାନ ପିଆଲାର ବେପରୁଆ ଗନ୍ଧ
ନିଜକୁ ହଜାଇ ଦେ,ରେ-ହଜି ଯାଆ ସୁଅଧାରେ, ଫୋଟକା ଯେମିତି
ଜାତିପ୍ରୀତି ବିନା କେହିକେବେ ନେଇଛି କି ଶାନ୍ତିରେ ନିଶ୍ୱାସ
ସଂସାର ନିୟମ ସେହି, ପ୍ରୀତି ଫଲ୍‌ଗୁ ଏକଇ ଆଶ୍ୱାସ ।
ମଣିଷକୁ ଭଲପାଇ, ମଣିଷରେ ଯେ ସୁଖ ମିଳଇ
ସୁଖର ଆସର ତହିଁ ଜୀବନରେ, ଧରାର ସରଗ ଆଡ଼େ ବାରେ ଆଖି ଫେଇ ।

ତାଙ୍କ ମତରେ ଆମ ସଂହତିର ଆବେଗ ହିଁ ବିଶ୍ୱ-ସଂହତିର ମୂଳଦୁଆ । ଏହି ପ୍ରେମକୁ ସେ ବିଶ୍ୱପ୍ରେମର ଆଖ୍ୟା ଦେଇଛନ୍ତି । ଶ୍ରେଣୀ ସଂଘର୍ଷ ହିଁ ଜାତିର ଧ୍ୱଂସର କାରଣ ହୋଇଥାଏ । ସେ ଅତି ବ୍ୟଥିତ ସ୍ୱରରେ କହନ୍ତି ଯେ, ଆମ ଦେଶବାସୀ ଆମର ମାତୃଭୂମିର ଉନ୍ନତି କଥା ଆଦୌ ଚିନ୍ତା କରୁ ନାହାନ୍ତି ।

ବସ୍ତୀବାଲେ ମୁହବ୍‌ବତ୍ ଦଶ୍‌ତେ ଗୁର୍‌ବତ୍ ଭି ଓ୍ୱତନ୍ ଭି ହୈ
ଏ ଓ୍ୱିରାନା କଫସ୍ ଭି ଆଶିୟାନା ଭି, ଚମନ୍ ଭି ହୈ
ମୋହବ୍‌ବତ୍ ହି ଓ ମନ୍‌ଜିଲ୍ ହୈ କେ ମନ୍‌ଜିଲ୍ ଭି ହୈ ସେହେରା ଭି
ଜରସ୍ ଭି କାରଓ୍ୱାଁ ଭି ରାହାବର୍ ଭି ରାହାଜନ୍ ଭି ହୈ
ମରଜ୍ କହେତେ ହୈଁ ସବ୍ ଇସ୍‌କୋ ଏହୈ ଲେକିନ୍ ମରଜ୍ ଐସା
ଛୁପା ଜିସ୍‌ମେ ଇଲାଜେ ଗର୍‌ଦିଶେ ଚର୍‌ଖେ, କୋହନ୍ ଭି ହୈ
ଜଲାନା ଦିଲ୍‌କା ହୈ ଗୋୟା ସରାପା ନୁର୍ ହୋ ଯା ନା
ଏ ପରଓ୍ୱାନା ଯୋ ସୋଜାଁ ହୋ ତୋ ଶମ୍‌ମେ ଅଂଜୁମନ୍ ଭି ହୈ

ଓ୍ୱହ ଏକ୍ ହୁସ୍ନ୍ ହୈ ଲେକନ୍ ନଜର୍ ଆତା ହୈ ହର୍ ଶୈ ମେଁ
ଏ ଶିରିଁ ଭି ହୈ ଗୋୟା ବେ ସବୁଁ ଭି କୋହକନ୍ ଭି ହୈ
ଉଜାଡ଼ା ହୈ ତମିଜେ ମିଲ୍ଲତୋ ଆଇନେ କୌମୋଁ କୋ
ମେରେ ଅହଲେ ଓ୍ୱତନ୍ କେ ଦିଲ୍ ମେଁ କୁଛ୍ ଫିକ୍ରେ ଓ୍ୱତନ୍ ଭି ହୈ
ସୋକୁତ୍ ଆମେଜ୍ ତୁଲେ ଦାସ୍ତାନେ ଦର୍ଦ ହୈ ଓ୍ୱରନା
ଜବାଁ ଭି ହୈ ହମାରେ ମୁହଁ ମେଁ ଔର ତାବେ ସୋଖନ୍ ଭି ହୈ

(ଦେଶୁ ଦେଶାନ୍ତର ଯାଏ ପ୍ରେମ ଅଟେ ସର୍ବ ବ୍ୟାପି ସର୍ବ କାଳଜୟୀ
ରକ୍ତ, ମାଂସ, ହାଡ଼ କବା-ମାଡ଼ ଆଉ ବଗିଚ୍ଛରେ ପ୍ରେମ ହିଁତ ଏକଇ ବିଜୟୀ
ପ୍ରେମ ହିଁ ତ ଏକମାତ୍ର ଲକ୍ଷ୍ୟ-ଗତିପଥ ପ୍ରେମ ଏକା ସାହା
ନଦୀର ମରୁବାଲିରେ ନଗଡ଼ ଗତିରେ-ପ୍ରେମ ହିଁ ତ ଏକମାତ୍ର ବାହା
ପ୍ରେମ ରୋଗ ଦୂର କରେ, ପ୍ରେମ ବ୍ୟାଧି ସହଜେ ଛୁଟେନା
ପ୍ରେମେ ହିଁ ତ ସବୁ କ୍ଲେଶ ହଟେ-ପ୍ରେମ ବିନା ସଂସାର ବନ୍ଧନ ।
ନିଜେ ଜଳି ଅପରେ ଜାଳିବ-ଏହାହିଁ ତ ପ୍ରେମର ସ୍ୱରୂପ
* ପତଙ୍ଗଟା ଆପେ ଜଳିମରେ-ତୀବ୍ର ବେଗେ ଜଳଇ ପ୍ରଦୀପ ।
** ପ୍ରେମ ହିଁ ତ ଶିରୀଁ ଓ ଫରହାଦ-ପ୍ରେମ ପୁଣି ମିଳନର ଖେଦ
ସବୁ ଧର୍ମ, ବର୍ଣ୍ଣ ଏକ-ତଥାପି ତ ପ୍ରେମ ପାଇଁ ସବୁଠି ବିବାଦ
ମୁଁ ଖାଲି କହୁଛି ଯେଣୁ, ଅଛୁ ଦ୍ବନ୍ଦ ଆଉ ଦୁଇ ଓଠ
ମୋ ଦେଶର କୋଟି କୋଟି ଭାଇ, ଜାଗି ଉଠ ନକର ହେ ମଠ ।)

---

* ଦୀପ ପାଇଁ ପତଙ୍ଗର ପ୍ରେମ, ଉର୍ଦ୍ଦୁ ଓ ପାର୍ଶି କବିତାରେ ସର୍ବଜନ ବିଦିତ ଶେଲିଙ୍କ ମତରେ ତାରକା ପାଇଁ ପତଙ୍ଗର ପ୍ରେମ- "The love of the moth for the Star".

** କମ୍ବଦନ୍ତୀ ଅନୁଯାୟୀ ଜଣେ ସାଧାରଣ ଯୁବକ ଫର୍ହାଦ୍ ରାଜକୁମାରୀ ଶିରୀଁଙ୍କୁ ପ୍ରେମ କରୁଥିଲେ । ତାଙ୍କୁ ପାଇବା ପାଇଁ ବେସୋତୁନ୍ ପର୍ବତ ମଧ୍ୟ ଦେଇ ଗୋଟିଏ ନାଳ ଖୋଳିବା ପାଇଁ ତାଙ୍କୁ ଆଦେଶ ଦିଆଯାଇ ଥିଲା, କିନ୍ତୁ ସେହି ସମୟରେ ଶିରୀଁ ପର୍ଓ୍ୱେଜ୍ ନାମକ ରାଜପୁତ୍ରଙ୍କୁ ବିବାହ କରିଥିଲେ ।

ନିଜର କବିତା "ଖୁଦ୍‌ଛାଗାନେ ଖାକ୍ ସେ ଇସ୍‌ତଫ୍‌ସାର୍" (ସ୍ୱର୍ଗ-ବାସୀଙ୍କୁ ପ୍ରଶ୍ନ)ରେ ସେ ଏକଥା ଜାଣିବା ପାଇଁ ବ୍ୟଗ୍ର ହୋଇ ପଚାରୁଛନ୍ତି ଯେ, ପୃଥିବୀରେ ଯେପରି ଭାରତୀୟମାନେ ନିଜର ମୂଲ୍ୟବୋଧ ଓ ଆତ୍ମ ମର୍ଯ୍ୟାଦାପ୍ରତି ବିମୁଖ ଥିଲେ ସ୍ୱର୍ଗରେ କଣ କେହି ଜଣେ ସେପରି ଅଛନ୍ତି ? ସେଠାରେ କଣ ସେମାନେ ସାମ୍ପ୍ରଦାୟିକ ବିଭେଦର ଶିକାର ହୋଇଛନ୍ତି ?

ଓ୍ୱୁଁ ଭି ଇନ୍‌ସାନ୍ ଅପ୍‌ନି ଅସ୍‌ଲିୟତ୍ ସେ ବେଗାନା ହୈ କ୍ୟା
ଇମ୍‌ତିଆଜେ ମିଲ୍ଲତୋ ଅଇଁ କା ଦିଓ୍ୱାନା ହୈ କ୍ୟା

(ସେଠି କଣ ନିଜ ସତ୍ତା ଭୁଲି ପରସ୍ପରେ ଶତ୍ରୁତା ଆଚରି
"ସମ୍ପ୍ରଦାୟ" କେନ୍ଦ୍ରିକ ବିଭେଦରେ ଶୋଇଛନ୍ତି ମରି ?)

## ଜାତି-ସ୍ୱାତନ୍ତ୍ର୍ୟ ପ୍ରତି ଇକ୍‌ବାଲ୍‌ଙ୍କ ବିରକ୍ତି

କବି ଜୀବନର ଦ୍ୱିତୀୟାର୍ଦ୍ଧ ତଥା ୧୯୦୫ରୁ ୧୯୦୮ ମଧ୍ୟରେ ତାଙ୍କର ଇଉରୋପ ରହଣି କାଳରେ ସେଠାକାର ପରିସ୍ଥିତି ଲକ୍ଷ୍ୟ କରି ଜାତି-ସ୍ୱାତନ୍ତ୍ର୍ୟ ବିଷୟରେ ତାଙ୍କ ଦୃଷ୍ଟିକୋଣର ଏକ ବିରାଟ ପରିବର୍ତ୍ତନ ହେଲା । ଆଶ୍ଚର୍ଯ୍ୟ ହୋଇ ସେ ଲକ୍ଷ୍ୟ କଲେ ଯେ, ଇଉରୋପରେ ଜାତୀୟତା, ଯୁଦ୍ଧଖୋର ଓ ଆକ୍ରମଣଶୀଳ ରୂପ ଧାରଣ କରିବାରୁ ସେଠାରେ ସ୍ୱାଧୀନ, ଶକ୍ତିଶାଳୀ ରାଷ୍ଟ୍ର-ସମୂହ ସୃଷ୍ଟି ହେଲା । ବିଶେଷ କରି କ୍ଷମତା ପାଇଁ ବୃହତ୍ତର ଉପନିବେଶ ଗୁଡ଼ିକୁ ଅଧୀନସ୍ଥ କରିବା ପାଇଁ ଏହି ଜାତି ଗୁଡ଼ିକ ମଧ୍ୟରେ ତୀବ୍ର ପ୍ରତିଦ୍ୱନ୍ଦ୍ୱିତା ଆରମ୍ଭ ହୋଇଗଲା । କ୍ଷୁଦ୍ର ଜାତି ଗୁଡ଼ିକୁ ଜବ୍ଦ କରି ନିଜର ଅଧୀନସ୍ଥ କରିବାର ପ୍ରବଳ ଆକାଂକ୍ଷା ମଧ୍ୟ ତାଙ୍କ ମନରେ ଜାଗ୍ରତ ହେଲା । ଇକ୍‌ବାଲ୍ ଇଉରୋପର ଏହି ଐତିହାସିକ ଅଗ୍ରଗତିର ଏକ ଯଥାର୍ଥ ଓ ସୁନ୍ଦର ବିଶ୍ଳେଷଣ କଲେ । ସେ ଯୁକ୍ତି ଦର୍ଶାଇଲେ ଯେ, ମାର୍ଟିନ୍ ଲୁଥରଙ୍କର ଉତ୍ଥାନ ଫଳରେ ଖ୍ରୀଷ୍ଟଧର୍ମ ଇଉରୋପରେ ଏକଚାଟିକରଣ ଶକ୍ତି ହରାଇଲେ, ଯାହା ଫଳରେ ସ୍ୱାଧୀନ ଓ ଶକ୍ତିଶାଳୀ ରାଷ୍ଟ୍ର ଆଞ୍ଚଳିକ ଆକାଂକ୍ଷା ନେଇ ମୁଣ୍ଡ ଟେକି ଉଠିଲେ । ସେ ମତ ଦେଲେ ଯେ, ଜାତୀୟତାର ସଙ୍କୀର୍ଣ୍ଣ ଦୃଷ୍ଟିକୋଣ ବିଭିନ୍ନ ଦେଶ ମଧ୍ୟରେ ବିବାଦର ମୁଖ୍ୟ କାରଣ ଏବଂ ଭବିଷ୍ୟତ ପାଇଁ ମଧ୍ୟ ଏହା ଏକ ଶୁଭସଂକେତ ନୁହେଁ ।

ତାଙ୍କ ମତରେ ଇଉରୋପୀୟ ସଭ୍ୟତା ଧ୍ୱଂସର ଦ୍ୱାର ଦେଶରେ ଦଣ୍ଡାୟମାନ । ପ୍ରସାରଣଶୀଳ ସାମ୍ରାଜ୍ୟ ଓ ଔପନିବେଶବାଦ ଯୋଗୁ ଧ୍ୱଂସ ଅବଶ୍ୟମ୍ଭାବୀ । ଇଂରାଜୀରେ ଗୋଟିଏ ପ୍ରବାଦ ଅଛି :—"Coming events cast their shadows before". (ଆସନ୍ନ ଘଟଣା ନିଜର ପୂର୍ବାଭାସ ଦେଇ-ଥାଏ ।) ତେଣୁ ସେ ନିଜର ଦୂରଦୃଷ୍ଟି ଓ ପର୍ଯ୍ୟବେକ୍ଷଣ ଶକ୍ତିଦ୍ୱାରା ଭବିଷ୍ୟତବାଣୀ ଶୁଣାଇଥିଲେ ଯେ, ଇଉରୋପ ଖୁବ୍ ଶୀଘ୍ର ଏକ ରାଜନୈତିକ ଆତ୍ମହତ୍ୟା କରିବ । ଏହି ସମ୍ପର୍କରେ ତାଙ୍କର ରଚିତ ଗୋଟିଏ କବିତାରେ ସେ କହିଛନ୍ତି :—

ତୁମ୍ହାରି ତହଜିବ୍ ଅପ୍‌ନେ ଖଞ୍ଜର୍ ସେ ଆପ୍‌ହି ଖୁଦ୍‌କୁଶି କରେଗି
ଯୋ ଶାଖେ ନାଜୁକ୍ ପେ ଆଶିୟାନା ବନେଗା ନାପାଏଦାର୍ ହୋଗା

(ନିଜ ହାତେ ଖଣ୍ଡା ନିଜ ହାତେ ବେକ, ଆପଣା ଛୁରୀ ତ ଭେଣ୍ଡି
ଘୂଣଖିଆ ଡାଳେ ବସା ବାନ୍ଧିଥିଲେ-ଅଚିରେ ପଡ଼ିବ ଛିଣ୍ଡି)

ତାଙ୍କର ଏହି ଉକ୍ତିଟି ସତ୍ୟ ବୋଲି ପ୍ରମାଣିତ ହେଲା-ଯେତେବେଳେ ସମଗ୍ର ଇଉରୋପ ମହାଦେଶ ପ୍ରଥମ ବିଶ୍ୱଯୁଦ୍ଧର ଅଗ୍ନିରେ ଜଳିବାକୁ ଲାଗିଲା । ଯାହା ଫଳରେ ସମଗ୍ର ଇଉରୋପର ଅର୍ଥନୀତି, ସଂସ୍କୃତି ଓ ରାଜନୈତିକ ବ୍ୟବସ୍ଥା ଧ୍ୱଂସ ସ୍ତୂପରେ ପରିଣତ ହେଲା ।

ପରବର୍ତ୍ତୀ କାଳରେ ପ୍ରସିଦ୍ଧ ଆଧୁନିକ ଇଂରେଜ କବି W. H. Auden ମଧ୍ୟ ଦେଖିଲେ ଯେ ଇଉରୋପର ଅବସ୍ଥା ଏହି ଶତାବ୍ଦୀର ପ୍ରାରମ୍ଭ ଅବସ୍ଥାଠାରୁ ଭିନ୍ନ ନୁହେଁ ।

In the nightmare of dark
All the dogs of Europe bark
And the living nations wait
Each sequestered in its hate.

(କଳା ମିଚ୍ ମିଚ୍ ରାତି-ରାସ୍ତା ଭରି ନିବିଡ଼ ଅନ୍ଧାର
ଏଣେ ତେଣେ ଭୁକି ବୁଲୁଛନ୍ତି-ଇଉରୋପୀ କୁକୁର

ମୁମୂର୍ଷୁ ଜାତିଟା ଖାଲି ଗୃହାଁ ରହି ଜହ୍ନା ଓଲଟାଏ
ସୁପ୍ତ ଜାତି ଘର କୋଣେ-ଏଆଡ଼େ କେ ଗୃହେଁ ?)

କହିବା ବାହୁଲ୍ୟ, ଇକ୍‌ବାଲ୍ ଭବିଷ୍ୟତ ଘଟଣାବଳୀକୁ ନଜର ଦୂର ଦୃଷ୍ଟିରେ ଅବଲୋକନ କରି ପାରୁଥିଲେ । ତାଙ୍କର ଏ ଦାବୀ ଭୁଲ୍ ନଥିଲା ଯେ :—

"ମୁଝେ ରଜେ ହୋ ଆଲମ୍ ଝଲ୍‌କା ଆଇନା ଦିଖାତା ହୈ
ଓ୍ୱହି କହତା ହୁଁ ଯୋ କୁଛ୍ ସାମ୍‌ନେ ଆଁଖୋ କେ ଆତା ହୈ

(ମନ ଆଇନାରେ ଦେଖେ, ବର୍ତ୍ତମାନ, ଭବିଷ୍ୟତ ସୃଷ୍ଟିର ରହସ୍ୟ
ଦେଖେ ଯାହା କହେ ତାହା, ନଜମ୍ବ ଚନ୍ତାରେ ମୋର ଅସୀମ ବିଶ୍ୱାସ ।)
"ହାଦ୍‌ସା ଯୋ ଅଭି ପର୍‌ଦା-ଏ ଅଫଲାକ୍ ମେଁ ହୈ
ଅକ୍‌ସ ଉସ୍‌କା ମେରେ ଆଇନାଏ ଇଦ୍‌ରାକ୍ ମେଁ ହୈ"

(ଯାହା ବା ଘଟିବ କାଲି, କପର ବା ସୂର୍ଯ୍ୟୋଦୟ ହେବ
ଜାନାଚଲେକେ ସ୍ପଷ୍ଟ ହୋଇଉଠେ-ଦର୍ପଣରେ ସ୍ୱଚ୍ଛ ପ୍ରତିବିମ୍ବ)
"ଆଲମେ ନୌ ହୈ ଅଭି ପର୍‌ଦାଏ ତକ୍‌ଦିର ମେଁ
ମେରି ନିଗାହୋ ମେଁ ହୈ ଇସ୍‌କି ସହର୍ ବେ ହେଜାବ୍"

(କଳପନା ନୂତନ ପୃଥିବୀ-ଭାଗ୍ୟର ପରଦା ପଛେ ରହିଛି ଅଟକି
ସେ ପବିତ୍ର ସକାଳର ସମୂହ କାକଳି-ମୋ ଆଖିରେ ରହିଅଛି ଲଖି ।)

## ଇସ୍‌ଲାମିକ୍ ଭ୍ରାତୃତ୍ୱବୋଧ

ଏହି ଘଟଣାଗୁଡ଼ିକ ଇକ୍‌ବାଲ୍‌ଙ୍କୁ ତାଙ୍କର ଜାଗ୍ରତ ଦୃଷ୍ଟିକୋଣରୁ ସମ୍ପୂର୍ଣ୍ଣ ରୂପେ ସମ୍ମୁଖ କରାଇ ଦେଲା ଏବଂ ସେ ଉଚ୍ଚତର ଓ ମହତ୍ତ୍ୱମାନ ଉପରେ ପର୍ଯ୍ୟବେଶିତ ଆତ୍ମଜାଗ୍ରତ ଅନ୍ୱେଷଣ କରିବାକୁ ଲାଗିଲେ । ସେ ଭାବିଲେ ଯେ, ଏହି ନୂତନ ସାମାଜିକ ବ୍ୟବସ୍ଥା ପାଇଁ ଇସ୍‌ଲାମ୍‌ରେ ଯୋଜନା ରହିଛି କିନ୍ତୁ ବର୍ତ୍ତମାନର ଘଟଣାବଳୀ ପ୍ରମାଣ କରେ ଯେ, ତାଙ୍କର ଏହି ଧାରଣା ଠିକ

ଭ୍ରମାତ୍ମକ ଥିଲା । ଆଜ ଯଦି ଇକ୍‌ବାଲ୍ ଜୀବିତ ଥା'ନ୍ତେ । ତା'ହେଲେ ବର୍ତ୍ତମାନ ଲଗିଥିବା ଇରାକ୍-ଇରାନ୍ ଯୁଦ୍ଧକୁ ଦେଖି ଇସ୍‌ଲାମ୍ ସାହାଯ୍ୟରେ ସମଗ୍ର ମାନବ ସମାଜକୁ ଏକସ କରିବାର ତାଙ୍କର ସ୍ୱପ୍ନ ଧୂଳିସାତ୍ ହୋଇଥାନ୍ତା । ସେ ବର୍ତ୍ତମାନ ଚିନ୍ତାକଲେ ଯେ ସ୍ୱଦେଶାନୁରାଗକୁ ବୃହତ୍ତର ଲକ୍ଷ୍ୟ ପାଇଁ ବିନିଯୋଗ ନକଲେ, ତାହା ଦୁର୍ବଳତର ଜାତିକୁ ଶୋଷଣ କରିବାର ଅସ୍ତ୍ର ହୋଇଯାଏ । ବୋଧହୁଏ ଏଇଥି ପାଇଁ Dr. Johnson କହିଥିଲେ "Patriotism is the last refuge of a scoundrel" (ଦେଶାତ୍ମବୋଧ ହେଉଛି ଗୋଟିଏ ଦୁର୍ବୃତ୍ତର ଶେଷ ପନ୍ଥା ।)

ଦେଶପ୍ରେମ ସମ୍ବନ୍ଧିତ ଇକ୍‌ବାଲ୍ ବର୍ତ୍ତମାନ ତାଙ୍କର ଉତ୍ତରାଧିକାର ସୂତ୍ରେ ପ୍ରାପ୍ତ ଧର୍ମ ପ୍ରତି ଆବେଗଭରା ଆସକ୍ତି ପ୍ରକାଶ କରିବାକୁ ଲାଗିଲେ । ଇସ୍‌ଲାମ୍ ପ୍ରତି ତାଙ୍କର ଭକ୍ତି, ଜୀବନ ପ୍ରତି ଇସ୍‌ଲାମିକ୍ ଦୃଷ୍ଟିକୋଣ ପାଇଁ ତାଙ୍କର ପ୍ରଗାଢ଼ ବିଶ୍ୱାସ ଏବଂ ଇସ୍‌ଲାମିକ୍ ମୂଲ୍ୟବୋଧ ପ୍ରତି ତାଙ୍କର ସମ୍ପୂର୍ଣ୍ଣ ଅନୁରକ୍ତି ଯୋଗୁ ସେ ନିଜର ମାତୃଭୂମି ବ୍ୟତୀତ ଇସ୍‌ଲାମିକ୍ ଇତିହାସ ସମ୍ବନ୍ଧିତ ବିଜଡ଼ିତ ପବିତ୍ର ସ୍ଥାନଗୁଡ଼ିକୁ ମଧ୍ୟ ଭଲ ପାଇବାକୁ ଲାଗିଲେ । ଜାତୀୟତାର ଏହି ଦୃଷ୍ଟିଭଙ୍ଗୀକୁ ଆମେ ଇସ୍‌ଲାମିକ୍ ଭ୍ରାତୃଭାବ ରୂପେ ନାମିତ କରିପାରୁ । * ଏହି ନୂତନ ଦୃଷ୍ଟିଭଙ୍ଗୀ ତାଙ୍କୁ "ମିଲ୍ଲିତରାନା" ଲେଖିବା ପାଇଁ ପ୍ରେରଣା ଦେଇଥିଲା ।

ଚୀନ୍ ଓ ଆରବ୍ ହମାରା ହିନ୍ଦୁସ୍ତାଁ ହମାରା
ମୁସ୍‌ଲିମ୍ ହେଁ ହମ୍ ୱତନ୍ ହୈ ସାରା ଜହାଁ ହମାରା
ବାଜୁ ତେରା ତୌହିଦ୍ କ କୁଓ୍ୱତ୍ ସେ କର୍ଓ୍ୱି ହୈ
ଇସ୍‌ଲାମ୍ ତେରା ଦେଶ୍ ହୈ ତୁ ମୁସ୍ତଫଓ୍ୱି ହୈ
ତିରା ନକର୍‌ସକା ମୁଝେ ଜଲ୍‌ଓ୍ୱାଏ ଦାନିସେ ଫିରଙ୍ଗ୍
ସୁର୍‌ମା ହୈ ମେରୀ ଆଁଖ୍‌କା ଖାକେ ମଦିନା ଓ ନଜଫ୍
ଆଃ ଯୂସରିବ୍ ଦେଶ୍ ହୈ ମୁସ୍‌ଲିମ୍ କା ତୁ ମଓ୍ୱା ହୈ ତୁ
ନୁକ୍ତାଏ ଯାଜବ୍, ତାଅସୁର୍ କ ସୋଆଁ କା ହୈ ତୁ ।

---

* ଇକ୍‌ବାଲ୍ କା ତସ୍‌ଓ୍ୱରେ ଓ୍ୱତନିୟତ୍-ଡଃ ମଜିଦ୍ ତେଡାରି-"ଜବାନ୍ ଓ ଅଦବ୍" ଜାନୁୟାରି-ମାର୍ଚ୍ଚ ୧୯୮୮ ପୃ-୯୭ ।

(ଚୀନ୍ ଆମର, ଆରବ ଆମର, ଭାରତ ଆମର-ସବୁହିଁ ଏକଇ ଜାତି
ଆମେରେ ହିନ୍ଦୁ, ମୁସଲମାନ୍ ଆମେ-ସବୁ ଦେହେ ଏକା ତାତି
ଏକଲ ବ୍ରହ୍ମ- ବିଶ୍ୱାସ୍ନ ନାସ୍ତି ଧର୍ମବଳେ ତୁହି ଅଶ୍ୱ
ତୁ ହଜରତ୍ ମହମ୍ମଦ୍ ପତ୍ନୀ, ଇସ୍ଲାମ୍ ତୋର ଦେଶ
ପାଶ୍ଚାତ୍ୟ ଶିକ୍ଷାର ବିଜୁଳି ଚମକେ-ହୋଇଯାଇ ନାହିଁ ଅନ୍ଧ
ନଜଫର ଆଉ ମଦିନାର ଧୂଳି-ଭାଙ୍ଗିଛି ସକଳ ବନ୍ଧ
ଓ ୟୁଶ୍ରବ୍ ! ତୁମେ ହିଁ ତ ଅଛ ମୁସଲମାନର ଦେଶ
ଆଶ୍ରୟ ପାଇଁ ତୁମ ଆକର୍ଷଣ-ଅଗ୍ନିଶିଖାର ଶୋଷ ।)

ଉପରୋକ୍ତ ପଂକ୍ତି ଯୋଗୁ କେତେକ ସମାଲୋଚକ କହନ୍ତି ଯେ, ଇସଲାମ୍ ହିଁ ଇକ୍‌ବାଲ୍‌ଙ୍କ କବିତାର କେନ୍ଦ୍ରବିନ୍ଦୁ ଥିଲା ଏବଂ ତାଙ୍କର ଦେଶାତ୍ମ-ବୋଧ ଅପେକ୍ଷା ଇସଲାମିକ୍ ଅନୁରକ୍ତି ବେଶୀ ପରିମାଣରେ ଅନୁଭୂତ ହେଉଥିଲା । କିନ୍ତୁ ଯେପରି ପୂର୍ବେ ବର୍ଣ୍ଣନା କରାଯାଇଛି, ଇକ୍‌ବାଲ୍ ଯୁଦ୍ଧଖୋର ଓ ଆକ୍ରମଣ-ଶୀଳ ମନୋବୃତ୍ତିକୁ ସମାଲୋଚନା କରୁଥିଲେ, ଯାହା ଧ୍ୱଂସର କାରଣ ହୋଇଥାଏ । ତାଙ୍କର ସମାଲୋଚକମାନେ କେଜାଣି କାହିଁକି ଏ ମୁଖ୍ୟ କଥାଟିକୁ ଭୁଲି ଯାଉଛନ୍ତି ଯେ,—ଇସଲାମ୍ ପ୍ରତି ପ୍ରଗାଢ଼ ଆସକ୍ତି ଓ ବିଶ୍ୱାସ ସତ୍ତ୍ୱେ ଇକ୍‌ବାଲ୍ କେବେହେଲେ ସ୍ୱଦେଶାନୁରାଗରୁ ବିମୁଖ ହୋଇନାହାନ୍ତି । ନିମ୍ନୋକ୍ତ ପଂକ୍ତି ଏହି ଯୁକ୍ତିର ଉପଯୁକ୍ତ ପ୍ରମାଣ ପ୍ରତିପାଦିତ କରେ :—

ହୈ ଅଗର୍ କୌମିୟତେ ଇସଲାମ୍ ପାବନ୍ଦେ ମୁକାମ୍
ହିନ୍ଦ୍ ହି ବୁନୟାଦ୍ ହୈ ଇସକି ନ ଫାରସ୍ ନ ଶାମ୍

(ଇସ୍ଲାମିକ୍ ଜାତୀୟତା ଯେବେ ରୁଦ୍ଧ କକ୍ଷ କୌଣସି ଦେଶରେ
ତେବେ ହିଁ ତ ନୁହେଁ ସେ ଭାରତ, ଅବା ଇରାନ୍ କି ସିରିୟା-ଦେଶ ପ୍ରାଣତାରେ ।)

ଏହି ପରିପ୍ରେକ୍ଷୀରେ ଅଲ୍ଲାମା ଇକ୍‌ବାଲ୍ ଓ ମୌଲାନା ହୋସେନ୍ ଅହେମଦ୍ ମଦନିଙ୍କ ମଧ୍ୟରେ ସ୍ୱଦେଶ ପ୍ରେମ ଓ ଜାତୀୟତାକୁ ଭିତ୍ତିକରି ଯେଉଁ ବାଦାନୁବାଦ ଉପୁଜିଥିଲା, ସେ କଥା ପ୍ରକାଶ କରି ଦେବା ମଧ୍ୟ ବିଶେଷ ଜରୁରୀ ମନେହୁଏ, ୧୯୩୮ ଜାନୁୟାରୀ ପ୍ରାରମ୍ଭରେ ଦିଲ୍ଲୀର ସଦର ବଜାରର ଏକ

ବକ୍ତୃତାରେ ମୌଲନା କହିଥିଲେ – "ବର୍ତ୍ତମାନ ଯୁଗରେ ଜାତି ଦେଶ ଭିତ୍ତିରେ ଗଠିତ ହୁଏ—ବଂଶ ବା ଧର୍ମ ଭିତ୍ତିରେ ନୁହେଁ ।"

ମୌଲନାଙ୍କ ଉକ୍ତ ଭାଷଣକୁ ଖବର କାଗଜରେ ପଢ଼ି ଇକ୍‌ବାଲ୍ ନିମ୍ନଲିଖିତ ପଦ୍ୟ ଲେଖିଥିଲେ :—

ଅଜମ୍ ହନୁଜ୍ ନ ଦାନଦ୍ ରମୁଜେ ଦିଁ ଓ୍ୱରନା
ଜ ଦେଓବନ୍ଦ୍ ହୋସେନ୍ ଅହେମଦ୍ ଇଁ ଚେ ବୁଲ୍ ଅଜବସ୍ତ ।

× × × ×

ଆରବ ବାହାରେ କୋଧହୁଏ ଇସଲାମ୍‌ର ଅର୍ଥ କେହି ଜାଣନ୍ତି ନାହିଁ । ନ ହେଲେ ଦେଓବନ୍ଦ ଭଳି ଧର୍ମପୀଠରୁ ହୁସେନ୍ ଅହମଦ୍ ଭଳି ମୁଲ୍ଲା ଜନ୍ମି ନ ଥାନ୍ତେ ।

ସରୁଦ୍ ଛର୍ ସରେ ମେମ୍ବର କେ ମିଲ୍ଲତ୍ ଅଜ୍ ଓ୍ୱତନ୍ ଅସ୍ତ
ଚେ ବେଖବର୍ ଜ ମୁକାମେ ମୁହାମ୍ମଦେ ଅରବସ୍ତ

ମସଜିଦରେ ତୁମେ କହୁଛ ଯେ ମାତୃଭୂମିକୁ ନେଇ ଧର୍ମ । ତୁମେ ଆରବୀୟ ମହମ୍ମଦଙ୍କ ମର୍ଯ୍ୟାଦା ଜାଣୁ ନାହିଁ ।

ବମୁସ୍ତଫା ବରସାଁ ଖେମଶ କେ ଦିଁ ହମା ଉସ୍ତ
ଅଗର୍ ବ ଉ ନ ରସିଦି ତମାମ୍ ବୁଲ ହ ବସ୍ତ

( ଏକା ମହମ୍ମଦ ଧର୍ମର ଉତ୍ସ, ଅନୁସର ଗୁଲ ପଥ
ତାଙ୍କ ବିନା ସବୁ ଅସାର ସଂସାରେ ସେହି ଗତି, ମୁକ୍ତି, ସତ୍ୟ )

ଏହି ପଂକ୍ତିଗୁଡ଼ିକ ସମ୍ବାଦପତ୍ରରେ ପ୍ରକାଶିତ ହେବା ଫଳରେ ଧର୍ମ ଜଗତରେ ଏକ ଆଲୋଡ଼ନ ସୃଷ୍ଟି ହେଲା । ପାମ୍ପଲେଟ୍ ଲେଖା ହେଲା, ପ୍ରବନ୍ଧ ଲେଖା ହେଲା ଏବଂ ସେ ସମ୍ପର୍କରେ କ୍ରମାଗତ ବିବାଦମାନ ଲେଖା

ପ୍ରକାଶିତ ହେବାକୁ ଲାଗିଲା । ମୌଲାନା ମଦନି ଏବଂ ଇକ୍‌ବାଲ୍‌ଙ୍କର ଜଣେ ପ୍ରଶଂସକ ମୌଲାନା ତାଲୁତ୍ ଉଭୟଙ୍କ ମଧ୍ୟରେ ଥିବା ଭୁଲ ବୁଝାମଣା ଦୂର କରିବା ପାଇଁ ଅକ୍ଳାନ୍ତ ଚେଷ୍ଟା କଲେ ; ଯଦିଓ ଇକ୍‌ବାଲ୍ ସର୍ବଦା ନିଜ ମତରେ ଅଟଳ ରହିଥିଲେ ଯାହା ତାଙ୍କ ନିମ୍ନୋକ୍ତ ପଦ୍ୟାଂଶରୁ ସ୍ପଷ୍ଟ ହୁଏ—

" ମେରି ଯୁବାନେ କଲମ୍ ସେ କିସି କା ଦିଲ୍ ନ ଦୁଖେ "
( ମୋର କଲମ ଗାର କାହାର ହୃଦୟେ ଆଘାତ କେବେ ନ ହାଣୁ )

କିନ୍ତୁ ଏହି ପଦ୍ୟାଂଶଟିରେ ଲୁକ୍କାୟିତ ଗଭୀର ବିଦ୍ରୂପ ଓ ଭାଷାର ଅସାଧାରଣ କଟୁତା ଓ ଶ୍ଳେଷତା ଇକ୍‌ବାଲ୍‌ଙ୍କର ଅନୁରୂପ ନୁହେଁ । ବୋଧହୁଏ ଏହା ହିଁ ତାଙ୍କର କାହାରି ବିରୁଦ୍ଧରେ ଏକମାତ୍ର ବ୍ୟକ୍ତିଗତ ବିଦ୍ରୂପ । ଇକ୍‌ବାଲ୍‌ଙ୍କ ଆପତ୍ତି ଥିଲା ଯେ, ମୌଲାନା ମଦନିଙ୍କ ପରି ବଶିଷ୍ଟ ଧାର୍ମିକ ପଣ୍ଡିତ ଓ ଜନପ୍ରିୟ ନେତା—ଭୌଗୋଳିକ ଜାତୀୟତାକୁ ସମର୍ଥନ କରିଥିଲେ, ଯାହାର ମୂଳଦୁଆ ହେଉଛି ପାଶ୍ଚାତ୍ୟ ପ୍ରସୂତ ବସ୍ତୁବାଦ । ଯାହାହେଉ, ତାଲୁତ୍ ସାହେବଙ୍କ ଆନ୍ତରିକ ପ୍ରଚେଷ୍ଟାର ଫଳସ୍ୱରୂପ ଶେଷରେ ମୌଲାନା ମଦନିସାହେବ ସ୍ପଷ୍ଟୀକରଣ ଦେଲେ ଯେ, ତାଙ୍କର ବକ୍ତବ୍ୟ ମୁସଲମାନମାନଙ୍କ ପାଇଁ ଉପଦେଶ ନ ଥିଲା, ବରଂ ସେ ଏଥିରେ କେବଳ ଗୋଟିଏ ଘଟଣାର ତଥ୍ୟ ହିଁ ପ୍ରଦାନ କରିଥିଲେ । ସେ ନିମ୍ନୋକ୍ତମତେ ସ୍ପଷ୍ଟୀକରଣ ଦେଲେ—"ସମ୍ପ୍ରତି କାଳରେ ଜାତି, ଦେଶ ଭିତ୍ତିରେ ଗଠିତ ହୁଏ । ଏହା ଆଧୁନିକ ଚିନ୍ତାଧାରା । ଏ କଥା କୁହାଯାଇ ନାହିଁ ଯେ, ମୁସଲମାନ୍‌ମାନେ ଏହି ମତ ଅନୁସରଣ କରିବା ଉଚିତ । ଏହା କେବଳ ଏକ ଘଟଣାର ବିବୃତ୍ତି ମାତ୍ର । ଉପଦେଶ ନୁହେଁ ।" *

ତେଣୁ ୨୮ ମାର୍ଚ୍ଚ ୧୯୩୮ ରେ ଲାହୋରରୁ ପ୍ରକାଶିତ ଦୈନିକ ପତ୍ରିକା "ଆହେସାନ୍"ରେ ଇକ୍‌ବାଲ ଏକ ବିବୃତ୍ତିରେ ମୌଲାନାଙ୍କ ସ୍ପଷ୍ଟୀକରଣ ବିଷୟରେ ଲେଖିଲେ—ମୌଲାନା ମୁସଲମାନ୍‌ମାନଙ୍କୁ ଜାତୀୟତାର ନୂତନ

---

* ସୟଦ ନଜର ନିୟାଜି—ଇକ୍‌ବାଲ୍ କେ ହୁଜୁର୍, ପୃ. ୧୬୨

ମତବାଦ ଗ୍ରହଣ କରିବାକୁ ଉପଦେଶ ଦେବା କଥା ସଂପୂର୍ଣ୍ଣରୂପେ ମନା କରୁଛନ୍ତି । * ତେଣୁ ମୌଲନାଙ୍କର ସ୍ପଷ୍ଟୀକରଣ ପରେ ତାଙ୍କ ବିପକ୍ଷରେ ମୋର କିଛି କହିବାର ଅଧିକାର ନାହିଁ । ମୁଁ ମୌଲନାଙ୍କ ଭକ୍ତମାନଙ୍କୁ ସମ୍ମାନ କରେ... ମୁଁ ତାଙ୍କୁ ପ୍ରତ୍ୟୟ କରାଇ ଦେବା ପାଇଁ ଚାହେଁ ଯେ, ମୌଲନାଙ୍କର ଇସଲାମ୍ ଧର୍ମ ପ୍ରତି ଅନୁରକ୍ତିକୁ ସମ୍ମାନ ପ୍ରଦାନ କରିବାରେ ମୁଁ ତାଙ୍କର କୌଣସି ଭକ୍ତଙ୍କଠାରୁ ପଛରେ ପଡ଼ନାହିଁ ।

ଏହି ବିତର୍କ ଇକ୍‌ବାଲ୍ ମୃତ୍ୟୁ ଶଯ୍ୟାରେ ଥିବା ସମୟରେ ଆରମ୍ଭ ହେଲା ଓ ଏହାର ପରି ସମାପ୍ତି ତାଙ୍କ ମୃତ୍ୟୁର ୨୩ ଦିନ ପୂର୍ବରୁ ଘଟିଲା । ତେଣୁ ଏହି ପଦ୍ୟାଂଶଗୁଡ଼ିକ ତାଙ୍କର ଶେଷ କବିତା ସଙ୍କଳନ "ଅର୍‌ମୁଗାନେ ହେଜାଜ୍"ରେ ପ୍ରକାଶ ପାଇଲା । ** କେତେକ କହନ୍ତି ଯେ, ଇକ୍‌ବାଲ୍ ତାଙ୍କର ଏ ବିବାଦମାନ ପଦ୍ୟାଂଶଗୁଡ଼ିକ ପ୍ରକାଶ କରିବା ପାଇଁ ମନା କରିଥିଲେ । ବାସ୍ତବରେ ସ୍ୱଦେଶ ପ୍ରେମ ଓ ଇସ୍‌ଲାମ୍ ମଧ୍ୟରେ କୌଣସି ବିରୋଧ ନାହିଁ । ଇକ୍‌ବାଲ୍ ନିଜେ ଏହି କଥାକୁ ସ୍ପଷ୍ଟ କରି ଦେଇଅଛନ୍ତି ।

"ଯଦି ଜାତୀୟତା (ନିଜ ଦେଶର ପ୍ରେମ ଉପରେ ପ୍ରତିଷ୍ଠିତ)ର ଅର୍ଥ ନିଜ ଦେଶ ପାଇଁ ପ୍ରେମ ହୁଏ ବା ନିଜ ଦେଶ ପାଇଁ ଆତ୍ମାହୁତି ଦେବା ହୁଏ, ତେବେ ଏପରି ଜାତୀୟତା ଇସ୍‌ଲାମ୍ ବିଶ୍ୱାସର ଏକ ଅଂଶବିଶେଷ । ଜାତୀୟତା ଇସ୍‌ଲାମ୍‌ର ବିରୁଦ୍ଧାଚରଣ ସେତେବେଳେ ହିଁ କରେ, ଯେତେବେଳେ ତାହା ଏକ ରାଜନୈତିକ ରୂପ ଧାରଣ କରେ ତଥା ମାନବ ସଂହତିର ମୂଳନୀତି ଦାବି କରେ ଏବଂ ଏହା କୁହେ ଯେ, ଇସଲାମ୍ ବ୍ୟକ୍ତିଗତ ବିଶ୍ୱାସର ପୃଷ୍ଠଭୂମିରେ ସୀମିତ ହେଉ ଏବଂ ଜାତୀୟ ଜୀବନରେ ଏକ ଜୀବନ ପ୍ରଦାନକାରୀ ଶକ୍ତିରୂପେ ପରିଗଣିତ ନ ହେଉ । ***

---

* ଇକ୍‌ବାଲ୍ କା ସିୟାସୀ କାର୍‌ନାମା – ମୁହମ୍ମଦ ଅହେମ୍ମଦ ଖାନ୍, ପୃ. ୫୯୮

** ଇକ୍‌ବାଲ୍ କା ସିଆସି କାର୍‌ନାମା—ମୁହମ୍ମଦ ଅହେମ୍ମଦ ଖାଁ—ପୃ. ୫୯୮ ୬୦୨

*** ମଜାମିନେ ଇକ୍‌ବାଲ୍ — ତସଦୁକ୍ ହୁସେନ୍ ତାଜ-ଅହମ୍ମଦିଆ ପ୍ରେସ ଚୂରମିନାର, ହାଇଦ୍ରାବାଦ—ଦାକ୍ଷିଣାତ୍ୟ-ପୃ. ୧୬୨ (୧୩୬୨ ହିଜିରୀ)

# ଦେଶପ୍ରେମ (Patriotism) ଓ ଜାତୀୟତା (Nationalism) ମଧ୍ୟରେ ପ୍ରଭେଦ

ଦେଶ ପ୍ରେମ ( Patriotism ) ଓ ଜାତୀୟତା ( Nationalism ) ମଧ୍ୟରେ ଥିବା ସୂକ୍ଷ୍ମ ପ୍ରଭେଦକୁ ଦର୍ଶାଇବାକୁ ଯାଇ ଖ୍ୱାଜା ଗୋଲାମ୍ ସୈୟେଦେନ୍ କହନ୍ତି ଯେ, ଇକ୍‌ବାଲ୍ ପାଶ୍ଚାତ୍ୟ ଜଗତ ଦ୍ୱାରା ଅନୁସରିତ ସଙ୍କୀର୍ଣ୍ଣ ଜାତୀୟତାର ଘୋର ବିରୋଧୀ ଥିଲେ । ମୋ ମତରେ ଏକଥା ସ୍ପଷ୍ଟ କରିଦେବା ପାଇଁ ଖ୍ୱାଜା ଗୋଲାମ ସୈୟେଦନ୍‌ଙ୍କ ଏକ ପ୍ରବନ୍ଧ "Progressive Trends in Iqbal's thoughts"ରୁ କିଛି ଉଦ୍ଧୃତି ଦେବା ବେଶ୍ ସମୀଚୀନ ।

"ଇକ୍‌ବାଲଙ୍କ କବିତା ଓ ଦର୍ଶନ ସବୁବେଳେ ଭୌଗୋଳିକ ସୀମା ପରିଧିର ଊର୍ଦ୍ଧ୍ୱରେ । ତାଙ୍କର କବିତା ଓ ଦର୍ଶନ, ସମଗ୍ର ମାନବ ଜାତିର ଅତୀତ, ବର୍ତ୍ତମାନ, ଭବିଷ୍ୟତ ଉପରେ ନିବଦ୍ଧ । ଇକ୍‌ବାଲ୍ ନିଜର ସମଗ୍ର ଜୀବନକୁ ଏକ ବିରାଟ ସଭ୍ୟତା ଓ ଆଧ୍ୟାତ୍ମିକ ପ୍ରଚେଷ୍ଟାର ବାସ୍ତବ ରୂପ ଦେବାପାଇଁ ସମର୍ପି ଦେଲେ । ଏହି ପ୍ରଚେଷ୍ଟା ମାନବ ଇତିହାସରେ ସର୍ବଦା ପ୍ରଚଳିତ । ଏହି ପ୍ରଚେଷ୍ଟା ପଛରେ ଥିବା ବାଧାବିଘ୍ନକୁ ମାନବ କେବେ ଭ୍ରୂକ୍ଷେପ କରି ନାହିଁ । ଇକ୍‌ବାଲ ଦେଶପ୍ରେମ ଓ ଏ ଦେଶର ଅନ୍ତର୍ଜାତିକ ଚରିତ୍ରର ସମ୍ଭାବନାକୁ ଏକ ପ୍ରଶସ୍ତ ପୃଷ୍ଠଭୂମିରେ ହୃଦୟଙ୍ଗମ କରିବାର ଚେଷ୍ଟା କରିଥିଲେ । ସେ ନିଜ ଚିନ୍ତାର ଏପରି ସ୍ତରକୁ ଆସି ଯାଇଥିଲେ ଯେ, ଯେଉଁଠାରେ ଦେଶର ବାହ୍ୟ ଦୃଶ୍ୟ, ଘଟଣାବଳୀର ବିଚିତ୍ରତା ଓ ଭୌଗୋଳିକ ପାର୍ଥକ୍ୟ ଗୌଣସ୍ଥାନ ଅଧିକାର କରେ ଏବଂ ମୁଖ୍ୟଭୂମିକା ହୁଏ—ଚିରନ୍ତନ ରଙ୍ଗବିଶିଷ୍ଟ ବିଶାଳ ଚେତନା । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ, ତାଙ୍କର ଦୃଷ୍ଟିଭଙ୍ଗୀର ଉଦାରତା ସଙ୍ଗେ ସଙ୍ଗେ ତାଙ୍କର ଦେଶ-ପ୍ରେମ-ଚେତନା ସମୃଦ୍ଧ ହେବାକୁ ଲାଗିଥିଲା, ଏଥିରେ କେବେହେଲେ ଦୁର୍ବଳତା ଆସି ନ ଥିଲା ।

ଇକ୍‌ବାଲ୍ ଓ ଅନ୍ୟାନ୍ୟ ଦାର୍ଶନିକ ତଥା ଚିନ୍ତାଶୀଳ ବ୍ୟକ୍ତି ଯଥା— Bertrand Russel, H. G. Wells, G. B. Shaw ଏବଂ C. E. M. Joad ଏବଂ ସୋସାଲିଷ୍ଟ ପରି ରାଜନୈତିକ ଦଳ ମଧ୍ୟରେ ମୁଖ୍ୟ ପ୍ରଭେଦ ହେଉଛି ଯେ, ସେମାନେ ଜାତୀୟତା ଭିତ୍ତିକ ମାନବ ସମାଜର ପକ୍ଷପାତୀ ନୁହଁନ୍ତି । ସେମାନଙ୍କ ମତରେ, ଆଧୁନିକ ଯୁଗରେ ବୈଜ୍ଞାନିକ ଓ ଯାନ୍ତ୍ରିକ ଅଗ୍ରଗତି ଫଳରେ ପୃଥିବୀ ସଙ୍କୁଚିତ ହୋଇଯାଇଛି । ଜାତୀୟ ସଂକୋଚନ ଫଳରେ କାହାର ଲାଭ ହେବ ନାହିଁ । ଜାତୀୟତାକୁ ଏକ ସୀମିତ ଅର୍ଥରେ ଗ୍ରହଣ କଲେ, ଶ୍ରେଣୀ ସଂଘର୍ଷ, ବାଣିଜ୍ୟିକ ପ୍ରତିଯୋଗିତା, ଯୁଦ୍ଧ ଓ ସାମ୍ରାଜ୍ୟବାଦୀ ଶୋଷଣ ବୃଦ୍ଧି ପାଇବ ଏବଂ ଫଳ ସ୍ୱରୂପ ମଣିଷର ସୁଖ ଓ ସମୃଦ୍ଧି ବାଧାପ୍ରାପ୍ତ ହେବ । ଅପର ପକ୍ଷରେ ଇକ୍‌ବାଲଙ୍କ ଦର୍ଶନର ଭିତ୍ତି—ମାନବିକ ପ୍ରେମ, ଧର୍ମ, ଚରିତ୍ରବତ୍ତା ଓ ଆଧ୍ୟାତ୍ମିକ ମୂଲ୍ୟବୋଧ ଉପରେ ପ୍ରତିଷ୍ଠିତ । ତାଙ୍କ ମତରେ ପାରସ୍ପରିକ ଦ୍ୱନ୍ଦ୍ୱ, ବିଦ୍ୱେଷ ଓ ଘୃଣା ଉପରେ ପ୍ରତିଷ୍ଠିତ ଯେ କୌଣସି ଶକ୍ତି ମାନବିକତାର ମୌଳିକ ମୂଲ୍ୟବୋଧକୁ ଚହଲି ପାରିବ ନାହିଁ ଏବଂ ତାହା ମାନବର ଆଧ୍ୟାତ୍ମିକ ଚରିତ୍ର ଉନ୍ନତିରେ ପ୍ରାଚୀର ସଦୃଶ ଦଣ୍ଡାୟମାନ ହେବ । ଏ କଥା ଇକ୍‌ବାଲ ତାଙ୍କର ନିମ୍ନୋକ୍ତ ପଂକ୍ତିରେ ପ୍ରକାଶ କରିଛନ୍ତି :—

ହଓ୍ୱସ୍ ନେ କର୍ ଦିଆ ହୈ ଟୁକୁଡ଼େ ଟୁକୁଡ଼େ ନୌ ଏ ଇନ୍‌ସାଁ କୋ
ଉଖୁଅତ୍ କା ବୟାଁ ହୋ ଯା, ମୁହବତ୍ କି ଯୁବାଁ ହୋ ଯା
(ସ୍ୱାର୍ଥକୁ ସାରଥି କରି ଜାତୀୟ ଏକତା ହୁଏ, ଖଣ୍ଡ ବିଖଣ୍ଡିତ
ଭ୍ରାତୃତ୍ୱ ବନ୍ଧନେ ଆସ ପ୍ରେମପାଠ ଧରି -- ହୋଇଯିବା ଆମେ ଏକତ୍ରିତ ।)

ଉପରୋକ୍ତ ବକ୍ତବ୍ୟରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ, ଇକ୍‌ବାଲ୍ ପାଶ୍ଚାତ୍ୟ ଜଗତର ଉଗ୍ର ଜାତୀୟତାବାଦର ତୀବ୍ର ବିରୋଧୀ ଥିଲେ । ତାଙ୍କର କଳ୍ପନା ଓ ଚିନ୍ତାଶକ୍ତି ଅତି ସମୃଦ୍ଧ ଥିଲା । ସେ ବିଭିନ୍ନ ଅଞ୍ଚଳରେ ଥିବା ବିଭିନ୍ନ ଜାତି ଓ ଗୋଷ୍ଠୀର ପାରସ୍ପରିକ ସମ୍ପର୍କକୁ ଗଠନମୂଳକ ଭିତ୍ତିରେ ସୁଦୃଢ଼ କରିବାର ପକ୍ଷପାତୀ ଥିଲେ । ତେଣୁ ଏଥିପାଇଁ ତାଙ୍କୁ ଜାତୀୟତା ବିରୋଧୀ କହିବା ଏକ ମସ୍ତବଡ଼ ଭୁଲ ହେବ ।

ଏହି ପରିପ୍ରେକ୍ଷୀରେ ଏକଥା କହିବା ବାହୁଲ୍ୟ ଯେ, ଇକ୍‌ବାଲ୍‌ଙ୍କ ସମସାମୟିକ ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର ମଧ୍ୟ ସଂକୀର୍ଣ୍ଣ ଜାତୀୟତାବାଦର ବିରୋଧୀ ଥିଲେ । ଏ ସମ୍ପର୍କରେ ତାଙ୍କର ଏକ ଲେଖା ନିମ୍ନରେ ପ୍ରଦତ୍ତ :—

"ଆନ୍ତର୍ଜାତିକ କ୍ଷେତ୍ରରେ ରଙ୍ଗହୀନ ଅସ୍ପଷ୍ଟତା ବା ଜାତିପୂଜାର ବ୍ୟକ୍ତିଗତ ଅନୁରାଗ ମାନବ ଇତିହାସର ଲକ୍ଷ୍ୟ ନୁହେଁ । ଭାରତ ଏକ ଦିଗରେ ବିଭେଦର ସାମାଜିକ ନିୟନ୍ତ୍ରଣ କରି ଓ ଅନ୍ୟ ଦିଗରେ ଏକତାକୁ ଆଧ୍ୟାତ୍ମିକ ସ୍ୱୀକୃତି ଦେଇ ନିଜ କାର୍ଯ୍ୟକୁ ପୂର୍ଣ୍ଣାଙ୍ଗ କରି ଚାଲିଛି । କିନ୍ତୁ ଜାତି ଜାତି ମଧ୍ୟରେ ବିଭେଦ ପ୍ରାଚୀର ସୃଷ୍ଟି କରି, ଏଥିରୁ ସୃଷ୍ଟି ହେଉଥିବା ନ୍ୟୂନ ମନୋବୃତ୍ତିକୁ ଜୀବିତ ରଖି ଭୁଲ କରିଛି । ଅନେକ କ୍ଷେତ୍ରରେ ଏହା ନିଜ ସନ୍ତାନମାନଙ୍କ ମନକୁ ପଙ୍ଗୁ କରି ସେମାନଙ୍କ ଜୀବନକୁ ନର୍କରେ ପରିଣତ କରି ଦେଇଛି । କେବଳ ଏଇଥି ପାଇଁ ସେମାନେ ସାମାଜିକ ପରିବର୍ତ୍ତନର ଉପଯୋଗୀ ହୋଇପାରିବେ ।

ଶତାବ୍ଦୀ ଶତାବ୍ଦୀ ଧରି ଏ ପ୍ରକାର ପରୀକ୍ଷା ନିରୀକ୍ଷା ଚାଲିଛି । ଅବସ୍ଥା ସନ୍ତୁଳିତ ସାଲିସ୍ ମଧ୍ୟ କରାଯାଉଛି । ତାର ଏକମାତ୍ର କର୍ତ୍ତବ୍ୟ ହେଉଛି, ଅତିଥି ସେବକ ପରି ନିଜର ଅସଂଖ୍ୟ ଅତିଥିଙ୍କ ପାଇଁ ବ୍ୟବସ୍ଥା କରିବା—ଯେଉଁମାନେ ପ୍ରତ୍ୟେକ ପ୍ରତ୍ୟେକଙ୍କଠାରୁ ପୃଥକ, ଏବଂ ଯେଉଁମାନଙ୍କର ଅଭ୍ୟାସ ଓ ଆବଶ୍ୟକତା ମଧ୍ୟ ପୃଥକ । ଏହା ଫଳରେ ଅସୀମ ଜଟିଳତା ମଧ୍ୟ ସୃଷ୍ଟି ହେଉଛି ଯାହାର ସମାଧାନ କେବଳ ଚତୁରତା ଦ୍ୱାରା ନୁହେଁ ବରଂ ସମ୍ବେଦନଶୀଳତା ଏବଂ ମାନବିକ ଏକତ୍ୱ ପ୍ରତି ପ୍ରକୃତ ବିଶ୍ୱାସ ଦ୍ୱାରା ହିଁ ସମ୍ଭବ । ଉପନିଷଦ ରଚନାର ପ୍ରାରମ୍ଭିକ କାଳରୁ ଆଜି ପର୍ଯ୍ୟନ୍ତ ଅସଂଖ୍ୟ ଆଧ୍ୟାତ୍ମିକ ଗୁରୁ ଏହି ବିଶ୍ୱାସ ଲାଭ କରିବା ପାଇଁ ଚେଷ୍ଟା କରିଅଛନ୍ତି । ସେମାନଙ୍କର ଏକମାତ୍ର ଲକ୍ଷ୍ୟ ହେଉଛି, ମାନବର ସମସ୍ତ ବିଭେଦକୁ ଭଗବତ୍ ବୋଧର ସ୍ରୋତରେ ଧୋଇ ନିଶ୍ଚିହ୍ନ କରିଦେବା ।" *

---

* A Tagore Reader—Edited by Amiya Chakraberty, Becon Press—Boston.

## Internationalism (ଆନ୍ତର୍ଜାତୀୟତା)

ଇକ୍‌ବାଲ୍‌ଙ୍କ ଭବିଷ୍ୟତବାଣୀ ଥିଲ ଯେ, ପାଶ୍ଚାତ୍ୟ ସଭ୍ୟତା ପତନର ଶିଖରରେ ଦଣ୍ଡାୟମାନ । ଔପନିବେଶବାଦ ଓ ପ୍ରସାରଣବାଦର ଫଳସ୍ୱରୂପ ଧ୍ୱଂସ ହିଁ ଅବଶ୍ୟମ୍ଭାବୀ । ମୂଳତଃ ଇକ୍‌ବାଲ୍ ଭାତୃଭାବ, ମାନବ ଜାତିର ଏକତା ଜାତି ଜାତି ମଧ୍ୟରେ ଶାନ୍ତି, ସଦ୍‌ଭାବ ଓ ଐକ୍ୟ ଉପରେ ପ୍ରତିଷ୍ଠିତ ଏପରି ଏକ ଆନ୍ତର୍ଜାତୀୟତାର ପ୍ରୟାସୀ ଥିଲେ, ଯାହାଦ୍ୱାରା ମାନବର ମହତ୍ତ୍ୱର ବିକାଶ ସାଧିତ ହୁଅନ୍ତା । ତେଣୁ ସେ ଆନ୍ତର୍ଜାତୀୟତାର ଏକ ଅପ୍ରତିଦ୍ୱନ୍ଦୀ ସମର୍ଥକ । *

ନିମ୍ନୋକ୍ତ ପଦ୍ୟାଂଶରୁ ତାଙ୍କର ଏହି ଦୃଷ୍ଟିଭଙ୍ଗୀ ବେଶ୍ ସୁସ୍ପଷ୍ଟ :—

କରେଙ୍ଗେ ଅହଲେ ନଜର୍ ତାଜା ବସ୍ତିୟାଁ ଆବାଦ୍
ମେରୀ ନେଗାହ ନହିଁ ସୁଏ କୁଫା ଓ ବଗ୍‌ଦାଦ୍
ଦର୍‌ୱେଷ୍-ଏ-ଖୁଦା ମସ୍ତ୍ ନ ଶର୍‌କି ହୈ ନ ଗରବି
ଘର୍ ମେରା ନ ଦିଲ୍ଲୀ, ନ ସଫାହାଁ, ନ ସମରକନ୍ଦ୍
ହମ୍‌ସାୟାଏ ଜିବ୍ରିଲେ ଅମିଁ ବନ୍ଦାଏ ଖାକି
ହୈ ଇସ୍‌କା ନଶେମନ୍ ନ ବୋଖାରା ନ ବଦକ୍‌ଶାଁ
ରହେଗା ରାଓ୍ୱି ଓ ନିଲ୍ ଓ ଫରାତ୍ ମେଁ କବ୍‌ତକ୍
ତେରା ସଫିନା କେ ହୈ ବହରେ ବେକରାଁ କେ ଲିଏ
ଶରକ୍ ଓ ଗରବ୍ କି କୈଦ୍ ସେ ଆଜାଦ୍ ହୈ ତୁହ
ରୁମି ହୈ, ନ ଶାମି ହୈ, କାଶୀ ନା ସମରକନ୍ଦୀ
ତୁ ଅଭି ରହ୍ ଗୁଜର୍ ମେ ହୈ, କୈଦେ ମୁକାମ୍ ସେ ଗୁଜର୍
ମିଶରୋ ହେଜାଜ୍ ସେ ଗୁଜର୍—ପାରସୋ ଶାମ୍ ସେ ଗୁଜର୍
ୟେହ ହିନ୍ଦୀ ଓ୍ୱହ ଖୁରାସାନି, ୟେହ ଅଫ୍‌ଗାନି ଓ୍ୱୋ ତୁରାନି
ତୁ ଐ ଶରମିନ୍ଦା-ଏ ସାହିଲ୍, ଉଛଲ୍‌କର୍ ବେକରାଁ ହୋ ଯା

---

* ଇକ୍‌ବାଲ୍‌କା ତିସ୍‌ରା ଓ୍ୱରେ ଓ୍ୱତନିୟତ୍-ଡଃ ମଜିଦ୍ ବେଦାର୍ (ଯୁବାନ୍ ଓ ଅଦବ୍, ଜାନୁୟାରୀ-ମାର୍ଚ୍ଚ ୧୯୮୪, ପୃ. ୯୫ ।

(ଯାର ଅଛି ଅନ୍ତର୍ଦୃଷ୍ଟି ସେ ଦେଖିବ ନୂତନ ପୃଥିବୀ
କୁଫୀ ଓ ବାଦ୍‌ବାଦ୍‌ଠାରୁ ଦୃଷ୍ଟି ଫେଇ ନୂତନରେ ମୂର୍ତ୍ତି ଗଢ଼ି ଥିବ ।
ପ୍ରାଚ୍ୟ-ପାଶ୍ଚାତ୍ୟ ଭେଦରେ ଆଧ୍ୟାତ୍ମିକ ପ୍ରେମଧାରା ଭଗ୍ନଜାତ ନୁହେଁ
ଘର ତାର ଦିଲ୍ଲୀ ନୁହେଁ, ଇସ୍‌ଫାହାନ୍ ନୁହେଁ-ଏପରିକ ସମର୍‌କନ୍ଦ୍‌ ବି ନୁହେଁ
ସ୍ୱର୍ଗଦୂତ ଜିବ୍ରାଲ୍ ସହ ଏ ମାଟିର ମଣିଷ ବି ଗଣା
ଠିକଣା ତା ବୋଖାରା ବା ବଦଖ୍‌ଶାଁ ନୁହେଁ-ପଶୁପରି ନୁହେଁ ବାଣ୍ଟବଣା
ଯାତ୍ରା ତାର ଅନନ୍ତ ସାଗରେ ଲକ୍ଷ୍ୟ ତାର ଅନନ୍ୟ ଅନନ୍ତ
କେତେକାଳ-ରୋମ, ନୀଳ, ଇଉଫ୍ରେଟିସ୍‌ରେ ରହିବାଟ ହୋଇବ ସୀମିତ
ରୋମ୍ କହ ସିରିଆ ବି, ଭାରତ ବା କୁହ ଦେଶ ଯେ ସମରକନ୍ଦ
ପ୍ରାଚ୍ୟର ସେ ନୁହେଁ ଅବା, ପାଶ୍ଚାତ୍ୟର ନୁହେଁ-ବନ୍ଧନରୁ ସଦା ସେତ ମୁକ୍ତ
ଅତିକ୍ରମ ମିଶରକୁ, ଆରବକୁ, ପାରସ୍ୟ ଓ ସିରିଆକୁ ଆଗକୁ ଆଗକୁ
ଯାତ୍ରୀ ତୁରେ ଅକଳନ ଯାତ୍ରାପଥ—ଅନନ୍ଦୃଷ୍ଟି ଲକ୍ଷ୍ୟପଥେ ସଦା ସମ୍ମୁଖକୁ
ଭାରତୀୟ, ଖୁରାସାନୀ, ଆଫ୍‌ଗାନ ଓ ତୁରାନୀ ମଧ୍ୟରେ ପାର୍ଥକ୍ୟଟା ସଦା ଅର୍ଥହୀନ
ଲକ୍ଷ୍ୟ ସ୍ଥଳେ ସଂକଳ୍ପ ବାନ୍ଧିଲେ, ମାନବ ସମୁଦ୍ରଗର୍ଭେ ଅକାତରେ କର
ଲମ୍ଫଦାନ ।)

## ଇକ୍‌ବାଲ୍‌ଙ୍କ ଶେଷ ପର୍ଯ୍ୟାୟରେ କବିତାର ଦେଶପ୍ରେମ

ଯଦିଓ ସେ ଜାତିପୂଜାର ଉପାସନାକୁ ତ୍ୟାଗ କରିଥିଲେ, ତଥାପି ତାଙ୍କର ଦେଶପ୍ରତି ପ୍ରେମ ଊଣା ହୋଇ ନ ଥିଲା । ତେଣୁ ଶେଷ ପର୍ଯ୍ୟାୟର କବିତାରେ ମଧ୍ୟ ତାଙ୍କର ସ୍ୱଦେଶ ପ୍ରେମର ଝଲକ ପ୍ରତିଫଳିତ । ଦାନ୍ତେଙ୍କ "Divine Comedy"ର ଶୈଳୀରେ ଲିଖିତ ପ୍ରସିଦ୍ଧ କୃତି "ଜାଓ୍ୱେଦ୍ ନାମା" ପ୍ରଥମ ଥର ପାଇଁ ୧୯୩୨ରେ ଫାର୍ସିରେ ପ୍ରକାଶିତ ହେଲା । ଏଥିରେ ସ୍ୱଦେଶ ପ୍ରେମର ପ୍ରତିଫଳନ ବେଶ୍ ସୁସ୍ପଷ୍ଟ ।

ଏହି କବିତାରେ ସେ ନିଜର ଗୁରୁ ସୂଫୀ କବି ଜଲାଲ୍‌ଉଦ୍ଦିନ୍ ରୁମିଙ୍କ * ସହିତ ସ୍ୱର୍ଗରେ ବିଚରଣ କରୁଥିବା ଅବସ୍ଥାରେ ଘଟଣାକ୍ରମେ ଋଷି ବିଶ୍ୱାମିତ୍ରଙ୍କୁ ଭେଟୁଛନ୍ତି । ଯାହାଙ୍କୁ ସେ ବିଶ୍ୱବନ୍ଧୁ ରୂପେ ସମ୍ବୋଧନ କରୁଛନ୍ତି । (ବିଶ୍ୱବନ୍ଧୁ ହେଉଛି 'ବିଶ୍ୱାମିତ୍ର'ର ସାହିତ୍ୟକ ଅନୁବାଦ ।)

ଏକ କିମ୍ବଦନ୍ତୀ ଅନୁଯାୟୀ ବିଶ୍ୱାମିତ୍ର କନୌଜର ସେନାପତି ଥିଲେ, କିନ୍ତୁ ସେ ସାଧୁ, ସନ୍ଥ, ସନ୍ୟାସୀମାନଙ୍କର ତଥା ବିଦ୍ୟାର ମଧ୍ୟ ପୃଷ୍ଠପୋଷକତା କରୁ ଥିଲେ । ନିଜର ଅଗାଧ ପାଣ୍ଡିତ୍ୟ ଯୋଗୁ ସେ ଖ୍ୟାତିଲାଭ କଲେ । ଅପର୍ଯ୍ୟାପ୍ତ ଓ ଅସୀମ ଜ୍ଞାନଯୋଗୁ ତାଙ୍କୁ 'ରାଜର୍ଷି' ଓ 'ବ୍ରହ୍ମର୍ଷି' ଉପାଧି ମଧ୍ୟ ମିଳିଥିଲା । କଥିତ ଅଛି ଯେ, ସେ ମଧ୍ୟ ରାମଙ୍କର ଗୁ ରୁ ଥିଲେ । ଅନ୍ୟ କିମ୍ବଦନ୍ତୀ ଅନୁସାରେ କ୍ଷତ୍ରିୟ ପରିବାରରେ ଜାତ ବିଶ୍ୱାମିତ୍ର ଜଣେ ପ୍ରସିଦ୍ଧ ଋଷି ଥିଲେ କିନ୍ତୁ କଠୋର ତପସ୍ୟା ବଳରେ ସେ ନିଜକୁ ବ୍ରାହ୍ମଣ ଜାତି ପର୍ଯ୍ୟନ୍ତ ପହଞ୍ଚାଇ ପାରିଥିଲେ ଏବଂ ସପ୍ତର୍ଷିମାନଙ୍କ ମଧ୍ୟରୁ ଜଣେ ବୋଲି ପରିଗଣିତ ହୋଇଥିଲେ ।

---

* ମୌଲନା ଜଲାଲୁଦ୍ଦିନ୍ ରୁମି (୬୦୪-୬୭୨ ହିଜରି) ଜଣେ ପ୍ରସିଦ୍ଧ ପାର୍ସି କବି ଥିଲେ । ତାଙ୍କର ପଦ୍ୟଗୁଚ୍ଛ (ମସ୍‌ନଓ୍ୱି) ସାରା ବିଶ୍ୱରେ ପ୍ରସିଦ୍ଧ । କହିବା ବାହୁଲ୍ୟ, ତାଙ୍କର ପଦ୍ୟଗୁଚ୍ଛଟି ହେଉଛି ପାର୍ସି ଭାଷାର ଅନୁଦିତ 'କୋରାନ୍' ।

ମସ୍‌ନଓ୍ୱି-ଏ ମୌଲଓ୍ୱି-ଏ ମାନଓ୍ୱି
ହସ୍ତ୍ କୁର୍‌ଆଁ ଦର୍ ଜୁବାନେ ପହ୍‌ଲଓ୍ୱି

(ମୌଲାନା ରୁମିଙ୍କର ମସ୍‌ନଓ୍ୱି ପାର୍ସି ଭାଷାରେ କୋରାନ୍ ଅଟେ ।)

ଇକ୍‌ବାଲ୍ ରୁମିଙ୍କୁ ନିଜର ଆଧ୍ୟାତ୍ମିକ ଗୁରୁ ରୂପେ ସମ୍ମାନ ଦେଉଥିଲେ ।

ହମ୍ ଖୁଗରେ ମହ୍‌ସୁସ୍ ହେଁ ସାହିଲ୍ କେ ଖରିଦାର୍
ଏକ୍ ବହ୍‌ରେ ପୁର୍ ଆଶୁବ୍ ଓ ପୁର୍ ଅସ୍‌ରାର୍ ହୈ ରୁମି
ମୈଁ ଭି ହୁଁ ଉସି କାଫ୍‌ଲାଏ ଶୌକ୍ ମେ ଇକ୍‌ବାଲ
ଜିସ୍ କାଫ୍‌ଲାଏ ଶୌକ୍ ବା ସାଲାର୍ ହୈ ରୁମି

(ବସ୍ତୁବାଦୀ ଚେତନାର କୂଳେ ଠିଆ ହେଲେ
ରୁମି ହିଁ ଅଦ୍ଭୁତ-ଗର୍ଜୁଥିବା ବିକଟ ସମୁଦ୍ର
ଯେ ଦଳର ରୁମି ଦଳପତି
ସେ ଦଳର ଇକବାଲ, ଯାତ୍ରୀ ଏକ-ଅଜ୍ଞାତ ବୁର୍ମଦ ।)

ଜଗନ୍ନାଥ ଆଜାଦ୍ ନଜର ଗ୍ରନ୍ଥ "Iqbal : Mind and Art"ରେ ବିଶ୍ୱାମିତ୍ରଙ୍କୁ (ବିଶ୍ୱବନ୍ଧୁ) "ଶିବ"ଙ୍କ ରୂପରେ ପରିଚିତ କରାଇଛନ୍ତି । ମୋ ମତରେ ଇକ୍‌ବାଲ୍ ଯେପରି ବିଶ୍ୱବନ୍ଧୁ କଥା କହିଛନ୍ତି ଓ ତାଙ୍କୁ "ଭାରତୀୟ-ସାଧୁ" ଓ "ଭାରତୀୟ ଋଷି" ରୂପେ ନାମିତ କରିଛନ୍ତି, ସେ ଦୃଷ୍ଟିରୁ ଦେଖି-ବାକୁ ଗଲେ ବିଶ୍ୱବନ୍ଧୁ-ବିଶ୍ୱାମିତ୍ର ହୋଇପାରନ୍ତି, ଶିବ ନୁହଁନ୍ତି । ଶିବ ହିଁ ଭଗବାନ । ଇକ୍‌ବାଲ୍ ତାଙ୍କୁ କେବେହେଲେ ଋଷି କହିପାରନ୍ତେ ନାହିଁ । ଶିବ ହିଁ ହେଉଛନ୍ତି ପ୍ରକୃତରେ ଜ୍ଞାନର ଉତ୍ସ ।

ଭାରତୀୟ ଋଷି ( ବିଶ୍ୱାମିତ୍ର )ଙ୍କ ସହିତ ଇକ୍‌ବାଲ୍‌ଙ୍କର ସାକ୍ଷାତ ସମ୍ପର୍କିତ ବିବରଣୀ ନିମ୍ନୋକ୍ତ ପଦ୍ୟାଂଶରେ ପ୍ରଦତ୍ତ :—

ମନ୍ ଚୁଁ କୋରାଁ ଦସ୍ତ୍ ବର୍ ଦୋଶେ ରଫିକ୍
ପା ନେହାଦମ୍ ଅନ୍ଦରାଁ ଗାରେ ଅମିକ୍
ମାହିରା ଅଜ୍ ଜୁଲ୍‌ମତସ୍ ହିଲ୍ ଦାଗ୍ ଦାଗ୍
ଅନ୍ଦରୁ ଖୁର୍‌ଶିଦ୍ ମୋହିତାଜେ ଚରାଗ୍

ଓ୍ୱହମ୍ ଓ ଶକ୍ ବର୍ ମନ୍ ଶବ୍‌ଖୁଁ ରେଖ୍‌ତନ୍ଦ୍
ଅକଲ୍ ଓ ହୋଶମ୍ ରା ବଦାର୍ ଆଓ୍ୱେଖ୍‌ତନ୍ଦ୍
ରାହ ରଫ୍‌ତମ୍ ରହଜନାଁ ଅନ୍ଦର କମିଁ
ଦିଲ୍ ତହି ଅଜ୍ ଲଜ୍ଜତେ ଶିଦ୍‌କୋ ୟକିଁ

ତା ନିଗାହ୍ ରା ଜଲ୍‌ଓ୍ୱା ଶୁଦ୍ ବେ ହିଜାବ୍
ସୁବ୍‌ହେ ରୌଶନ୍ ବେ ତୋଲୁଏ ଆଫ୍‌ତାବ୍
ଓ୍ୱାଦିଏ ହର୍ ସଙ୍ଗେ ଊ ଜୁନ୍ନାରବନ୍ଦ୍
ଦେଓ୍ୱସାର୍ ଅଜ୍ ନଖଲ୍‌ହାଏ ସର୍‌ବୁଲନ୍ଦ୍ ।

ଅଜ୍ ସରସ୍ତେ ଆବ୍ ଓ ଖାକ୍ ଅସ୍ତ୍ ଇଁ ମୁକାମ୍
ୟା ଖୟାଲସ୍ ନକଶ୍ ବନ୍ଦଦ ଦର୍ ମୁକାମ୍
ଦର୍ ହଓ୍ୱାଏ ଊ ଚୁଁ ମୈ ଜୌକ୍ ଓ ସୋରୁର୍
ସାୟା ଅଜ୍ ତକବିଲ୍ ଖାକଶ୍ ଆଏନେ ନୂର

ନେ ଜମିନଶ୍ ବା ସିପ୍‌ହରେ ଲଜ୍‌ଓ୍ୱରଦ୍
ନେ କନାରସ୍ ଅଜ୍ ଶଫକ୍‌ହା ସୁର୍ଖ ଓ ଜର୍ଦ

ନୁର୍ ଦର୍ ବନ୍ଦେ ଜୁଲମ୍ ଆଁଜା ନବୁଦ୍
ଦୁଦେ ଗର୍‌ଦେ ସୁବ୍‌ହୋ ଶାମ୍ ଆଁଜା ନବୁଦ୍

ଜେରେ ନଖ୍‌ଲେ ଆଶଫେ ହୁରୀ ନଜାଦ୍
ଢଦାହା ଅଜ୍ ସୂର୍‌ମା ଅଶ୍ ରୌଶନ୍ ସଓ୍ୱାଦ୍

ସୁଏ ବର୍ ସର୍ ବସ୍ତା ଓ ଉଶ୍‌ଫାଁ ବଦନ୍
ଗିର୍‌ଦେ ଊ ମାରେ ସୁଫେଦେ ହଲ୍‌କା ଜନ୍

ଆଦମେ ଅଜ୍ ଆବ୍ ଓ ଗିଲ୍ ବାଲା ତରେ
ଆଲମ୍ ଅଜ୍ ଦୈରେ ଖୟାଲସ୍ ପେଁକରେ

ଓ୍ୱକ୍ତ୍ ଜବା ଗର୍‌ଦଶେ ଆୟାମ୍ ନୈ
କାର୍‌ଏ ଊ ବା ଚର୍ଖେ ନିଲ ଫାମ୍ ନୈ ।

(ଅନ୍ଧକାର ଗିରିଗୁମ୍ଫା ଅଭିମୁଖେ ପାଦ ବଢ଼ାଇଲି
ରୁମିଙ୍କ କାନ୍ଧରେ ହାତ—କଂପିତ ହୃଦୟ ନେଇ ଆଗେଇ ଚାଲିଲି

ଅନ୍ଧକାର ସହିଁ ସଂଜପଣ-ଗୁମ୍ଫା ମଧ୍ୟେ ଭୟାନକ, ଅନ୍ଧାର ସଂକୁଳ,
ଚନ୍ଦ୍ରର ଆଲୋକ କେତେ, ଇଚ୍ଛାକଲେ ସୂର୍ଯ୍ୟ ମଧ୍ୟ ହାତେ ନେବ ବାଛି

ପ୍ରବେଶ ପରେ ଆଶଙ୍କା, ସନ୍ଦେହରେ ହେଲି ବାଟବଣା
ଭୁଲିଲି ନିଜକୁ, ହଜିଗଲା ଚେତା, ଆଉ ହେଲି ଆନମନା

ମୁଁ କେବଳ ଚାଲୁଥିଲି, ଶିକାରୀର ଦୃଷ୍ଟି ଆଡ଼େ ନ ଥିଲା ନଜର
ସତ୍ୟ କଣ, ବିଶ୍ୱାସ ବା କଣ—ଭୟ ପାଇ ସେ ଆଡ଼କୁ ନ ଥିଲା ଖାତର

ଅଚାନକ ଫିଟିଗଲା ଦୃଶ୍ୟର ପରଦା ଆଚମ୍ବିତେ ଚାହିଁଲି ମୁଁ ଖାଲି
ଆକାଶରେ ସିନ୍ଦୁର ଫାଟିନି—ଚଉହଦ ଦେଖାଦେଲା ରଙ୍ଗ ଝିଲିମିଲି

କି ଅଦ୍ଭୁତ ଉପତ୍ୟକା—ପ୍ରତ୍ୟେକ ପ୍ରସ୍ତର ବକ୍ଷେ ଶୋଭିତ ଲଇତା
ରାକ୍ଷସ ସମାନ ବୃକ୍ଷ, ସତେ ଅବା ଗ୍ରାସିଯିବେ—ବୁଡ଼ିଯାଏ ଚେତା

ସତେ କଣ ଏ ଇଲାକା ମାଟି ଅଉ ପାଣି କାଦୁଅର !
କଳ୍ପନା ଅବା ସ୍ୱପ୍ନ—କିଏ ତାର ସ୍ରଷ୍ଟା କାରିଗର !

ତା' ପବନ—ମଳୟ ଚନ୍ଦନ, ଆପେ ଆପେ ମାତୁଆଲ କରେ
ଯାଇ ଦୂରେ ହଟିଯାଏ—ଆଲୋକର ବନ୍ୟା ସେଠି ପ୍ରୀତି ଆଖିଠାରେ

ମାଟି ଓ ଆକାଶ ମିଶି ଏକାକାର ସେଠି ଆକାଶର ରଙ୍ଗ ସେଠି କେମିତିକା କଥା
କେ କହିବ ହଳଦିଆ, ଅବା ନୀଳବର୍ଣ୍ଣ— କହି ବା ପାରିବ କିଏ ରକ୍ତବର୍ଣ୍ଣ ସେ
ମାଟିର ମଥା

ଆଲୋକ ସେଠାରେ ମୁକ୍ତ— ଉଦ୍ଦାମ ଆଲୋକ ପ୍ଲାବନ
କି ସକାଳ, କି ସଞ୍ଜରେ---ଆକାଶରେ ଦିଶେ ନାହିଁ ଧୂମ ଆସ୍ତରଣ

ଭାରତୀୟ ଋଷି ଜଣେ ବୃକ୍ଷତଳେ ଧ୍ୟାନେ ଉପବିଷ୍ଟ
ଆଖିରେ ସୁରମା ଥିଲା – ଚମକ ବି ଥିଲା, ଧ୍ୟାନେ ଥିଲେ ଋଷି ହି ଆବିଷ୍ଟ

ଜଟାଜୁଟ ମୁଣ୍ଡ ତାଙ୍କ ଉନ୍ମୁକ୍ତ ବଦନ
ଗଳାରେ ସର୍ପର ହାର ଆରକ୍ତ ଆନନ

ସତେ କଣ ଏ ଜଣକ ମାଟି କାଦୁଅର !
ସୃଷ୍ଟି ଯାର କଳ୍ପନା ପ୍ରସୂତ--ଦେବତା ବା ନର !

ସଂସାରର ଆତଯାତ ଏ ସବୁରୁ ଊର୍ଦ୍ଧ୍ୱରେ ମହର୍ଷି
ଆକାଶର ଶକ୍ତି ଅବା କେତେ, ଋଷି ପ୍ରାଣେ ଦେବ ସେ ଆକର୍ଷି ! )

❋ ଏଠାରେ କହିବା ବାହୁଲ୍ୟ, ବିଶ୍ୱାମିତ୍ର ଋଷି ଥିଲେ ମଧ୍ୟ ଅବ୍ରାହ୍ମଣ ଥିଲେ । ସେ ତପସ୍ୟା ବଳରେ ବ୍ରହ୍ମତ୍ୱ ଲାଭ କଲେ । କଥିତ ଅଛି ଯେ, ବେଳେ

---

* ଇକ୍‌ବାଲ୍ ଓ କୌମି ଏକ୍ ଜହତ—ଡ: ତାରିଣୀ ଚରଣ ରଥ

ବେଳେ ସେ ତପସ୍ୟାରେ ସ୍ଥାନ ଓ କାଳର ଊର୍ଦ୍ଧ୍ୱକୁ ଚାଲିଯାଉଥିଲେ, ତାଙ୍କ ଚତୁଃପାର୍ଶ୍ୱରେ ବରଫ ଜମି ଯାଉଥିଲା; ଯାହା ଦୂରରୁ ସର୍ପପରି ପ୍ରତୀୟମାନ ହେଉଥିଲା ।

ନିମ୍ନୋକ୍ତ କବିତାରେ ବିଶ୍ୱବନ୍ଧୁ (ବିଶ୍ୱାମିତ୍ର) ଏକ ଦେବଦୂତ ସହିତ ସାକ୍ଷାତ କରୁଛନ୍ତି । ଦେବଦୂତ ଭବିଷ୍ୟ ବାଣୀ ଦେଉଛନ୍ତି ଯେ, ପ୍ରାଚ୍ୟ ଭୂଖଣ୍ଡ ହିନେ ନା ହିନେ ଜାଗ୍ରତ ହେବ :—

ବର୍ ଓଜୂଦ୍ ଓ ବର୍ ଅଦମ୍ ଚେଶବା ଅସ୍ତ୍
ମଶରିକ୍ ଇଁ ଅସ୍‌ଵର୍ ଓ କମ୍ ହିଦା ଅସ୍ତ୍

କାରେ ମା ଅଫ୍‌ଲାକୟାଁ ଜୁଜ୍ ହିଦ୍ ନେସ୍ତ
ଜାନମ୍ ଅଜ୍ ଫର୍‌ଦାଏ ଊ ନୋମିଦ୍ ନେସ୍ତ

ଦୋଶ୍ ହିଦମ୍ ବର୍ ଫରାଜେ କଶ୍ ମରୁଦ୍
ଜ ଆସ୍‌ମାଁ ଫରିସ୍ତାଏ ଆମଦ୍ ଫରୁଦ୍

ଅଜ୍ ନିଗାହଶ୍ ଜୌକେ ହିଦାରେ ଚକଦ୍
ଜୁଜ୍ ବସୁଏ ଖାକ୍ ଦାନେ ମାନ ହିଦ୍

ଗୁଫ୍‌ତମଶ୍ ଈଜ୍ ମୋହରମା ରାଜେ ମପୋଶ୍
ଗୁ ଚେ ବିନି ଅନ୍ଦର୍ ଆଁ ଖାକେ ଖମୋଶ୍

ଅଜ୍ ଜମାଲେ ଜୋହରାଏ ବର୍ ଦାଖ୍‌ତ
* ହିଲ୍ ବଗ୍ନହେ ବାବଲେ ଅନ୍ଦାଖ୍‌ତ

---

* କିମ୍ବଦନ୍ତୀ ଅନୁଯାୟୀ ହାରୁତ୍ ଓ ମାରୁତ୍ ନାମକ ଦୁଇ ଦେବଦୂତ ପୃଥିବୀକୁ ଓହ୍ଲାଇ ରତିଦେବୀଙ୍କ ପ୍ରେମରେ ପଡ଼ିଥିଲେ । ତାଙ୍କଦ୍ୱାରା ପ୍ରଲୋଭିତ ହୋଇ ସେମାନେ ତାଙ୍କୁ କଳା କୁହୁକ ଶିଖାଇ ଥିଲେ । ରତିଦେବୀ ଏହି କଳା କୁହୁକ ଶିଖି ସ୍ୱର୍ଗକୁ ଏକ ଗ୍ରହ ରୂପରେ ଚାଲିଯାଇଥିଲେ । ଶାସ୍ତିସ୍ୱରୂପ ଏହି ଦେବଦୂତ ଦ୍ୱୟ "ବେବିଲୋନ୍ କୂପ" ନାମକ, ବେବିଲୋନ୍‌ର ଏକ ପାତାଳ ଘରେ ବନ୍ଦୀ ହୋଇଥିଲେ । ଅନ୍ୟ ଅର୍ଥରେ କହିବାକୁ ଗଲେ, ରତିଦେବୀଙ୍କ ସୌନ୍ଦର୍ଯ୍ୟରେ ଏତେ ଆକର୍ଷଣ ଥିଲା ଯେ, ଦେବଦୂତମାନେ ମଧ୍ୟ ପ୍ରଲୋଭନ ସମ୍ବରଣ କରି ପାରୁ ନ ଥିଲେ ।

ଗୁପ୍ତ୍ ହଙ୍ଗାମେ ତୋଲ୍ଏ ଖାଓ୍ୱର୍ ଅସ୍ତ୍
ଆଫ୍ତାବେ ତାଜା ଭରା ଦର୍ ବର୍ ଅସ୍ତ୍
ଲଲ୍ହା ଅଜ୍ ସଙ୍ଗେ ରହା ଆଯୂଦ୍ ବରୁଁ
ୟୁସୁଫାନ୍ ଇ ଯ ଚହ ଆଯୂଦ୍ ବରୁଁ

ରସ୍ତଖେଜେ ଦର୍ କନାରଶ୍ ଦଦାଅମ୍
ଲର୍ଜା ଅନ୍ଦର୍ କୋହସାରଶ୍ ଦଦାଅମ୍
ରଖ୍ତ ବନ୍ଦଦ୍ ଅଜ୍ ମୁକାମେ ଆଜର
ତା ଶଓ୍ୱଦ୍ ଖୁଗର୍ ଜ ତର୍କେ ବୁତ୍ଗର

ଐ ଖୁଶ୍ ଆଁ କୌମେ କେ ଦାନେ ଭ ତପିଦ୍
ଅଜ୍ ଗିଲେ ଖୁଦ୍ ଖେଶ୍ରା ବାଜ୍ ଆଫ୍ରିଦ୍
ଅର୍ସିଆଁ ବା ସୂବ୍ହେ ଇଦ୍ଆଁ ସାଅତେ
ଚୁଁ ଶଓ୍ୱଦ୍ ବେଦାର୍ ଚଶ୍ମେ ମିଲ୍ଲତେ

(ପ୍ରାଚ୍ୟଦେଶ ବ୍ୟସ୍ତ ସଦା----ଅସ୍ତି ଅବା ନାସ୍ତିର ପ୍ରଶ୍ନରେ
ରହସ୍ୟଟା ଦୂରହ ଯେମିତ---ସମାଧାନ ତାରେ ବହୁଦୂରେ
ଆମେ ଅଟୁ ସ୍ୱର୍ଗବାସୀ । ଦେଖି ଜାଣି ପାରୁନୁ କଣ
ତଥାପି ଆଶାପୂର୍ଣ୍ଣ ଆମେ, ପ୍ରାଚ୍ୟ ଖଣ୍ଡୁ ଦୁଃଖ ଦନେ ଯିବ ଅପସର ।

କାଲିର ଅଦ୍ଭୁତ ଦୃଶ୍ୟ --କଶ୍ମରୁଦ୍ ପାହାଡ଼ ଶିଖରୁ
ମର୍ତ୍ତ୍ୟଗାମୀ ଦେବଦୂତ—ନୀଳ ଆକାଶରୁ
ତା' ଦୃଷ୍ଟିରେ ପୃଥିବୀ—ଦର୍ଶନ ନଶା ଭରି ରହିଥିଲା
ଧରା—ସ୍ୱର୍ଗ ବନା କହୁ, ସେ ଦୃଷ୍ଟିରେ ଅନ୍ତରୀପ ଥିଲା ।

ପଚ୍ଚରିଲି କଣ ଦୂତ ! କହୁ କଥା ନରଖି ଗୋପନ
କେଉଁ ଦୃଶ୍ୟ ଲୋଭନୀୟ, କାହିଁରେ ତୋ ତୃପ୍ତହୁଏ ମନ ?
ସତେ କଣ ରତ୍ତଦେବୀ ସୌନ୍ଦର୍ଯ୍ୟରେ ବ୍ୟାମୋହିତ ହୋଇ
ବେବଲୋନ୍ କୂପେ ବନ୍ଦୀ--ମର୍ତ୍ତ୍ୟ ଧାମେ ଥାଇ !

ଦେବଦୂତ ନମ୍ରସ୍ୱରେ---"ଆସିଛି ସମୟ ପ୍ରାଚ୍ୟ ହୋଇବ ଜାଗ୍ରତ
ପ୍ରାଚ୍ୟ ଭୂଖଣ୍ଡର କୋଟେ ନବଜ୍ୟୋତି, ନୂଆ ସୂର୍ଯ୍ୟ ହେବେ ହିଁ ଉଦିତ ।"
ତା' ଗତି ପଥରେ ସତେ ପଥର ବି ମୁକ୍ତା ପାଲଟିବ
ଅନ୍ଧ କୂପ ଗହ୍ୱରରୁ ସୁପ୍ତସୁପ୍ତଙ୍କର ଆବର୍ତ୍ତ ହେବ ।

ଅନୁଭବ ଆସିଛି ମୋ, ତା କୋଳରେ ଅପୂର୍ବ ସ୍ପନ୍ଦନ
ମୁଁ ଦେଖିଛି ତା' ପାହାଡ଼େ-ଆନ୍ଦୋଳନ, ତୀବ୍ରତା, କମ୍ପନ
ମୂର୍ତ୍ତି ଗଢ଼ା ଗ୍ରୁଡ଼ିଦେ ଆଜର୍, ନୂଆ ସୁରେ ବାନ୍ଧ ହୋଇଯା
ବାସ୍ତବ ଦୁନିଆ ସାଥେ ସମତାଳ ଦେଇ ନିଜ କର୍ମ ନିଜେ କରିଯା ।

ଧନ୍ୟ ସେହି ଦେଶ, ଜାତି – ପ୍ରାଣେ ଯହିଁ ସ୍ପନ୍ଦନ ଲହରୀ
ଯେ ମାଟିରେ ପୁନର୍ଜନ୍ମ---ଦେବଶିଶୁ ଆସେ ଅବତରି
ସେ ସକାଳ ଇଦ୍‌ର ସକାଳ – ସେ ପ୍ରଭାତେ ସ୍ୱର୍ଗବାସୀ ଆଶିଷ ଢାଳିବେ
ଯେ ଦିନ କଟିବ ତନ୍ଦ୍ରା—ଦେଶବାସୀ ଆଳସ୍ୟ କରିବ ପ୍ରଗତି ଗୁହିଁବେ ।)

ଉପରୋକ୍ତ ପଦ୍ୟରେ ଇକ୍‌ବାଲ୍ ନିଜ ଦେଶ ସ୍ୱାଧୀନ ହେବାର ଆକାଂକ୍ଷାକୁ ସୁନ୍ଦର ଭାବରେ ପ୍ରକାଶ କରିଛନ୍ତି ।

ଏହି କବିତାଟିରେ ଇକ୍‌ବାଲ୍ ଭାରତବର୍ଷର ଆତ୍ମିକ ସୌନ୍ଦର୍ଯ୍ୟ ବର୍ଣ୍ଣନା କରିଛନ୍ତି, ଅପର ପକ୍ଷରେ ଭାରତ ଜନନୀର ଗଭୀର ଦୁଃଖ ସମୟରେ ଅତ୍ୟନ୍ତ ମର୍ମାହତ ମଧ୍ୟ ହୋଇଛନ୍ତି :—

ବା ଚୁନ୍ନି ଖୁବି କଶ୍‌ବ ନଶିବତଶ୍ ଚୌକ୍ ଓବଦ୍
ବର୍‌ଲବେ ଊ ନାଲ୍ ହାଏ ଦର୍‌ଦମନ୍ଦ୍

( ଏତେ ଏତେ ଗୁଣାବଳୀ, ଯେ ଜନନୀ ସଦ୍‌ଗୁଣ ଆଧାର
ପରାଧୀନ ଆଜ ସିଏ—ମୁଖେ ହସ ନାହିଁ--ଫିଙ୍ଗି ଶୃଙ୍ଖଳ ଡୋର )

ଭାରତବର୍ଷର ଆଧ୍ୟାତ୍ମିକ ଦିଗ୍‌ବଳୟରେ ଭଗବତ୍ ଆଲୋକର ମଶାଲ ଝଟକୁଛି । ଚିରନ୍ତନ ସୌନ୍ଦର୍ଯ୍ୟ ସତ୍ତ୍ୱେ ଆଜ ସେ ପରାଧୀନ । ତା' ମୁଖରେ ବେଦନାର କଳା ବାଦଲ । ଭାରତବର୍ଷର ଏହି ଆତ୍ମିକ ବିଷାଦ ବର୍ଣ୍ଣନା

କଲବେଳେ ଇକ୍‌ବାଲ୍‌ଙ୍କ ହୃଦୟ କାନ୍ଦ ଉଠିଛି । ସେ ଏଥିପାଇଁ ମଧ କ୍ଷୁବ୍ଧ ଯେ, ଏ ଦେଶର ଜନମାନସରେ ନିଜ ଜନ୍ମଭୂମି ପାଇଁ ଦରଦ ଓ ମର୍ଯ୍ୟାଦା-ବୋଧ ନାହିଁ —

ଶମ୍ମେ ଯାଁ ଅଫ୍‌ସୁର୍‌ଦା ଦର୍ ଫାନୁସେ ହିନ୍ଦ୍
ହିନ୍ଦୀୟାଁ ବେଗାନା ଅଜ୍ ନାମୁଶେ ହିନ୍ଦ୍
ମର୍‌ଦକେ ନା ମୁହରମ୍ ଅଜ୍ ଅସରାରେ ଖେଶ୍
ଜଖମଏ ଖୁଦ୍ କମ୍ ଜନଦ୍ ବର୍ ତାରେ ଖେଶ୍

ବର୍ ଜମାନେ ରଫ୍‌ତା ମି ବନ୍ଦଦ୍ ନଜର୍
ଅଜ୍ ତଶେ ଅଫ୍‌ସୁର୍‌ଦା ମି ସୋଜଦ୍ ଜିଗର୍
ବନ୍ଦ୍ ହା ବର୍ ଦସ୍ତ ଓ ପାଏ ମନ୍ ଅଜ୍ ଓସ୍ତ୍
ନାଲହାଏ ନା ରସାଏ ମନ୍ ଅଜ୍ ଓସ୍ତ୍

ଖେଶ୍‌ତନ୍‌ବୀ ଅଜ୍ ଖୁଦ ପର୍‌ଦାଖ୍‌ତା
ଅଜ୍ ରହୁମେ କୋହନା ଜିନ୍ଦାଁ ସାଖ୍‌ତା
ଆଦ୍‌ମିୟତ୍ ଅଜ୍ ଓଜୁଦଶ୍ ଦରଦ୍‌ମନ୍ଦ
ଅସରେ ନୌ ଅଜ୍ ପାକ୍ ଓ ନାପାକଶ୍ ନଜନ୍ଦ୍ ।

କୈ ଶବେ ହିନ୍ଦୁସ୍ତାଁ ଆୟଦ୍ ବସୋଜ୍
* ମର୍‌ଦେ ଜାଫର୍ ରୁହେ ଉ ଜିନ୍ଦା ହୋନୁଜ୍
ତା ଜ କୈଦେ ୟୂକ୍ ବଦନ୍ ଓ୍ୱାମି ରହଦ୍
ଆଶିୟାଁ ଅନ୍ଦର୍ ତନେ ଦିଗର୍ ନେହଦ୍

* ପଲସୀ ଯୁଦ୍ଧରେ ମିରଜାଫର୍‌ର ବିଶ୍ୱାସଘାତକତା ଯୋଗୁଁ କ୍ଲାଇବ୍ ବିଜୟୀ ହୋଇଥିଲେ ।

ଗାହ୍ ଊ ସୁ ବା କଲିଶା ସାଜ୍ବାଜ୍
ଗାହ୍ ଯେଶେ ଦୈରୟୁଁା ଅନ୍ଦର୍ ନେଆଜ୍

ଦିନେ ଊ ଆଇନେ ଊ ସୌଦାର୍ ଅସ୍ତ୍
✻ ଅନ୍ତର୍ ଅନ୍ଦର୍ ଲବାସେ ହୈଦର୍ ଅସ୍ତ୍

ତା ଯହାନେ ରଙ୍ଗ୍ ଓ ବୁ ଗର୍ଦଦ୍ ଦିଗର୍
ରସ୍ମେ ଊ ଆଇନେ ଊ ଗର୍ଦବ୍ ଜଗର୍

ଯାଫର୍ ଅନ୍ଦର୍ ହର୍ ବଦନ୍ ମିଲ୍ଲତ୍କୁଶ୍ ଅସ୍ତ୍
ଈଁ ମୁସଲମାନେ କୋହନ୍ ମିଲ୍ଲତ୍କୁଶ୍ ଅସ୍ତ୍

ଖନ୍ଦ୍ ଖନ୍ଦାଁ ଅସ୍ତ୍ ଓ ବା କସ୍ ୟାର୍ ନେସ୍ତ୍
ମାର୍ ଅଗର୍ ଖନ୍ଦାଁ ଶଓ୍ୱଦ୍ ଜୁଜ୍ ମାର୍ ନେସ୍ତ୍

ଅଜ୍ ନେଫାକଶ୍ ଓହେଦତେ କୌମେ ଦୋ ନମ୍
ମିଲ୍ଲତେ ଊ ଅଜ୍ ଓଯୁଦେ ଊ ଲଇମ୍

ମିଲ୍ଲତେ ସୁ ହର୍ କୁଜା ଗାରତ୍ ଗରେ ଅସ୍ତ୍
ଅଶ୍ଲେ ଊ ଅଜ୍ ସାଦ୍‌କେ ୟୁ ଜାଫରେ ଅସ୍ତ୍

ଅଲ୍ ଅମାଁ ଅଜ୍ ରୁହେ ଜାଫର୍ ଅଲ୍ ଅମାଁ
ଅଲ୍ ଅମାଁ ଅଜ୍ ଜାଫରାନେ ଈଁ ଜମାଁ ।

(ହିନ୍ଦୁସ୍ଥାନ ଆତ୍ମଘାତଶିଖା ଲଭ୍ ଲଭ୍ ଜଳେ ଖାଲି ଜଳେ
ନିଜ ମାଟି ଚୈତନ୍ୟ କରଣ୍ଡି--ଉଦାସୀନ ତା' ସନ୍ତାନ--ମାଟି ମାଆ କୋଳେ

ନିଜକୁ ଚିହ୍ନିନ ଯିଏ, ଅସମ୍ଭବ-ଅସମ୍ଭବ କଥା
ଏତେ ବଡ଼ ସଂସାରରେ ବାଟବଣା ହୋଇ--ଘୂରିଯିବ ତାର କ୍ଷୁଦ୍ର ମଥା

---

* ଅନ୍ତର୍ ଆରବ୍ୟ ଗଳ୍ପର ଏକ ନାୟକ । ଏହି ନାୟକ ଅନେକ ପ୍ରକାର କୁହୁକ ଓ କାଳ୍ପନିକ କାର୍ଯ୍ୟ କରେ । ପୂର୍ବ କାଳରେ ଅନ୍ତର୍ ଅସଂଖ୍ୟ କାଳ୍ପନିକ ଗଳ୍ପର ନାୟକ ବା ମୁଖ୍ୟ ଚରିତ୍ର ।

ଗୃହହିଁଛି କେବଳ ସିଏ ଅନ୍ଧାରରେ---ଥିଲା ସବୁ ଆଜ କଳା ଉଡ଼େ
ପଛକୁ ଅନାଏ ଖାଲି, ମୋ ଅନ୍ତରେ ନିଆଁ ଜଳେ-ଅଗ୍ନି ଅସ୍ତ୍ର ପାଉଁଶର ଗାଡ଼େ

ହାତେ ପାଦେ ବେଡ଼ି ମୋର ମୁକ୍ତ ମୁହିଁ--ମୁଁ ଏକାନ୍ତ କବି
ନୀରବେ ବନ୍ଧନେ କାନ୍ଦେ, ଏ ଦୁର୍ଦ୍ଦଶା ହୃଦ ଯାଏ ଦ୍ରବି ।

ଅହଂକାର ମଦମତ୍ତେ, ନିଜକୁ ଭୁଲିଛି ସିଏ, ମାଆକୁ ଭୁଲିଛି
ପରଂପରା କ୍ରୀତଦାସ ସାଜ ଅନ୍ଧକୂପେ ନିଜ ଦୋଷେ ନିଜେ ହିଁ ମରୁଛି

ହୃଦୟ ଯାହାର ଅଛି, ଯେ ଦେଶରେ ଥିଲେ ବି ତ ଦୁଃଖ କଷ୍ଟ ପାଇବ
ଏତେ ବଡ଼ ସୁନାମର ଦେଶ, ମହାନ ଭାରତବର୍ଷ--ଲାଜେ ଲାଜେ ମୁହଁ ଲୁଚାଇବ ।

ହିନ୍ଦୁସ୍ଥାନ କାଳରାତି ପାହିବ କେବେ – ସକାଳର ତୂର୍ଯ୍ୟନାଦ ହେବ
ଜାଫର୍ ମରିଛି ସତ, ଆତ୍ମା ତାର ଜୀବନ୍ତ ପୃଥିବୀ--ସନ୍ଧାନ ପାଇବ ।

ଶରୀରର ନାଗପାଶ ଫେଇ ଆତ୍ମା ଗୃହେଁ ନୂତନ ଆଳୟ
ଗୋଟିଏ କାୟାକୁ ତେଜ ପ୍ରବେଶଇ ମୁକ୍ତ ଆତ୍ମା—ନୂତନ ନିଳୟ ।

ଅଦ୍ଭୁତ ଖିଆଲ ତାର ଗୀର୍ଜା ମଧ୍ୟେ ଷଡ଼ଯନ୍ତ୍ର କରେ
କେତେବେଳେ ମନ୍ଦିରର ଗୃହକୋଣେ—ମଥାନତ କରେ ।

ଧର୍ମନାମେ ଷଡ଼ଯନ୍ତ୍ର, ଧର୍ମକୁ ଯେ ବେଉଷା କରିଛି
ଅଲ୍ଲୀଙ୍କ ପୋଷାକ ତଳେ ଅନ୍ତରୀ ସେ—ଛଦ୍ମବେଶୀ ଭଣ୍ଡସିଏ--ଧାର୍ମିକ ସାଜିଛି ।

ବହୁରୂପୀ ସେଇମାନେ, ଅପେକ୍ଷା ମାତର ତାଙ୍କ—ପୃଥିବୀ ବଦଳୁ
ସର୍ବଗ୍ରାସୀ କ୍ଷୁଧା ତାଙ୍କୁ, ନିମିଷକେ ସାରା ବିଶ୍ୱ—କରିଦେବେ ତଳୁ ।

ଯେ ଦେଶରେ ଯେଉଁ କାଳେ ଜାଫର୍‌ର ଆତ୍ମା କେବେ ହୋଇଲେ ଜନମ
ଦେଶ କଣ, ଜାତି କଣ, ଧର୍ମ କଣ--ତା କଳଙ୍କେ ହେଜରେ ଭରମ

ମୁଖେ ତାର ମଧୁ ଭରା ହୃଦୟରେ ସାପର ଗରଳ
ମିଛ ମିଛ ହାର ଗୁନ୍ଥେ—ଶତ୍ରୁ ସିଏ, ଆଖିରେ ସରଳ

ଷଡ଼ଯନ୍ତ୍ରକାରୀ ସିଏ, ଜାତୀୟ-ଏକତା ବୃକ୍ଷ ଛେଦନ କରଇ
କୋଟି ଜନ ମୁଖୁ ସୁଖ ମୂଳପୋଛ କରି—ଯାତନାକୁ ଆଣେ ସେ ବୁହାଇ

ବିଶ୍ୱାସଘାତକ ସେହି ସାଦିକ୍ ବା ଜାଫର୍‌ଟା ସବୁ କାଳେ କାଳେ
କାହାର ବା ମୂଣ୍ଡ ବିଥାଉଛି –ନିଜ ସ୍ୱାର୍ଥେ ଜାତିଟାକୁ ଦଳେ କୃତ୍ରଘ୍ନଟିଳେ
ରକ୍ଷାକର ଭଗବାନ – ଜାଫର୍‌ର ଜନ୍ମ ବୋଧୁ କେବେ କେଉଁକାଳେ
ସେ ପ୍ରେତାତ୍ମା ଉଦ୍ଧ୍ୱାନକ ଅନ୍ତ—ମହାପ୍ରଭୁ ଆଶୀର୍ବାଦ –ବାଦ୍ଧ ଘୁଷ୍ଟାଉଛେଳ । )

ଇକ୍‌ବାଲ୍‌ଙ୍କ ମତରେ ଦେଶ ବିରୁଦ୍ଧରେ ଷଡ଼ଯନ୍ତ୍ର ଯେ କୌଣସି ବ୍ୟକ୍ତି ପକ୍ଷରେ ସବୁଠାରୁ ଘୃଣ୍ୟ ଅପରାଧ । "ଜାଭେଦ୍-ନାମା"ରେ ସେ ଶନି ଗ୍ରହରେ ଥିବା ନର୍କର୍ ସବୁଠାରୁ ନିମ୍ନତମ ଓ କଦର୍ଯ୍ୟତମ ଅଂଶ (ଅସ୍‌ଫଲସ୍ ସାଫେଲିନ୍ ) କଥା ବର୍ଣ୍ଣନା କରିଛନ୍ତି, ଯାହା କେବଳ ଦେଶଦ୍ରୋହୀମାନଙ୍କ ପାଇଁ ଉଦ୍ଦିଷ୍ଟ । ଭାରତବର୍ଷର ଆତ୍ମା, ସେ ଅଂଶକୁ ଯାଇ ଆଧୁନିକ ଭାରତ ଇତିହାସର ଦୁଇଜଣ ଦେଶଦ୍ରୋହୀ ଅର୍ଥାତ୍ ବଙ୍ଗଳାର ମିର୍ ଜାଫର୍ ଓ ଦାକ୍ଷିଣାତ୍ୟର ମିର୍ ସାଦିକ୍‌ଙ୍କୁ ଭର୍ତ୍ସନା କରୁଛି । ପ୍ରଥମ ଜଣକ ସିରାଜୁଦ୍ଦୌଲାଙ୍କ ସହ ବିଶ୍ୱାସଘାତକତା କରି କ୍ଲାଇବ୍‌ଙ୍କୁ ସମର୍ଥନ କରିଥିଲା ଏବଂ ଦ୍ୱିତୀୟ ଜଣକ ଟିପୁ ସୁଲତାନ୍‌ଙ୍କ ସହିତ ନିମକହାରାମୀ କରିଥିଲା । ଇକ୍‌ବାଲ୍ କହନ୍ତି ଯେ, ବଙ୍ଗଳାର ମିର୍ ଜାଫର୍ ଓ ଦାକ୍ଷିଣାତ୍ୟର ମିର୍ ସାଦିକ୍ କେବଳ ମାନବିକତା ପାଇଁ ନୁହେଁ, ବରଂ ଦେଶ ଓ ଜାତିର କଳଙ୍କ । ଏହି ପ୍ରସଙ୍ଗରେ—

ଜାଫର୍ ଅଜ୍ ବଙ୍ଗାଲ୍ ଓ ସାଦିକ୍ ଅଜ୍ ଦକନ୍
ନଙ୍ଗେ ଆଦମ୍, ନଙ୍ଗେ ଦିଁ, ନଙ୍ଗେ ଓ୍ୱତନ୍

( ବଙ୍ଗଳାର ଜାଫର୍ ଓ ଦାକ୍ଷିଣାତ୍ୟ ସାଦିକଟା---ଏହି ଦୁଇଜଣ
ଧର୍ମ, ଦେଶ, ମଣିଷପଣିଆ--ସବୁଥିରେ ଥିଲା ପଶୁଜଣ )

ଏ ଦେଶ ଦ୍ରୋହୀଙ୍କ ଭର୍ତ୍ସନା ପାଇଁ ଇକବାଲ୍ ଯେଉଁ ଶବ୍ଦାବଳୀ ପ୍ରୟୋଗ କରିଛନ୍ତି, ଟିପୁ ସୁଲତାନ୍‌ଙ୍କ ଦ୍ୱାରା ଯେଉଁ ଭାଷାରେ ସେ କାବେରୀକୁ ସମ୍ବୋଧନ କରାଇଛନ୍ତି, ସେ ଶବ୍ଦାବଳୀରୁ ମଧ୍ୟ ଇକବାଲ୍‌ଙ୍କ ଦେଶପ୍ରେମ ପ୍ରାଞ୍ଜଳ । କହିବା ବାହୁଲ୍ୟ ଉର୍ଦ୍ଦୁ ବା ପାର୍ଶିର ଅନ୍ୟ କୌଣସି କବି କାବେରୀ ଉପରେ କବିତା ଲେଖି ନାହାନ୍ତି । ଇକ୍‌ବାଲ୍‌ଙ୍କ ଲେଖାରୁ :—

ରୁଦେ କାଓ୍ୱେସ ! ଯୂକେ ନର୍ମକ୍ ଖରାମ୍
ଖସ୍ତାଇ ଶାୟଦ୍ କେ ଅଜ୍ ସୈର ଦୋଆମ୍

ଦର୍ କୋହସ୍ତାଁ । ଉମର୍ହା ନାଲଦଇ
ସହେ ଖୁଦ୍ରା ବା ମଜା କାଓ୍ୱିଦଇ

ଅଏ ମୁରା ଖୁଶ୍ତର ଜ ଜହୁନ୍ ଓ ଫରାତ୍
ଅଏ ଦକନ୍ ରା ଆବେ ତୁ ଆବେ ହୟାତ୍

ଆହ ଶହରେ କେ - ଓ ଦର୍ ଆ ଖୋଟଶ ତୁ ବୁଦ୍
ହୁସ୍ନେ ନୋଶିଁ ଜଲ୍ଓ୍ୱା ଅଜ୍ ନୋଟଶ ତୁ ବୁଦ୍

କୋହନା ଗର୍ଦ୍ଦଦ ଶବାଟେବ ତୁ ହମାଁ
ପେଚ୍ ଓ ତାବ୍ ଓ ରଙ୍ଗ୍ ଓ ଆବ୍ ଏ ତୁ ହମାଁ

ମୌଜେ ତୁ ଜୁଜ୍ ଦାନାଏ ଗୌହର୍ ନଜାଦ୍
ତୁର୍ରଏ ତୁ ତା ଅବଦ୍ ଶୋରିଦା ବାଦ୍

ଐ ତେରା ସାଜେ କେ ସୋଜେ ଜନ୍ଦଗୀ ଅସ୍ତ୍
ହେର୍ ମି ଦାନ୍ନ କେ ଇଁ ପୈଗାମେ କସ୍ତ୍

ଆଁକେ ମି ନାନ୍ନ ତଓ୍ୱାଫେ ସବ୍ଓ୍ୱତଶ୍
ବୁଦ ଏ ଆଇନା ଦାଟର ଦୌଲତଶ୍

ଆଁକେ ସେହ୍ରାହା ଜ ତଦ୍ବୀରଶ୍ ବହିଶ୍ତ
ଆଁକେ ନକ୍ଶେ ଖୁଦ୍ ବଖୁନେ ଖୁଦ୍ ନଓ୍ୱିଶ୍ତ

ଆଁକେ ଖାକଶ୍ ମର୍କଜେ ଶଦ୍ ଆର୍ଜୁସ୍ତ
ଇଜତେରାବେ ମୌଜେ ତୁ ଅଜ୍ ଖୁନେ ଊସ୍ତ୍

ଆଁ କେ ଗୁଫ୍‌ତାରସ୍ ହମା କର୍‌ଦାର୍ ବୁଦ୍
ହସ୍‌ରକ୍ ଅନ୍ଦର୍ ଖାବ୍ ଉ ବେଦାର୍ ବୁଦ୍
ଅଏ ମନ୍ ଓ ତୁ ମୌଜେ ଅଜ୍ ରୁଦେ ହସ୍ତୀ
ହର୍ ନଫସ୍ ଦିଗର୍ ଶଓ୍ୱଦ୍ ଇଁ କାଏନାତ୍

ଜନ୍ଦେଗାନ ଇନ୍‌କଲାବେ ହର୍ ଦମେ ଅସ୍ତ
ଜାଁ କେ ଉ ଅନ୍ଦର୍ ସୁରାଗେ ଆଲମେ ଅସ୍ତ
ଚାରେ ପୁଦେ ହର୍ ଓଜୁଦ୍ ଅଜ୍ ରଫ୍‌ତ୍ ଓ ବୁଦ୍
ଇଁ ହମାଁ ଜୌକେ ନମୁଦ୍ ଅଜ୍ ରଫ୍‌ତ୍ ଓ ବୁଦ୍

ସାଦାହା ଚୁଁ ରହରଓ୍ୱାଁ ଅନ୍ଦର୍ ସଫର୍
ହର୍ କୁଜା ପିନ୍ ହାଁ ସଫର୍ ପୈଦା ହଜର୍ ।
କାରଓ୍ୱାଁ ଓ ନାକା ଓ ଦଶ୍ତ ଓ ନଖିଲ୍
ହର୍ ଚେ ବିନି ନାଲଦ୍ ଅଜ୍ ଦର୍‌ଦେ ରହିଲ୍

ଦର୍ ଚମନ୍ ଗୁଲ୍ ମେହମାନେ ଯକ୍ ନଫସ୍
ରଙ୍ଗ୍ ଓ ଆବସ୍ ଇମ୍‌ତେହାନେ ଯକ୍ ନଫସ୍
ମୌସମେ ଗୁଲ୍ ମାତମ୍ ଓ ହମ୍ ନାଏ ନୋଶ୍
ଗୁଞ୍ଚା ଦର୍ ଆଗୋଶ୍ ଓ ନାଶେ ଗୁଲ୍‌ବଦୋଶ୍

ଲାଲ୍ ରା ଗୁଫ୍‌ତମ୍ ଯକେ ଦିଗର୍ ବସୋଜ୍
ଗୁଫ୍‌ତ ରାଜେ ମା ନମି ଦାନି ହନୁଜ୍
ଅଜ୍ ଖସ୍ ଓ ଖ୍‌ଶାକ୍ ତାମିରେ ଓଜୁଦ୍
ଗୈର୍ ହସ୍‌ରତ୍ ଚିସ୍ତ୍ ପାଦାଶେ ନମୁଦ୍

ଦର୍ ସରାଏ ହସ୍ତ୍ ଓ ବୁଦ୍ ଆଇ ? ମସ୍ତ୍ରା
ଅଜ ଅଦମ୍ ସୂଏ ଓ୍ୱଜୁଦ୍ ଆଇ ? ମସ୍ତ୍ରା
ଦର୍ ବଦ୍ୱାସ୍ତି ଚୁଁ ଶରର୍ ଅଜ୍ ଖୁଦ୍ ମରୋ
ଦର୍ ତଲାଶେ ଖିର୍‌ମନେ ଆଓ୍ୱାରା ଶୋ

ଛାବ୍ ଓ ଛବ୍ ଦାଶ୍ତ ଅଗର୍ ମାନନ୍ଦ୍-ଏ ମେହ୍ବର
ପା ବନେହ୍ବ ଦର୍ ଉସ୍ଅଚେ ଆବାଦେ ସିଫହ୍ବର୍
କୋହ୍ବ ଓ ମୂର୍ଗ ଓ ଗୁଲସନ୍ ଓ ସେହ୍ବଶ୍ ବସୋଜ୍
ମାହ୍ବସ୍ୂଁ । ଶ୍ ଦର୍ ଛହ୍ବେ ଦର୍ୟ୍ୂା ବସୋଜ୍

ସିନା ଦାଶ୍ତ ଅଗର୍ ଦର୍ ଖୂରଦେ ଛର୍
ଦର୍ ଜହ୍ବାଁ ଶାହ୍ବ ବଜ, ଶାହ୍ବଁ ବମିର୍
ଯାଁକେ ଦର୍ ଅର୍ଜେ ହ୍ବସ୍ୂାନ୍ତ ଆମଦ୍ ସବାତ୍
ଅଜ୍ ଖୂଦା କମ୍ ଖାସ୍ତମ୍ ଭୂଲେ ହ୍ବସ୍ବାତ୍

ଜନ୍ଦଗୀ ଶ୍ ଶସ୍ତ୍ ରସ୍ମ ଓ ଦ୍ବନ୍ ଓ କୈଶ୍
ଯୂକ୍ ଦମେ୍ ଶେଶ ବେହ୍ବ୍ ଅଜ୍ ସଦ୍ ସାଲ୍ ଏ ମେଶ୍
ଜନ୍ଦଗୀ ମୋହ୍ବକମ୍ ଜ ଛସ୍ଲମୋ ରେଜାସ୍ତ୍
ମୌଜ୍ ନୈରଞ୍ଜ୍ ଓ ଛଲ୍ସିମ୍ ଓ ସିମିଯ୍ୂାସ୍ତ୍

ବନ୍ଦାଏ ହ୍ବକ୍ ଜୈଗମ୍ ଓ ଆହୁସ୍ତ ମର୍ଗ
ଯୂକ୍ ମକାମ୍ ଅଜ୍ ଶଦ୍ ମକାମେ ଊସ୍ତ୍ ମର୍ଗ
ମି ଫଛଦ୍ ବର୍ ମର୍ଗେ ଆଁ ମର୍ଦେ ଛମାମ୍
ମିଶ୍ଲେ ସାହ୍ବନେ କେ ଊଫ୍ଛଦ୍ ବର୍ ହ୍ବମାମ୍

ହ୍ବର୍ ଜମାଁ ମିରଦ୍ ଗୋଲମ୍ ଅଜ୍ ଢମେ ମର୍ଗ
ଜନ୍ଦଗୀ ଭଶ୍ ହ୍ବରମ୍ ଅଜ ଦ୍ବମେ ମର୍ଗ
ବନ୍ଦାଏ ଆଜାଦ୍ ଶ୍ ଶାନେ ଢଂଗର
ମର୍ଗ ଊଶ୍ ମି ଦେହ୍ବଦ୍ ଜାନେ ଜଗର୍

ଊ ଖୁଦ୍ ଅନ୍ଦେଶ୍ ଅସ୍ତ୍ ମର୍ଗ ଅନ୍ଦେଶ୍ ନେସ୍ତ୍
ମର୍ଗେ ଆଜାଦଁା । ଜ ଆନେ ବେଶ୍ ନେସ୍ତ୍

ବର୍‌ଗୁଜର୍ ଅଜ୍ ମର୍ଗେ କେ ସାଜଦ୍ ବା ଲହଦ୍
ଜାଁ କେଇଁ ମର୍ଗ ଅସ୍ତ୍ ମର୍ଗେ ଦାମ୍ ଓ ଦର୍ଦ ।

( ଧୀରେ ଅତ୍ତି ଧୀରେ ମାଲୋ ଭୂ କାବେରୀ ଧୀରେ ବହିଯା
କେତେ ପଥ ଅଛନ୍ତମି, ଥକା ପାଦ ତୋର–ଟିକେ ରହିଯା

ମାତୃଚର୍ଚ୍ଚ ଶିଖରେ କେତେ ଯୁଗ ଝୁରିଇଛୁ ଲୁହ
ଆଜ ତୋ ଗରଭେ ଉର୍ମି–ଆନନ୍ଦରେ ତୋ ବକ୍ଷରେ ତେଜରୂପୀ କୋହ

ଅକେକ୍‌ସ୍ କବା ଇଉଫ୍ରେଟିସ୍‌ର ନଦୀଧାରେ କେତେ କେତେ ସମସ୍ୟ କାଟିଛୁ
ଦକ୍ଷିଣ ଭାରତ ପାଇଁ ଅମୃତ ଧାରା ତୋ, ତୋ' କୂଳରେ ଅମୃତ ଲଭିଛୁ ।

କ୍ରଆଂତେ ଉଭେଇଗଲା ସେ ସଭ୍ୟତା ସେ ସହର ପାଶୋର ହେଲାଣି
ତୋ' ଜଳରେ ପ୍ରତିବିମ୍ବ ତୋଳ, ଆଜ ତା' ବସୁନ୍ଧ ଗରଭେ–ବିଦାୟ ନେଲାଣି

କେତେ କାନ୍ତ ସଙ୍ଗୀତର ତେଜ ତୋ' ଯୌବନେ ପଡ଼ିଲାଣି ଭଟ୍ଟା
ତଥାପି ହୃଦରୀ ଭୁଲେ ! ତୋ' ହୃଅ ଯେ ହୃଦୟ ଚହଟା ।

ମୁକୁତା ଜନମ ଦେଲ୍ ତୋ' ଗରଭ ବହୁରତ୍ନ ଖଣି
ଭାରତ ଭାରତୀ ପାଇଁ ସେହି ଧନ–ହେ ମା' ଉଜାଣି

ହେ କାବେରୀ ! ତୋ' ବୀଣାରେ ଜୀବନର ମୂର୍ଚ୍ଛନା ଭରିଛୁ
କାହାର ନର୍ଦ୍ଦେଶେ କହ, ତୋ' ବକ୍ଷରେ ବେପଥୁ ଜାଗିଛୁ !

ତଥାପି ଏ ବୟସରେ ତେଜ ତୋର ଥକ ପଡ଼ ନାହିଁ
ଅତୀତ ଗୌରବ ଗାଥା ଆଜ କହୁ—କେତେ ନାଚ ଗାଇ

ଧନ୍ୟ ସେହି ଟିପୁ ସୁଲତାନ୍ ମାତୃଭୂମି ପାଇଁ ଯିଏ ଜୀବନ ହାରିଲା
ନଜ ରକ୍ତେ ନଜ ଚହପଛେ—ଇତିହାସେ ନୂଆକଥା—କୀର୍ତ୍ତି ଥାପିଲା ।

ଦେହ ଯିନା ମରିଯାଏ—ବିଭୂତିରେ ଚେତନାର ଅଗ୍ନି ଜଳୁଥାଏ
ସେହି ଆତ୍ମାହୁତି, ସେଇ ଆତ୍ମଗାଥା—ତୋ' ତରଙ୍ଗେ ମର୍ମରିତ ହୁଏ ।

ନ ଥିଲା ସେ ବାକ୍ୟବୀର, କର୍ମେ ତାର ଥିଲା ସଦା ମତି
ଅଚନ୍ତା ନଦ୍ରାରେ ପ୍ରାଚ୍ୟ—ସେ କାଳରେ ଟିପୁବୀର–କାଟିଦେଲା ଜାତୀୟ ଦୁର୍ଗତି

ଜୀବନ-ସମୁଦ୍ର ତଟେ ତୁ' ଆଉ ମୁଁ—ତରଙ୍ଗର ବାର୍ତ୍ତା
ଚରାଚର ପୃଥିବୀ ଏଣ୍ଡ କ୍ଷଣକେ ବଦଳେ— ଇଚ୍ଛାମୟ ଏକା ସୃଷ୍ଟିକର୍ତ୍ତା
ଆବର୍ତ୍ତନ, ବିବର୍ତ୍ତନ, ସେହ୍ନି ହିଁ ଜୀବନ—ସୃଷ୍ଟି ଖାଲି ଏକକ ମାଧ୍ୟମ
ମରିବାଟା ଶେଷକଥା ନୁହେଁ—ନୂତନ ପୃଥିବୀ ପାଇଁ ଆମ୍ଭାଗତ ଚିର, ଅବିରାମ ।

ସଂସାରରେ ଜନ୍ମ ନେଲେ, ଶେଷଗନ୍ତ ନିଶ୍ଚିତ ମରଣ
ତଥାପି ବି ଜୀବନଟା କେତେ ଲୋଭନୀୟ, ହେଲେ ବେଦନା – ସତ୍ୟ ସକରୁଣ
ଚାହିଁ ଦଉଡୁଛି ଅବା, କିଏ କହେ ବାଟ ଦଉଡୁଛି
ନିଜେ ଯିଏ ବାଟ ଭୁଲେ, ଗନ୍ତପଥ ସେହ୍ନି ହିଁ ଜାଣିଛି !

କିଏ ବା ହସୁଛି କହ ?—ଯାତ୍ରାପଥ ଯନ୍ତ୍ରଣା ଅଧ୍ୟାୟ
ଯାଯାବର, ଓଟ, ମରୁଭୂମି, ମରୁଦ୍ୟାନ ଫୁଲ ବନ—ବେଦନାରେ ସବୁ ମରୁମୟ
ଅଛଥି ମାତର ଆମେ ଏ ବଗିଚା, ଏତେ ରଙ୍ଗୀ ଫୁଲ, ନୁହେଁ ତ ଆମର
ଯେତେ ବାଗେ ଦେଖିଲେ ବିଶ୍ୱାସ ହୁଏନି – ଏ ଜୀବନ ନୁହଇଁ ଆମର ।

ବସନ୍ତ ଆସଇ ଏଠି ଫୁଲେ ଫୁଲେ ମହକ ଝୁରାଇ
ଏଇଠିବି ଶବ ଶୋଭାଯାତ୍ରା, ସଜଫୁଟା ଫୁଲ ବି ହୁଏ ଧରାଶାୟୀ
ମୁଁ ଆଦରେ ଡାକିଲି ଲିଲି ! ଆଉ ଟିକେ ହସ ଖିଲ ଖିଲ
"ମୋ' ରହସ୍ୟ ତୁମକୁ ଅଜଣା"--ଓଲଟା ପ୍ରଶ୍ନରେ ଗଲି ତା' ପାଖୁଡ଼ା ମେଲି

ଧୂଳିରେ ଜନମ ଆଉ ସେଇ ମାତ୍ର ସତ୍ୟ ଧୂଳିରେ ମରଣ
ନିରାଶା, ହତାଶା ବୋଧ ଏକମାତ୍ର ଦଣ୍ଡ—ଏ ଜୀବନ ବ୍ୟର୍ଥ, ଅକାରଣ
ଦୂରରୁ ଲୋଭଉଛି ଖାଲି – ଭଙ୍ଗାଗଡ଼ା ଧରଣୀକୁ ବଳାଅନି ମନ
କିଛି ନାହିଁ ଏ ଜନମେ— ସବୁ ଅଛି କିଏ କହେ – ନ ହୁଅ ବିମନ ।

ଯଦିବା ଆସିବ କେବେ, ଆସ ନାହିଁ ଅଗ୍ନି କଣା ହୋଇ
ପାର ଯଦି ସୂର୍ଯ୍ୟେ ଜୟ କର – ଆସେ ମର୍ତ୍ତ୍ୟେ ଦିଗ୍‌ବିଜୟୀ ହୋଇ
ଅଶ୍ୱ ହେଉ ତୁମ ରଶ୍ମି, ଆକାଶରୁ ଗନ୍ତପଥ ଠିକ୍ କରିନିଅ ।
ଆକାଶରୁ ଧରଣୀକୁ ପାଦଦେବା ଆଗୁ – ଦୂରେ ଥାଇ ସବୁ କଳିନିଅ ।

ଜାଲନ୍ଧର ଉପତ୍ୟକା, ପାହାଡ଼ ଓ ଜଙ୍ଗଲ ପକ୍ଷୀଙ୍କୁ
କୁଞ୍ଜବନ ଛାରଖାର କର, ଭସ୍ମ କର ସମୁଦ୍ର ମାନଙ୍କୁ

ଯୁଦ୍ଧରେ ବାଜିଲେ ଶର, ଇଗଲ ପରି ଯୁଦ୍ଧିକୁ ପଠାଅ
ବାହନର ଧର୍ମ ରକ୍ଷା କର, ମରୁପଛେ ଜୀବନ ବଢାଅ ।

ଜାଣିଛୁ ଜୀବନ ନୁହେଁ ଫୁଲ ଶେଯ—ଧ୍ୱଂସ ଶେଷ – ଜୀବନ୍ତ ମରଣ
ମାଗି ନାହିଁ ଅଶେଷ ଜୀବନ—ଭଗବାନ ରକ୍ଷାକର ନ ଦେଇ କଷଣ

ବରଂ ଭଲ ସିଂହପରି ମୁହୂର୍ତ୍ତ ଜୀବନ ଶତଗୁଣେ ଭଲ
ଭୀରୁ ହୋଇ ମେଣ୍ଢା ପରି କୋଟିଏ ବରଷ— ନୁହେଁ ସମତୁଲ ।

ମୃତ୍ୟୁ ହିଁ ତ ମାୟା, ରହସ୍ୟରେ ଭରା – ଅଟେ ଏକ ଆକାଶୀ କଳ୍ପନା
ଭଗବତ୍‌ଠାରେ ପୂର୍ଣ୍ଣ ସମର୍ପଣ—ଖାଲି ବଳ ନୁହେଁ, କରିଥାଏ ଊର୍ଦ୍ଧ୍ୱମନା ।

ସତ୍ୟ ଆଚରଣେ ପୁରୁଷ ଯେ ସିଂହ, ତା’ ପାଇଁ ମୃତ୍ୟୁ ହରିଣୀ
ପଥ ତ ଅନେକ, ଲକ୍ଷ୍ୟପର୍ଯ୍ୟନ୍ତେ, ମୃତ୍ୟୁ ହିଁ ଏକ -- ସରଣୀ ।

ଗରୁଡ଼ ଝାମ୍ପିଲେ କଉଶଳେ, ଦୁର୍ବଳ କପୋତ ମରେ
ମୃତ୍ୟୁ ଅଟେ ଏକ ଅହେତୁକ ଭୟ, ମହାମାନବ କି ଡରେ ?

ଭୀରୁର ମରଣ ନିତି ପ୍ରତିଦିନେ, ଭୟ ହିଁ ତାର କାରଣ
ସମୟ କଟାଇ ଘରବେ, ଉଦାସେ, ଜୀବନ ହୁଏ କରୁଣ ।

ତା’ କାହାଣୀ ଭିନ୍ନ, ଦୃଢ଼ ମନୋବଳ -- ମୁକ୍ତ ଯେ ଭବ ସଂସାରେ
ମୃତ୍ୟୁ ଦିଏ ତାରେ ନୂତନ ଜୀବନ—ମୃତ୍ୟୁଞ୍ଜୟୀ କରେ ତାରେ

ନିମିଷକେ ମୃତ୍ୟୁ ଗ୍ରାସଇ ଶରୀରେ, ନିମିଷକ ପାଇଁ ସ୍ଥିତି
ମୁକ୍ତ ବ୍ୟକ୍ତି ପାଇଁ ମୃତ୍ୟୁ ବଡ଼ ନୁହେଁ—ନିଜେ ହିଁ ନିଜ ନିୟତି

ଶରୀର’ର ସ୍ଥାନ କବର ଭିତରେ, ଆତ୍ମାଇ ତ ମୁକ୍ତ – ଅନ୍ତିମ ଅବହେଳେ
ଜଙ୍ଗଲର ପଶୁ ହିଂସ୍ର, ଭୟାନକ—ଶୋଇଯାଏ ମୃତ୍ୟୁ କୋଳେ । )

ଏହି ପରିପ୍ରେକ୍ଷୀରେ ଏ କଥା କହିବା କୌତୁହଳବର୍ଦ୍ଧକ ହେବ ଯେ, ଫରାସୀ ବିପ୍ଳବର ଘୋଷଣା ପରେ ୧୫ ମଇ ୧୭୯୭ ଦିନ ଶହୀଦ୍ ଟିପୁ ସୁଲତାନଙ୍କ ରାଜଧାନୀ—ଶ୍ରୀରଙ୍ଗାପତନମ୍‌ର ପ୍ୟାରେଡ୍ ପଡ଼ିଆରେ କାବେରୀ ନଦୀ କୂଳରେ ପଢ଼ି ଶୁଣାଇ ଦିଆଯାଇଥିଲା । ସମସ୍ତେ ଦେଶର ସ୍ୱାଧୀନତା ପାଇଁ ଜୀବନ ବଳି ଦେବାର ଶପଥ ଗ୍ରହଣ କରିଥିଲେ ଏବଂ ଏକ ସ୍ୱରରେ କହିଥିଲେ ଯେ, ଆମେ ଆମ ଦେଶକୁ ସ୍ୱାଧୀନ କରିବୁ ଅଥବା ଜୀବନ ଦେବୁ । ଫରାସୀ ବିପ୍ଳବ ପରି ବିପ୍ଳବ ଭାରତରେ ସମ୍ଭବ ହୋଇପାରିଲା ନାହିଁ ତଥାପି ଏହି ବିପ୍ଳବର ଆହ୍ୱାନ 'ସ୍ୱାଧୀନତା, ଭାତୃତ୍ୱବୋଧ ଓ ସାମ୍ୟବାଦୀ ଚେତନା" ଆମ ସ୍ୱାଧୀନତା ଆନ୍ଦୋଳନ ମାର୍ଗକୁ ଆଲୋକିତ କରିଦେଲା ।

୧୯୮୫ ଜୁନ୍ ମାସରେ ଆମର ଯୁବ ଓ ଜନପ୍ରିୟ ପ୍ରଧାନ ମନ୍ତ୍ରୀ ଶ୍ରୀ ରାଜୀବ ଗାନ୍ଧୀ, ଫରାସୀ ପ୍ରଧାନମନ୍ତ୍ରୀ Lauren Fabojusଙ୍କ ଦ୍ୱାରା ପ୍ରଦତ୍ତ ନୈଶ ଭୋଜିରେ ଏହି ପ୍ରସିଦ୍ଧ ଐତିହାସିକ ଘଟଣା କଥା ଉଲ୍ଲେଖ କରି କହିଥିଲେ—"ଯଦି ଆମ ନିଜ ଲୋକେ ବିଶ୍ୱାସଘାତକତା କରି ନ ଥାନ୍ତେ, ତେବେ ଫରାସୀ ବିପ୍ଳବ ପରି ବିପ୍ଳବ ଆମ ଦେଶରେ ମଧ୍ୟ ୨୫୦ ବର୍ଷ ପୂର୍ବେ ସଂଘଟିତ ହୋଇ ପାରି ଥାଆନ୍ତା ।"

ଇକ୍‌ବାଲ୍‌ଙ୍କ ମସ୍‌ନବ୍ଧି (କବିତା) ଗୁଚ୍ଛ "ପସ୍ ଚେ ବାୟୁଦ୍ କରଦ୍..." ଯାହା ୧୯୩୬ରେ ତାଙ୍କ ମୃତ୍ୟୁର ୨ ବର୍ଷ ପୂର୍ବରୁ ଛପା ଯାଇଥିଲା—ସେଥିରୁ ଗୋଟିଏ କବିତା ଅଛି, ଯାହାର ନାମ ହେଉଛି—ଅସ୍‌କେ ଚନ୍ଦ୍ ବର୍ ଇଫ୍‌ତରାକେ ହିନ୍ଦୀୟାଁ" (ଭାରତୀୟଙ୍କ ବିଭେଦ ପାଇଁ କେଇ ବିନ୍ଦୁ ଅଶ୍ରୁ) ସେଥିରେ ଇକ୍‌ବାଲ୍ କହୁଛନ୍ତି:—

ଅଏ ହିମାଳୟ ! ଅଏ ଅଟକ୍ ! ଅଏ ରୁଦେ ଗଙ୍ଗ୍
ଜିସ୍ତନ୍ ତା କୈ ଚୁନାଁ ବେ ଆବ୍ ଓ ରଙ୍ଗ୍

ପିର୍ ମର୍ଦାଁ ଅଜ୍ ଫରାସତ୍ ବେ ନସୀବ୍
ନୌଯଓ୍ୱାନାଁ ଅଜ୍ ମୁହବ୍‌ବତ୍ ବେ ନସିବ୍

ଶର୍କ ଓ ଗରବ ଆଜାଦ୍ ଓ ମା ନକ୍ଷତରେ ଗୈର୍
ଖଣ୍ଡେ ମା ସରମାୟା ଏ ଡାମିତରେ ଗୈର୍
ଜନ୍ଦଗାନ୍ନ ବର୍ ମୋସ୍ତଦେ ଦ୍ଦଗବାଁ
ଯାଡେ଼ଦାଁ ମର୍ଗ ଅସ୍ତ୍ର ନୈ ଖାବେ ଗବାଁ

ନେସ୍ତ୍ ଇଁ ମର୍ଗେ କେ ଆମୃଦ୍ ଜ ଅଃସ୍ମାଁ
ଭୁଖ୍ମେଁ ଊ ମି ବାଲଦ୍ ଅଜ୍ ଆମାକେ ଜାଁ
ଶୈଦ୍ ଊ ନ ମୁର୍ଦାସ୍ଥୁ ଖାହେଦ୍ ନ ଗୋର୍
ନ ଏ ହୋଜୁମେ ଦୋସ୍ତାଁ ଅଜ୍ ନଜ୍ଦ ଓ ଦୂର୍

ଜାମାଏ କଣ୍ ଦର୍ ଗମ୍ ଏ ଊ ସ୍ଥକ୍ ନେସ୍ତ୍
ଦୋଜଖେ ଊ ଆଁ ସୂଏ ଅଫ୍ଲାକ୍ ନେସ୍ତ୍
ଦର୍ ହୋଜୁମେ ହଶର୍ ଊ ସା ମଜୋ
ଦସ୍ତ୍ ଦର୍ ଇନ୍ସ୍ରେଜେ ଊ ପିର୍ଦାଏ ଊ

ହର୍କେ ଇଁ ଜା ଦାନା କସ୍ତ୍ ଇଁ ଜା ଦରୁଦ୍
ପେଶ ହକ୍ ଆଁ ବନ୍ଦା ସ ବୂର୍ଦନ୍ ଚେ ସୂଦ୍
ଊମ୍ଚେ କଜ୍ ଆର୍ଜୁ ନେଶେ ନ ଖୂର୍ଦ୍
ନକ୍ଶେ ଭସ ଫିତ୍‌ରତ୍ ଅଜ୍ ଗିଣ୍ଡ ସତୁର୍ ଦ୍

ଏ-ଚବାରେ ତଖତ୍ ଓ ତାଜ୍ ଅଜ୍ ସାନ୍ତଶ ଅସ୍ତ୍
ସଖ୍ତ ଚୁଁ ସଙ୍ଗ୍ ଇଁ ଜ ଜାଜ୍ ଅଜ୍ ସାମର ଅସ୍ତ୍
ଦର୍ ଗୁଜସ୍ତ୍ ଅଜ୍ ହୁକ୍ମେ ଇଁ ସନ୍ଧରେ ମୋବାଁ
କାଫେର ଅଜ୍ କୁଫ୍ରୁ ଓ ଦ୍ଦାଁ ଦାର ଜ ଦ୍ଦାଁ

ହିନ୍ଦୁମାଁ ବା ଯୁକ୍ ଦ୍ଦଗର୍ ଆଡେ଼କ୍ତନ୍ଦ୍
ଫିତ୍‌ନାହାସୁ କୋହନା ବାଜ୍ ଅଙ୍ଗେଖ୍ତନ୍ଦ୍
ତା ଫିରଙ୍ଗି କୈମେ ଅଜ୍ ମଗ୍ରବ୍ ଜମିଁ
ସାଲସ୍ ଆନଦ୍ ଦର୍ ନେଜାଏ କୁଫ୍ର୍ ଓ ଦ୍ଦାଁ ।

କସ୍ ନା ଦାଦା ଜଲ୍‌ଓ୍ୱାଏ ଆବ୍ ଅଜ୍ ସଗବ୍
ଇନ୍‌କଲାବ୍ ! ଅଏ ଇନ୍‌କଲାବ୍ ! ଅଏ ଇନ୍‌କଲାବ୍ ।
( ଭାରତ ଭୂଇଁରେ ଯେତେ ହିନ୍ଦୁ ହିଁଇ, ଅଛ ଯେତେ ମୁସଲମାନ୍
ଆଉ କେତେକାଳ ଜୀବନ କାଟିବ—ରଙ୍ଗହୀନ ତୁଚ୍ଛ ଜୀବନ ।

ସହଜେ ତ ବୃଦ୍ଧ, ଅଛରେ ଯେତେକ ଆଜ କର୍ମ୍ମ ବୁଦ୍ଧିହୀନ
ସହଜେ ଯୁବକ, ଯୌବନ ବା କାହିଁ – ନାହିଁ ପ୍ରେମେ ଜୟଗାନ୍ !
ପ୍ରାଚ୍ୟ ଓ ପାଶ୍ଚାତ୍ୟ କେବେଠୁ ସ୍ୱାଧୀନ, ଆଜ ଆମେ ପରାଧୀନ
ପୁଞ୍ଜି ଆମର ଅଯଥା ବ୍ୟୟିତ, ସତେ ଅବା ନାହିଁ ଧନ !

ନିଜ ହାତ ଆମେ ନିଜେ ବାନ୍ଧିବସି ପରକୁ ହାତ ପାତୁଛେ
ଏ ନୁହେଁ ଆଳସ୍ୟ ବରଂ ପଙ୍ଗୁତ୍ୱ – ମୃତ୍ୟୁ ବରଣ କରିଛେ ।
ଆକାଶୁ ଖସେନି ମୃତ୍ୟୁର ଦୂତ, ସରଗେ ମରଣ ନାହିଁ
ନିଜ ଚେତନାରେ ମୃତ୍ୟୁର ବୀଜ, ଏଡ଼ିବାକୁ ପଥ କାହିଁ ?

ଯେ ଆଳସ୍ୟେ ମରେ କେ ପଚ୍ଛରେ ତାରେ—ସମାଧି କିଏ ବା ତୋଳେ
ଦୂର ବନ୍ଧୁ କିହ ଅବା ପରିଜନ, ଭୁଲନ୍ତି ତାରେ ସକଳେ ।
ତା’ ମରଣେ କେହି ନୟନୁ ଲୋତକ, ଝରାଏ ନାହିଁ ସ୍ୱଜନେ
ଏ ଧରା ତା’ ପାଇଁ ନରକ ସମାନ, ସରଗ ଥାଏ ମଉନେ ।

ସ୍ଥାନ ନାହିଁ ତାର ପ୍ରଳୟ ଭିତରେ—ସବୁର ଠାରୁ ସେ ଭିନ୍ନ
କାଲି ଯେ ପ୍ରଳୟ, ସମ୍ଭାବନାମୟ—ତା’ ପାଇଁ ତାହା ଆସନ୍ନ
ପାପର ବିହନ ଯେ ବୁଣି ଚାଲନ୍ତି, ପାପେ ଭାଗୀଦାର ସେହି
ଏ ନଗଣ୍ୟ ଜନ, ପଶୁର ସମାନ—ଧର୍ମଦଣ୍ଡ ଲୋଡ଼ା ନାହିଁ ।

ଜାତି ପ୍ରାଣେ ଯେବେ ଯନ୍ତ୍ରଣା ନାହିଁ, ସ୍ୱାଧୀନତା ମଧୁ ପାଇଁ
ଆପେ ଲିଭିଯାଏ ଇତିହାସ ବକ୍ଷୁ, ପୃଥିବୀ ରହଇ ଚାହିଁ
ମାଟିର ଆସନ ଅଟେ ସିଂହାସନ—କହୁଥାଏ ବଳବାନ୍
କ୍ଷଣକ ମାତର ସୁଖ-ସିଂହାସନ—ପଥର ଆଗେ ଦର୍ପଣ

ଆପଣଙ୍କର ମୋହ ଅନ୍ଧ ପାଲଟି ଭୁଲିଛନ୍ତି ନିଜର ଧର୍ମ
କିଏ ବା ହିନ୍ଦୁ, କିଏ ମୁସଲମାନ୍ ପାଶୋରିଛନ୍ତି ନିଜ କର୍ମ

ନିଜ ଘର ଫାଟି ଫାଙ୍କ ହୋଇଗଲା—ଭଲଲୋକ କଲା ବଲାତ
ଆମର ବିବାଦ ପଛେ ରହିଗଲା—ଚାଲିଲା ତା' ହାକିମାତ ।

ଜାଲି ବୋଲି ଧାଇଁ ଫସର ମାଟିଲା, ଆଗେ ଧାଏଁ ମଶାଣିକା
ବିନା ବିପ୍ଳବରେ ସ୍ୱାଧୀନତା ସ୍ୱପ୍ନ—ରଙ୍ଗ ପଡ଼ଯାଏ ଫିକା । )

ଇକ୍‌ବାଲ୍‌ଙ୍କ ବିଶ୍ୱାସ ଥିଲା ଯେ, ବିପ୍ଳବ ବ୍ୟତୀତ ସାମ୍ପ୍ରଦାୟିକ ବିଭେଦ ସମାଧାନର ଅନ୍ୟ କୌଣସି ପନ୍ଥା ନାହିଁ । ଏ ବିପ୍ଳବ ରାଜନୈତିକ ହେବା ସଙ୍ଗେ ସଙ୍ଗେ ଆବେଗମୟ ଓ ବୌଦ୍ଧିକ ହେବା ବାଞ୍ଛନୀୟ ।

ଏହା ବ୍ୟତୀତ ତାଙ୍କର ଉର୍ଦ୍ଦୁର ଶେଷ କବିତା ସଙ୍କଳନ "ଜର୍‌ବେ କଲମ୍"ର ଦୁଇଟି କବିତା "ଗିଲ୍" ଏବଂ "ଟୋଆଏ ଉମ୍ମିଦ"ରେ ମଧ୍ୟ ଦେଶର ସ୍ୱାଧୀନତା ପାଇଁ ତାଙ୍କ ପ୍ରାଣ କାନ୍ଦିଛି । ଇକ୍‌ବାଲ୍ ବୁଝୁଥିଲେ ଯେ, ଆନ୍ତର୍ଜାତିକ କ୍ଷେତ୍ରରେ ଭାରତ ଏକ ମୁଖ୍ୟ ଭୂମିକା ଗ୍ରହଣ କରୁ କିନ୍ତୁ ସେ କଥା ଭାରତର ସ୍ୱାଧୀନତା ବ୍ୟତିରେକେ ସମ୍ଭବ ନୁହେଁ । ସେ ନିଜ କବିତା "ଗିଲ୍"ରେ କହୁଛନ୍ତି :—

ମାଲୁମ୍ କିସେ ହିନ୍ଦ୍ କି ତକ୍‌ଦିର୍ କେ ଅବ୍ ତକ୍
ବେଚାରା କିସି ତାଜ୍‌କା ତାବିନ୍ଦା ନଗିଁ ହୈ
ଦେହକାଁ ହୈ କିସି କବ୍‌ର୍‌କା ଉଗ୍‌ଲା ହୁଆ ମୁର୍ଦା
ବୋସିଦା କଫନ୍ ଜିସ୍‌କା ଅଭି ଜେରେ ଜମି ହୈ

ଜାଁ ଭି ଗିର୍‌ଓ୍ୱେ ଗୈର୍ ବଦନ୍ ଭି ଗିର୍‌ଓ୍ୱେ ଗୈର୍
ଅଫ୍‌ସୋସ୍ କେ ବାକି ନ ମକାଁ ହୈ ନ ମକୀଁ ହୈ
ୟୁରୋପ୍ କି ଗୋଲାମୀ ପେ ରେଜାମନ୍ଦ୍ ହୁଆ ତୁ
* ମୁଝ୍‌କୋ ତୋ ଗିଲା ତୁଝ୍ ସେ ହୈ ୟୁରୋପ୍ ସେ ନହିଁ ହୈ ।

---

* ଇକ୍‌ବାଲ୍—ନୟି ତଶ୍‌କିଲ୍—ପ୍ରଫେସର୍ ଅଜିଜ୍ ଅହ୍ମେଦ

(ଝିଅଟେକେ ଯେ ଦେଶ ମୁକୁଟ ପରି ଏ—ଇଂରେଜ ଜାତି ମୁକୁଟେ
କେତେ ଦିନ ଆଉ ପରାଧୀନ ହୋଇ--ସହିବ ଦୁଃଖ, ସଂକଟେ !

ଚିହ୍ନି ହୁଏ ନାହିଁ କୃଷକ ଭାଇଙ୍କୁ--ବଡ଼ା ତା' ଶକ୍ତି ସାମର୍ଥ୍ୟ
ସତେ ବା ସମାଧି ଗରଭୁ ଉଠିଛୁ--ଜୀବନ ହୋଇଛୁ ବ୍ୟର୍ଥ ।

ଘର ନାହିଁ ଆଜ, ମୁରବୀ ବି ନାହିଁ --ସବୁଠି ବିରସ ଭାବ
ଦେହ, ମନ, ପ୍ରାଣ ଗୋଲାମ ସାଜଛୁ—ଇଂରେଜୀ ପରିଭବ ।

ୟୁରୋପକୁ କାହିଁ ଦୋଷ ଦେବି ମୁହିଁ ସିଏ ତ ବଣିକ ଜାତି
ଗୋଲାମୀକୁ ଭୁମ୍ଭେ ବରଣ କରିଲ--ତରିଲ ଗଲା ତୋ ଖ୍ୟାତି ।)

ହିନ୍ଦୁସ୍ଥାନୀ କବିତାଟି ହେଉଛି ଶୋଆଏ ଉମ୍ମିଦ୍ "(ଆଶାର କିରଣ)" ଯାହାର ସାରମର୍ମ ମଧ୍ୟ ଭାରତବର୍ଷ । ସେତେବେଳେ ମଧ୍ୟ ଇକ୍‌ବାଲ୍ ଭାବୁଥିଲେ ଯେ, ଭାରତର ଭୌଗଳିକ ଏକତା ଅବିଭାଜ୍ୟ, ସେପରି ଜୀବନର ଅନ୍ୟାନ୍ୟ ମୌଳିକ ମୂଲ୍ୟବୋଧ ବି ଅବିଭାଜ୍ୟ । *

କେ. ଜି. ସୟୈଦିନ୍‌ଙ୍କ ଭାଷାରେ "ପରସ୍ପର ବିଭେଦ ଯୋଗୁ ଆମର ଜାତୀୟ ଜୀବନ ବିପନ୍ନ ହୋଇଥିଲା ବୋଲି ଯେଉଁ କବିଙ୍କ ପ୍ରାଣ କାନ୍ଦୁଥିଲା, ତାଙ୍କୁ ଦେଶପ୍ରେମୀ ନ ଥିଲେ ବୋଲି କହିବା କଣ ସମୀଚୀନ ? " **

ହିନ୍ଦୁସ୍ଥାନୀ କବିତାଟିରେ କବି ନିଜ ମାତୃଭୂମିରେ ଆଚ୍ଛାଦିତ ଅନ୍ଧକାରକୁ ଦୂର କରିବାର ଦୃଢ଼ ସଂକଳ୍ପ ପ୍ରକାଶ କରିଛନ୍ତି :—

---

* ରୁହେ ଇକ୍‌ବାଲ୍—ୟୁସୁଫ୍ ହୁସେନ୍ ଖାନ୍—ପୃ. ୨୩୩

** K. G. Saiyidin – Progressive trends in Iqbal's thoughts – Iqbal As A Thinker Page. 60

# ଶୋଆଏ-ଉମ୍ମିଦ୍ (ଆଶାର କରଣ)

ସୁରଜ୍ ନେ ଦିଆ ଆପ୍‌ନ ଶୋଆଓଁ କୋ ଏ ପୈଗାମ୍
ଦୁନିଆ ହୈ ଅଜବ୍ ଚିଜ୍ କଭି ସୁବ୍‌ହ କଭି ଶାମ୍
ମୁଦ୍‌ଦତ୍ ସେ ତୁମ୍ ଆୱାରା ହୋ ପହନାଏ ଫିଜା ମେ
ବଢ଼୍‌ତି ହି ଚଲି ଜାତି ହୈ ବେ ମୁହରଏ ଅୟ୍ୟାମ୍

ହେ ରେତ୍ କେ ଜର୍‌ରେ ପେ ଚମକ୍‌ନେ ମେ ହୈ ରାହତ୍
ହେ ମିଶ୍‌ଲେ ସବା ତୋ ଫେ ଗୁଲ୍ ଓ ଲାଲା ମେ ଆରାମ୍ !
ଫିର୍ ମେର ତଜଲି କଦାଏ ଦିଲ୍ ମେ ସମା ଯା
ଛୋଡ଼ୋ ଚମନସ୍ତାନ ଓ ବୟାବାନ୍ ଓ ଦର୍ ଓ ବାମ୍

ଆଫାକ୍ କେ ହର୍ ଗୋଶେ ସେ ଉଠ୍‌ଠି ହୈ ଶୋଆଏଁ
ବଛ୍‌ଡ଼େ ହୁଏ ଖୁର୍‌ଶିଦ୍ ସେ ହୋଂତି ହୈଁ ହମ୍ ଆଗୋଶ୍
ଏକ୍ ଶୋର୍ ହୈ ମଗ୍‌ରବ୍ ମେ ଉଜାଲା ନହୀଁ ମୁମ୍‌କିନ୍
ଅଫରଙ୍ଗ୍ ମଶିନୋଁ କେ ଧୁଏଁ ସେ ହୈ ସିୟାହପୋଶ୍

ମଶ୍‌ରିକ୍ ନହୀଁ ଗୋ ଲଜ୍ଜତେ ନଜ୍ଜାରା ସେ ମହରୁମ୍
ଲେକିନ୍ ସିଫତେ ଆଲମେ ଲାହୁତ୍ ହୈ ଖାମୁଶ୍
ଫିର୍ ହମ୍‌କୋ ଉସି ସିନାଏ ରୌଶନ୍ ମେ ଛୁପାଲେ
ଏ ମେହରେ ଯହାଁ ତାବ୍ ନ କର୍ ହମ୍ କୋ ଫରାମୋଶ୍

ଏକ୍ ଶୋଖ୍ କରନ୍, ଶୋଖ୍ ମିଶାଲେ ନିଗାହେ ହୁର୍
ଆରାମ୍ ସେ ଫାରିକ୍ ସିଫତେ ଯୌହରେ ସିମାବ୍
ବୋଲି କେ ମୁଝେ ରୁଖ୍‌ସତେ ତନ୍‌ୱିର୍ ଅତା ହୋ
ଜବ୍ ତକ୍ କେ ନ ହୋ ମଶ୍‌ରିକ୍ କା ଏକ୍ ଜର୍‌ରା ଜହାଁତାବ୍

ଗ୍ଲେଡ଼ୋଙ୍କି ନ ମୈ ହିନ୍ଦ୍ କ ତାରିକ୍ ଫିଜାକୋ
ଜବ୍ ତକ୍ ନ ଉଠେଁ ଖ୍ବାବ୍‌ସେ ମର୍ଦାନେ ଗରାଁ ଖାବ୍
ଖାଓ୍ୱର୍ କ ଉମିଦୋଁ କା ଏହି ଖାକ୍ ହୈ ମର୍କଜ୍
ଇକ୍‌ବାଲ୍ କେ ଅଶ୍‌କୋଁ ସେ ଏହି ଖାକ୍ ହୈ ସଏରାବ୍

ଚଶ୍‌ମେ ମହଓ ପରଓ୍ୱିଁ ହୈ ଇସି ଖ୍ୟାକ୍ ସେ ରୌଶନ୍
ଏ ଖାକ୍ କେ ହୈ ଯିସ୍‌କା ଖଜଫ୍ ରେଜା ଦୂର୍‌ରେ ନାବ୍ ।
ଇସ୍ ଖାକ୍ ସେ ଉଠେ ହେଁ ଓ ଗଓ୍ୱାସେ ମଆନି
ଜିନ୍ କେ ଲିଏ ହର୍ ବହରେ ପୁର୍ ଆସୋବ୍ ହୈ ପାୟାବ୍

ଯିସ୍ ସାଜ୍‌କେ ନଗ୍‌ମୋଁ ସେ ହରାରତ୍ ଥି ଦିଲୋଁ ମେଁ
ମହଫିଲ୍ କା ଓହି ସାଜ୍ ହୈ ବେଗାନଏ ମିଜ୍‌ରାବ୍
ବୁତ୍ ଖାନେ କେ ଦରଓ୍ୱାଜେ ପେ ସୋତା ହୈ ବରହମନ୍
ତକ୍‌ଦିର୍ କୋ ରୋତା ହୈ ମୂସଲ୍‌ମାଁ ତହେ ମେହ୍ରାବ୍

ମଶ୍‌ରିକ୍ ସେ ହୋ ବେଜାର୍ ନ ମଗ୍‌ରିବ୍ ସେ ହଜର୍ କର୍
ଫିତ୍‌ରତ୍ କା ଇଶାରା ହୈ କେ ହର୍ ଶବ୍ କୋ ସହର୍ କର୍ ।

## ଆଶାର କିରଣ

( ୧ )

(ସୂର୍ଯ୍ୟ ଦିନେ ନିଜ କିରଣରେ ଦେଲା ଏକ ନୂତନ ଖବର ।
ବିଚିତ୍ର ପୃଥିବୀ ଏହି – ଲାଗିଅଛି ଖେଳ ଯହିଁ ସଞ୍ଜ, ସକାଳର
ଅନନ୍ତ ଶୂନ୍ୟରେ ତୁମେ ଭ୍ରମୁଅଛ କାଳ କାଳ ଧରି
ପୃଥିବୀରେ ଏତେ ଭ୍ରଷ୍ଟାଗୃହ--ଦେଖୁଅଛ ଅବା କେଉଁ ଘର !
ତଥାପି ତ ସୁଖ ନାହିଁ, ବାଲିକଣା ଆଲୋକିତ କରି
ଫୁଲର ପାଖୁଡ଼ା ଛୁଇଁ ସମୀରଣସମ--ଦୁଃଖେ ଯାଅ ସରି
ତେଣୁ ତୁମେ ଫେରି ଆସ, ମୋ ହୃଦୟେ ଆଣିନିଅ-ଆଲୋକର ବନ୍ୟା
ଛାଡ଼ି ସେ ସହର ଲୋଭ, ମରୁଭୂମି କ୍ଲେଶ, ଉଦ୍ୟାନର ଯେତେ
ପୁଷ୍ପ କନ୍ୟା ।)

( ୨ )

ପୃଥିବୀର କୋଣ୍ରୁ, ଅନୁକୋଣୁ—ବଦାଫ୍ରୀ କରଣ
ଲେଉଟାଣି ପଶିଗଲେ, ସୂର୍ଯ୍ୟର ଶରଣ
କହିଲେ ସେମାନେ--ପାଶ୍ଚାତ୍ୟ ଦେଶରେ ଦେଖିଲୁଣି ନାହିଁ ଯେ ଆଲୋକ
କଳରୁ ବାହାରେ ଧୂଆଁ—ଧୂମାୟିତ ସେ ଭୂଖଣ୍ଡ ଯାକ ।
ଯଦ୍ୟପି ରହିଛି ପ୍ରାଚ୍ୟେ, ଅନ୍ତର୍ଦୃଷ୍ଟି, ଆତ୍ମ ସମୀକ୍ଷଣ
ଆଖିବୁଜ ପଡ଼ିଅଛି ସେ ତ, ମୃତ ପ୍ରାଏ ସତେ କ ମରଣ
ହେ ସୂର୍ଯ୍ୟ ! ଆମକୁ ତୁ କେବେହେଲେ ପାଶୋରିବୁ ନାହିଁ ?
ତୋ ଅନନ୍ତ ଆଲୋକିତ ବକ୍ଷେ, ଆଶ୍ରା ଦେ—ଅନ୍ୟ ଗତି ନାହିଁ ।

(୩)

(ଚଞ୍ଚଳ କରଣ ଏକ - ଡ଼ଳ ଡ଼ଳ ଭଙ୍ଗୀତାର, ଅପ୍‌ସରୀ ନୟନ
ସୂର୍ଯ୍ୟଦେହୁ ଖସିଆସି—ଚଞ୍ଚଳ ଗତି ତା—ପାରଦ ସମାନ
"ଆଲୋକ ଦେବାର ମୋତେ", ଆଜ୍ଞା ହେଉ--କହିଲା ସଧୀରେ
ଆଲୋକିତ କରିବ ମୁଁ କୋଣ, ଅନୁକୋଣ--ପ୍ରାଚ୍ୟ ଭୂଖଣ୍ଡରେ
ଭାରତରେ ଯେତେ ଅନ୍ଧକାର, ହଟାଇବ--ଗୁଡ଼ିବନ କେବେ
ଯେ ଯାଏ ସ୍ୱପ୍ନେ ଆଚ୍ଛନ୍ନ, ଭାରତର ତନ୍ଦ୍ରାମଗ୍ନ ଲୋକେ ।
ଏ ଭୂଇଁ ଭାରତ ଭୂଇଁ, କେନ୍ଦ୍ରସ୍ଥଳୀ ପ୍ରାଚ୍ୟ ଭୂଖଣ୍ଡର
ତା' ପ୍ରଗତି ପାଇଁ ଇକ୍‌ବାଲ୍‌--ଶୁଖେନାହିଁ ନେତ୍ରୁ ଅଶ୍ରୁ ଝର ।

ଭାରତ ମାଟିରୁ ଉପାଦାନ ନେଇ ଚନ୍ଦ୍ରତାରା ଆଲୋକିତ
ଏ ଦେଶର ଗୋଡ଼, ଏ ଦେଶର ମାଟି--ମଣି, ମୁକୁତା ସରିତ ।
କେତେ କେତେ ଜ୍ଞାନୀଗୁଣି, ଜନ୍ମିଛନ୍ତି ଏ ଦେଶ ମାଟିରେ
ଜ୍ଞାନର ଆଲୋକେ ତାଙ୍କ ସାଗରଠା ଭରିଛି--ଧନ୍ୟ ଏ ମର ସଂସାରେ ।
ତାଙ୍କ ମନେ ତୋଳୁଥିଲା ଯେଉଁ ବୀଣା, ନୂଆ ସୁର—ଅପୂର୍ବ ଝଙ୍କାର
ସେହି ବୀଣା ନିର୍ଜୀବ, ନିର୍ବାକ--ଭାଗ୍ୟହୀନା ସତେ ମୃତଦାର !
ବ୍ରାହ୍ମଣ ଶୋଇଛି ଆଜି ମନ୍ଦିରର ଦ୍ୱାରେ—ପୂଜାପାଠ ବିନା
କାନ୍ଦଇ ମୁସଲମାନ ଆଜି, ନିଜ ଭାଗ୍ୟ ନିନ୍ଦୁଅଛି ଦିନା !
ତୁମେ ତେଣୁ ପ୍ରାଚ୍ୟଠାରୁ ହୁଅନା ହତାଶ, ତେଜନାହିଁ ପାଶ୍ଚାତ୍ୟର ଆଶ
ପ୍ରକୃତି ନୟନ ମାନ, ପ୍ରତ୍ୟେକ ରଜନୀକୁ---କର ତୁମେ ସୁନ୍ଦର ପ୍ରତ୍ୟୁଷ ।

ଇକ୍‌ବାଲ୍‌ଙ୍କ ଦେଶପ୍ରେମର ଏହାଠାରୁ ବଳି ଆଉ କି ନିଦର୍ଶନ ଥାଇ-ପାରେ ? ସତ କହିବାକୁ ଗଲେ ଶେଷ ଜୀବନରେ ଭାରତ ବର୍ଷ ପ୍ରତି ତାଙ୍କର ମମତା ବିଶେଷ ପ୍ରଗାଢ଼ ଥିଲା । ତାଙ୍କର ଶେଷ କବିତା ସଂଚୟନ "ଅର୍‌ମୁଗାନେ ହେଜାଜ୍"ରେ ମଧ୍ୟ ଦେଶପ୍ରେମ ଓ ସ୍ୱଦେଶକୁ ସ୍ୱାଧୀନଭାବେ ଦେଖିବାର ସଂକଳ୍ପ ଓ ଆକାଂକ୍ଷାର ଗଭୀର ପରିପ୍ରକାଶ ପରିଲକ୍ଷିତ । "ଅର୍‌ମୁଗାନେ ହେଜାଜ" ତାଙ୍କର ପରିପ୍ରକାଶ ହିଁ .—

ଶବେ ହିନ୍ଦୀ ଗୋଲ୍‌ମାଁ ରା ସହର୍ ନେସ୍ତ୍
ବା ଇଁ ଖାକ୍ ଆଫ୍‌ତାବେ ରା ଗୁଜର୍ ନେସ୍ତ୍
(ତନ୍ଦ୍ରାମଗ୍ନ ଭାରତୀୟ, ଏବେ ବି ତ ପରାଧୀନ – କାଳରାତି ପାହିବ କିପରି
ସତେ ଅବା ନିଷ୍ଠୁର ବିଧାତା, ଏ ଭୂଖଣ୍ଡ ପାଇଁ – ସୂର୍ଯ୍ୟରଶ୍ମି ପଡ଼େ ନାହିଁ ଝରି)

ଉପରୋକ୍ତ ପଦ୍ୟଖଣ୍ଡଟି, ସ୍ୱାଧୀନତା ପାଇଁ ଇକ୍‌ବାଲ୍‌ଙ୍କ ହୃଦୟ ବେଦନାର ଏକ ଗଭୀର ଓ ମାର୍ମିକ ଦୃଷ୍ଟାନ୍ତ କହିଲେ ଅତ୍ୟୁକ୍ତି ହେବନାହିଁ ।

ନିଜ ମୃତ୍ୟୁର ମାତ୍ର ୫ ସପ୍ତାହ ପୂର୍ବରୁ—ମାର୍ଚ୍ଚ ୧୯୩୮ରେ ଇକ୍‌ବାଲ୍ ମୌଲାନା ହୁସେନ୍ ଅହେମ୍ମଦ୍ ମଦନିଙ୍କ ସହିତ ଜାତୀୟତା ସଂପର୍କରେ ତର୍କ ସମୟରେ ନିଜକୁ 'ଭାରତୀୟ' ବୋଲି କହି ଜାତୀୟତା ସଂପର୍କରେ ନିଜ ଦୃଷ୍ଟି-ଭଙ୍ଗୀ ନିମ୍ନୋକ୍ତ ରୂପେ ପ୍ରକାଶ କରିଥିଲେ :—"ହଜାର ହଜାର ବର୍ଷ ହେଲା ଜାତି ଦେଶ ଉପରେ ଓ ଦେଶ ଜାତି ଉପରେ ନିର୍ଭର କରି ଆସୁଛି । ଆମ ସବୁରିଙ୍କ ପରିଚୟ—ଭାରତୀୟ ଏହିପରି ଚିନା, ଆରବୀ, ଜାପାନ ଓ ଇରାନୀ ସମସ୍ତେ ନିଜ ନିଜ ମାତୃଭୂମି ଯୋଗୁ ହିଁ ପରିଚିତ । ମାତୃଭୂମିର କଳ୍ପନା ହେଉଛି ଏକ ଭୌଗୋଳିକ ସଂଜ୍ଞା ମାତ୍ର, ଆଉ ଏକଥା ଇସ୍‌ଲାମ୍‌ର ମଧ୍ୟ ବିରୁଦ୍ଧାଚରଣ କରେ ନାହିଁ । ଅନ୍ୟ ପକ୍ଷରେ କହିବାକୁ ଗଲେ, ପ୍ରତ୍ୟେକ ଲୋକ ନିଜର ଜନ୍ମଭୂମିକୁ ପ୍ରେମ କରେ ଏବଂ ତା ପାଇଁ ନିଜର ଯଥାଶକ୍ତି ଆତ୍ମବଳୀ ଦେବାକୁ ପ୍ରସ୍ତୁତ ଥାଏ * ।

* The poet of the East—Abdulla Anwar Beg
ମିଲ୍ଲତ୍ ଅଉର୍ ଓ୍ବତନ—ମୌଲନ୍ ହୋସେନ୍ ଅହେମଦ୍ ମଦନି ଅଓର ଅଲ୍ଲାମା ଇକ୍‌ବାଲ୍‌କି ବହସ୍ । ପୃ.୧୯୮.

# ଭାରତୀୟ ଚିନ୍ତା ଓ ଦର୍ଶନର ପ୍ରଭାବ

## ଭାରତୀୟ ଦର୍ଶନ ଓ ଇସ୍ଲାମ୍‌ରେ ଆଧ୍ୟାତ୍ମ୍ୟ ଶାସ୍ତ୍ରର ଅଧ୍ୟୟନ

ଭାରତୀୟ ସାହିତ୍ୟରେ ଇକ୍‌ବାଲ୍ ଜଣେ ଅନନ୍ୟସାଧାରଣ ବ୍ୟକ୍ତି। ସେ କେବଳ ପ୍ରସିଦ୍ଧ କବି ନୁହଁନ୍ତି, ପ୍ରସିଦ୍ଧ ଚିନ୍ତାଶୀଳ ବ୍ୟକ୍ତି ରୂପେ ମଧ୍ୟ ପରିଗଣିତ। ପାଶ୍ଚାତ୍ୟ ଦର୍ଶନରେ ତାଙ୍କର ଗଭୀର ପ୍ରବେଶ ଥିଲା। ସେ ମଧ୍ୟ ମୁସଲମାନ ଚିନ୍ତାଶୀଳ ବ୍ୟକ୍ତିମାନଙ୍କର ଦର୍ଶନ ସମ୍ପର୍କିତ ଲେଖାଗୁଡ଼ିକର ଉତ୍ତମ ଅଧ୍ୟୟନ କରିଥିଲେ। ଏତଦ୍‌ବ୍ୟତୀତ ସେ ଭାରତୀୟ ସନ୍ଥ ଓ ପଣ୍ଡିତ-ମାନଙ୍କ ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇଥିଲେ। ସ୍ୱରଚିତ ପ୍ରବନ୍ଧ "ଅବ୍‌ଦୁଲ୍ କରିମ୍ ଅଲ୍‌ଜିଲିଙ୍କର ଏକେଶ୍ୱରବାଦ"ରେ ସେ କହନ୍ତି * —

ଆମେ ଗଭୀର ଦାର୍ଶନିକ ଚେତନାରେ ହିନ୍ଦୁ ଧର୍ମ ଦର୍ଶନର ସୂକ୍ଷ୍ମ ଦର୍ଶିତାକୁ ସ୍ୱୀକାର କରୁ। × × × × ଇସ୍‌ଲାମ୍ ଧର୍ମର ଜନ୍ମ ପରେ ପରେ ଆରବୀୟମାନେ ଯୁଦ୍ଧରେ ମାତି ରହିଲେ, ଯାହା ଫଳରେ ସେମାନେ ବିଜ୍ଞାନ ଓ ଦର୍ଶନ କ୍ଷେତ୍ରରେ ଅଗ୍ରଗତି କରିବାର ଅବକାଶ ପାଇଲେ ନାହିଁ। ତେଣୁ ସେମାନେ କପିଳ ** । *** ବା ଶଙ୍କରାଚାର୍ଯ୍ୟଙ୍କ ପରି ବ୍ୟକ୍ତିତ୍ୱର ଜନ୍ମ ଦେଇ ପାରି ନ ଥିଲେ ବା ଦେଇ ପାରି ନ ଥାନ୍ତେ।"

ଅବ୍‌ଦୁଲ୍ କରିମ୍ ବିନ୍ ଅଲ୍‌ଜିଲି (ଜନ୍ମ ପ୍ରାୟ ୭୮୮ ହିଜିରି/୧୩୬୫-୬୬ ଖ୍ରୀଷ୍ଟାବ୍ଦ, ମୃତ୍ୟୁ ପ୍ରାୟ ୮୧୧ ବା ୮୨୦ ହିଜିରି/୧୪୦୮-୧୪୧୭ ଖ୍ରୀଷ୍ଟାବ୍ଦ

---

* Thoughts and Reflections of Iqbal : Syed Abdul Wahid - Page 4—5

** କପିଳ, ପୁରାତନ ଯୁଗର ଜଣେ ବରିଷ୍ଠ ଋଷି ଏବଂ ସାଙ୍ଖ୍ୟ ଦର୍ଶନର ପ୍ରତିଷ୍ଠାତା। ଆଜିକାଲି ତାଙ୍କର ପୁସ୍ତକ ଦୁର୍ଲଭ।

*** ଶଙ୍କରାଚାର୍ଯ୍ୟ (ଖ୍ରୀ. ୭୮୮—୮୨୦) ଅଦ୍ୱୈତ ବେଦାନ୍ତର ପ୍ରବକ୍ତା ଏବଂ ବ୍ରହ୍ମ-ସୂତ୍ରର ଟୀକାକାର।

ମଧ୍ୟରେ) ସେ ବାଗ୍‌ଦାଦ୍‌ବାସୀ ଏବଂ ହଜରତ୍ ଅବ୍‌ଦୁଲ୍ କାଦର୍ ଜିଲାନିଙ୍କ ଝିଅଙ୍କ ଔରସରୁ ଜନ୍ମଗ୍ରହଣ କରିଥିଲେ । ତେଣୁ ତାଙ୍କୁ 'ଅଲ୍‌ଜିଲି' କୁହାଯାଉଥିଲା । ସେ ଶେଖ୍ ଶରଫ୍‌ଉଦ୍ଦିନ୍‌ଅଲ୍—ଜବରତିଙ୍କ ଶିଷ୍ୟ ଥିଲେ ଏବଂ ତାଙ୍କ ସହିତ ୟେମେନ୍‌ରେ କିଛିଦିନ ଅବସ୍ଥାନ କରିଥିଲେ । ସେ ଭାରତ ଭ୍ରମଣରେ ମଧ୍ୟ ଆସିଥିଲେ । ତାଙ୍କର ଅଦ୍ୟାବଧି ୨୦ଟି ଲେଖା ମିଳିଅଛି ଏବଂ ବାକି ୨୦ଟି ନଷ୍ଟ ହୋଇଯାଇଛି । ଇକ୍‌ବାଲ୍ ଅଲ୍‌ଜିଲିଙ୍କ ଲେଖା 'ଅଲ୍ ଇନ୍‌ସାନ୍—ଅଲ୍ କାମିଲ୍' (ପରିପୂର୍ଣ୍ଣ ମାନବ) ପ୍ରସଙ୍ଗରେ କହନ୍ତି :—

ଅଲ୍‌ଜିଲ୍‌ଙ୍କ ବିଶ୍ୱାସର ମୂଳ ଉତ୍ସ ହେଉଛି, ଶେଖ୍ ମୋହିଉଦ୍ଦିନ୍ ଇବ୍‌ନେ ଆରବୀଙ୍କ ପ୍ରଦତ୍ତ ଶିକ୍ଷା । ଏହି ଦୁଇଜଣଙ୍କ ମଧ୍ୟରେ ପ୍ରଭେଦ ହେଉଛି କେବଳ ବ୍ୟାଖ୍ୟାନ ବା ବ୍ୟକ୍ତିଗତ ଦୃଷ୍ଟିଭଙ୍ଗୀର ଯେଉଁ କଥା ଅଲ୍‌ଜିଲି ମଧ୍ୟ ସ୍ୱୀକାର କରିଛନ୍ତି । ତାଙ୍କ ଚିନ୍ତାର ମୂଳମନ୍ତ୍ର ହେଲା ଅଦ୍ୱୈତବାଦ, ଅର୍ଥାତ୍ ବିଶ୍ୱ ହେଉଛି ବାସ୍ତବତାର ପ୍ରତିଛବି ଏବଂ ଭଗବାନଙ୍କର ଶକ୍ତି ଅସୀମ । ବିଶ୍ୱର ପ୍ରତ୍ୟେକ ବସ୍ତୁରେ ଈଶ୍ୱରଙ୍କସତ୍ତା ନିହିତ । ବିଶ୍ୱକୁ ଅଲ୍‌ଜିଲି ଏକ ବରଫ ଖଣ୍ଡ ସହିତ ତୁଳନା କରିଛନ୍ତି ଏବଂ ବିଶ୍ଳେଷଣ କରିଛନ୍ତି ଯେ, ଯେମିତି ବରଫରେ ପାଣି ବନ୍ଦୀ, ସେହିପରି ବାସ୍ତବତା ମଧ୍ୟ ଦୃଶ୍ୟାବଳୀ ଦ୍ୱାରା ଆଚ୍ଛନ୍ନ । ପାଣି ଯେପରି ବରଫ ହୋଇପାରେ ଓ ବରଫ, ପାଣି ହୋଇପାରେ, ସେହିପରି ସୁଫୀର ହୃଦୟ ଚିରନ୍ତନ ଆଲୋକରେ ଦେଦୀପ୍ୟମାନ ।

କିନ୍ତୁ ବାସ୍ତବତା ପାଇଁ ତାଙ୍କ ଦ୍ୱାରା ବ୍ୟବହୃତ 'ବରଫ' ଉପମା ଅଦ୍ୱୈତବାଦର ପୂର୍ଣ୍ଣ ଧାରଣା ଦିଏ ନାହିଁ । ପାଣି ଯେପରି ବରଫରେ ପରିଣତ ହୁଏ ବାସ୍ତବିକତା ସେପରି ବିଶ୍ୱରେ ପରିଣତ ହୁଏ ନାହିଁ । ଭଗବାନ୍ ହିଁ ସବୁ ଉପମାର ଊର୍ଦ୍ଧ୍ୱରେ । ଅଲ୍ ଜିଲିଙ୍କର ପ୍ରସିଦ୍ଧ ଲେଖା । ଇନ୍‌ସାନ୍-ଅଲ୍-କାମିଲ୍', ଯାହା ମରକକୋଠାରୁ ଇଣ୍ଡୋନେସିଆ ପର୍ଯ୍ୟନ୍ତ ଯୋଗିଙ୍କଉପରେ ଗଭୀର ପ୍ରଭାବ ପକାଇ ଥିଲା, ତାହାଇବ୍‌ନେ ଆରବୀଙ୍କ ଆଧ୍ୟାତ୍ମବାଦ ଏବଂ ବିଶେଷ କରି ସମଗ୍ର ଆଧ୍ୟାତ୍ମବାଦ ଉପରେ ଲିଖିତ ସମସ୍ତ ପୁସ୍ତକ ମଧ୍ୟରେ ସର୍ବପ୍ରଥମ । ଏହି ଲେଖାରେ ଅଲ୍‌ଜିଲି ବାସ୍ତବତାର ବ୍ୟାପ୍ତି, ଯୋଗୀର ପ୍ରତ୍ୟକ୍ଷାବବୋଧର ବିଭିନ୍ନ ସୋପାନ, ବିଭିନ୍ନ ଧର୍ମର ମତ, ମଣିଷର ଆଧ୍ୟାତ୍ମିକ ଶକ୍ତି ଏବଂ ମୃତ୍ୟୁ ପରେ ଜୀବନ କଥା ଅଲୋଚନା କରିଛନ୍ତି ।

ଇକ୍‌ବାଲ୍ ଦର୍ଶନ ଶାସ୍ତ୍ରର ଛାତ୍ର ଥିଲେ, ତେଣୁ ସେ ଭାରତୀୟ ଦର୍ଶନର ପୁଙ୍ଖାନୁପୁଙ୍ଖ ଅଧ୍ୟୟନ କରିଥିଲେ । ବିଶେଷ କରି ଯେତେବେଳେ ସେ ନିଜର ସନ୍ଦର୍ଭ "ପାରସ୍ୟରେ ଆଧ୍ୟାତ୍ମିକ ବାଦର ବିକାଶ" ଉପରେ ଗବେଷଣା କରୁଥିଲେ, ସେତେବେଳେ ସେ ବେଦାନ୍ତ ଓ ଉପନିଷଦରେ ଭାରତୀୟ ଚିନ୍ତନର ଜଟିଳତା ମଧ୍ୟକୁ ପ୍ରବେଶ କରିବାର ଯେ ଅବକାଶ ପାଇଥିବେ, ତାହା ତାଙ୍କ ସନ୍ଦର୍ଭ ପାଠ କଲେ ସ୍ପଷ୍ଟ ହୁଏ ।

ମାମି * ବିଷୟରେ ଇକ୍‌ବାଲ୍ କହନ୍ତି :—

ହିନ୍ଦୁ ଦାର୍ଶନିକ କପିଳଙ୍କ ସହିତ ମାମିର ଯଥେଷ୍ଟ ସାମଞ୍ଜସ୍ୟ ରହିଛି । କପିଳ, ବ୍ରହ୍ମାଣ୍ଡର ସୃଷ୍ଟିକୁ ତିନୋଟି ଗୁଣର ମତବାଦ ବୋଲି ସୂଚାଇଛନ୍ତି । ଅର୍ଥାତ୍ ସତ୍ତ୍ୱ (ମଙ୍ଗଳ), ତମସ୍ (ଅନ୍ଧକାର) ଏବଂ ରଜସ୍ ( ଉପଲବ୍ଧି ବା ଅନୁରାଗ) ଗୁଣ ମିଶି ପ୍ରକୃତି ସୃଷ୍ଟି କରନ୍ତି । ସେ ଆହୁରି କହନ୍ତି ଯେ ବିଭେଦ ହେଉଛି ସମସ୍ୟାର ଅନେକ ସମାଧାନ ମଧ୍ୟରୁ ଗୋଟିଏ, ଯାହାକୁ ବେଦାନ୍ତବାଦୀମାନେ "ମାୟା" ଦ୍ୱାରା ସମାଧାନ କରନ୍ତି ଏବଂ Leibnitz ଗୋଟିଏ ଯୁଗପରେ ତାହାକୁ ନିଜର ଦୃଷ୍ଟିକ୍ଷେପର ଅଭେଦତ୍ୱ (Identity of Indiscernibles) ଦ୍ୱାରା ବ୍ୟାଖ୍ୟା କରିଛନ୍ତି ।

ପୁନଶ୍ଚ ଅଲ୍ ଜିଲଙ୍କ ଭଗବତ୍ ନିର୍ଯ୍ୟାସ, ପବିତ୍ର ଚିନ୍ତା ଏବଂ ଭଗବତ୍ ନାମ ଓ ନୈସର୍ଗିକ ଗୁଣର ମାତ୍ରାଗୁଡ଼ିକ ବ୍ୟାଖ୍ୟା କରିବାକୁ ଯାଇ ଇକ୍‌ବାଲ୍ କହନ୍ତି,—"···ଏଥର ଗୁଣର ପ୍ରକୃତି କଥା ଚିନ୍ତା କରିବା ଦରକାର"** ଏହି ଚିତ୍ତାକର୍ଷକ ବିଷୟବସ୍ତୁ ଉପରେ ତାଙ୍କର ମତାମତ ବେଶ୍ ଗୁରୁତ୍ୱପୂର୍ଣ୍ଣ । କାରଣ ଏହିଠାରେ ହିଁ ଏ ମତଟି ହିନ୍ଦୁ ମାୟାବାଦରୁ ମୁଖ୍ୟତଃ ପୃଥକ୍ ହୋଇଯାଏ । ଗୁଣକୁ ସେ କର୍ମ ସାଧିକାରୀ ରୂପେ ନାମିତ କରନ୍ତି ; ଯାହାଦ୍ୱାରା ଆମେ ବସ୍ତୁର ପ୍ରକୃତ ଅବସ୍ଥାର ଜ୍ଞାନ ଲାଭ କରୁ । ଅନ୍ୟ ଏକ ସ୍ଥାନରେ ସେ କହନ୍ତି ଯେ,

* ମାମି—ଜଣେ ମୁସଲମାନ ଦାର୍ଶନିକ ଜନ୍ମ ୭୬୭ A. H., ମୃତ୍ୟୁ ୮୧୧ A.H, Insanal Kamilର ଲେଖକ ।

** ପାରସ୍ୟରେ ଆଧ୍ୟାତ୍ମବାଦର ବିକାଶ ପୃ. ୧୧୯-୧୨୦

ମୌଳିକ ବାସ୍ତବତାଠାରୁ ଗୁଣର ପାର୍ଥକ୍ୟ କେବଳ ଦୃଶ୍ୟମାନ ସ୍ତରରେ ହିଁ ସମର୍ଥନୀୟ, କାରଣ ଏଠାରେ ପ୍ରତ୍ୟେକ ଗୁଣ ବାସ୍ତବତାର ଭିନ୍ନ ରୂପ ପରି ଧରାଯାଏ, ଯାହା ସହିତ ଏହା ସଂଶ୍ଳିଷ୍ଟ ଥାଏ । ଦୃଶ୍ୟମାନ ସ୍ତରରେ ସଂଯୋଗ ଓ ବିଭକ୍ତିକରଣର ସତ୍ତା ଯୋଗୁ ଏହି ଅଭାବଟି ସୃଷ୍ଟି ହୁଏ । କିନ୍ତୁ ଏହି ପାର୍ଥକ୍ୟ ଅଦୃଶ୍ୟମାନ ସ୍ତରରେ ଗ୍ରହଣୀୟ ନୁହେଁ । କାରଣ ଏଠାରେ ସଂଯୋଗ ବା ବିଭକ୍ତିକରଣ ପ୍ରକ୍ରିୟା ସଂଘଟିତ ହୁଏ ନାହିଁ ।

ଏଠାରେ ପ୍ରଣିଧାନଯୋଗ୍ୟ ଯେ ତାଙ୍କ ମତ, ମାୟାବାଦୀଙ୍କ ମତଠାରୁ ସଂପୂର୍ଣ୍ଣ ରୂପେ ପୃଥକ । ସେ ବିଶ୍ୱାସ କରନ୍ତି ଯେ, ବସ୍ତୁବାଦୀ ପୃଥିବୀର ପ୍ରକୃତ ସ୍ଥିତି ରହିଛି । ଏଥିରେ ସନ୍ଦେହ ନାହିଁ ଯେ, ଏହା ପ୍ରକୃତ ସତ୍ତାର ବାହ୍ୟ ଆବରଣ ମାତ୍ର କିନ୍ତୁ ଏହି ବାହ୍ୟ ଆବରଣଟି ମଧ୍ୟ କିଛି କମ୍ ବାସ୍ତବ ନୁହେଁ । ତାଙ୍କ ମତରେ ଅଲୌକିକ ପୃଥିବୀର କାରଣ ପ୍ରକୃତ ସତ୍ତା ନୁହେଁ, ଯାହା ଗୁଣସମୂହ ମଧ୍ୟରେ ଲୁକ୍‌କାୟିତ ବରଂ ଏହା ଏକ ମାନସିକ ଧାରଣା ଯଦ୍ୱାରା କି ବସ୍ତୁବାଦୀ ସଂସାରକୁ ବୁଝିବାକୁ ସୁବିଧା ହୁଏ ।

ବେଦାନ୍ତବାଦୀ ଓ ଅନ୍ୟାନ୍ୟ ଯୋଗୀମାନେ ଏ ସଂସାର ଏକ ସ୍ୱପ୍ନ ଅଟେ ବୋଲି ଯାହା କହନ୍ତି, ପ୍ରକୃତରେ ତାହା ନୁହେଁ । ବରଂ ସଂସାର ହେଉଛି ସ୍ୱପ୍ନର ଜାଗରଣ ।

ତୁ ଚଶ୍‌ମ୍ ବସ୍ତି ଓ ଗୁଫ୍‌ତ କେ ଇଁ ଦୁନିଆ ଖାବ୍ ଅସ୍ତ୍
କୁଶାଏ ଚଶମ୍ କେ ଇଁ ଖାବ୍ ଖାବେ ବେଦାରି ଆସ୍ତ୍ (ଜବୁରେ ଅଜମ୍)

(ତୁମେ ବନ୍ଦ୍ ଆଖି ନେଇ କହୁଅଛ—ସଂସାରଟା ଅଟେ ସ୍ୱପ୍ନ
ଆଖି ଫେଇ ବାରେ ଦେଖ ଯେ, ସଂସାରଟା ଜାଗରଣର ହିଁ ସ୍ୱପ୍ନ)

ଉପରୋକ୍ତ ପଂକ୍ତିରେ ହଜରତ୍ ଅଲ୍ଲିଙ୍କ ଏକବିଖ୍ୟାତ ଉକ୍ତିର ମାୟା-ବାଦୀ ବିଶ୍ଳେଷଣ କଥା ସ୍ପଷ୍ଟ ଭାବରେ ଉଲ୍ଲେଖ କରାଯାଇଛି । ତାହା ନିମ୍ନରେ ପ୍ରଦତ୍ତ :—

* ଅନ୍ନାସୋ ନୟାମୁନ୍ ଫାଉା ମା—ତୁ ଡାନବ୍‌ହା ହୁ !
(ଶୋଇଛନ୍ତି ଲୋକେ, ମରିଗଲା ବେଳେ ତାଙ୍କ ନିଦ୍ରା ହିଁ ତ ତୁଟିଯାଏ)

ଏହାପରେ ଇକ୍‌ବାଲ୍ 'ମାୟାବାଦ' ଠାରୁ ପୃଥକ ମତ ପୋଷଣ କରନ୍ତି । ମାୟାବାଦୀମାନେ କହନ୍ତି ଯେ, ପୃଥିବୀ ଅସାର ଏବଂ ବାସ୍ତବତାର ମାୟାଭୂମି । ସୂଫୀମାନଙ୍କୁ ସମ୍ବୋଧନ କରି ଇକ୍‌ବାଲ୍ କୁହନ୍ତି :—

ତେରି ନିଗାହ ମେଁ ହେଁ ମୋଜଜାତ୍ କି ଦୁନିଆ
ମେରି ନିଗାହ ମେଁ ହେଁ ହାଦେସାତ୍ କି ଦୁନିଆ (ଜରବେ କଲିମ)

ସଂସାରଟା ଅଟେ ଅଲୌକିକ, ତୋ' ଦୃଷ୍ଟିକୋଣରୁ
ସଂସାରଟା ଘଟଣା ବହୁଳ— ମୋ ଚିନ୍ତା ଆଉ ଚେତନାରୁ)

ପରିପୂର୍ଣ୍ଣ ସତ୍ତାର ଏକକ ସତ୍ତା କଥା ବର୍ଣ୍ଣନା କରିବାକୁ ଯାଇ ଇକ୍‌ବାଲ୍ କହନ୍ତି, ପରମେଶ୍ୱର ଏକକ ସତ୍ତା ସହିତ ସମାନ କିନ୍ତୁ ଏହାର ନାମ, ଗୁଣ ମଧ୍ୟରେ ପାର୍ଥକ୍ୟ ଥାଏ ଏବଂ ବେଳେ ବେଳେ ପରସ୍ପର ବିରୋଧୀ ମଧ୍ୟ ହୋଇଥାଏ ଯେମିତି ଦୟାଳୁ ହୋଉଛନ୍ତି ପ୍ରତିହିଂସାପରାୟଣର ବିରୋଧୀ । ଏକଥା ସେ ଏକ ପାଦଟୀକାରେ ବ୍ୟାଖ୍ୟା କରିଛନ୍ତି, ଯାହା ଏହି ପରିପ୍ରେକ୍ଷୀରେ ଅତି ଗୁରୁତ୍ୱପୂର୍ଣ୍ଣ ।

"ଦେଖିବାକୁ ଗଲେ ଏହା ବେଦାନ୍ତର 'ଲୀଳାମୟବ୍ରହ୍ମ'ର ଖୁବ୍ ନିକଟତର ହେବ । ବେଦାନ୍ତର ପ୍ରଜାପତି ବା ସ୍ୱୟଂ ସ୍ରଷ୍ଟା ହେଉଛନ୍ତି— ପରିପୂର୍ଣ୍ଣ ସତ୍ତା ବା ପ୍ରକୃତ ବ୍ରହ୍ମଙ୍କର ଭୂକ୍ଷେପୁ ପାଦ । ଅଲ୍ କଲ ଦୁଇ ପ୍ରକାର ବ୍ରହ୍ମକଥା ସ୍ୱୀକାର କରନ୍ତି—ସଗୁଣ ଓ ନିର୍ଗୁଣ ଯଥା— ଶଙ୍କର ଓ ବାଦ୍ରାୟନ ** ତାଙ୍କ ମତରେ

---

* ହଜରତ୍ ଅଲିଙ୍କ ଉକ୍ତି ଅଲ୍‌ମସ୍‌ରୁ-ଫି-ମାର୍‌ଫତ୍-ଇଲ୍-ହଦସ୍-ଅଲ୍-ମନୁ By Abdul Fattah Abu Ghadda, Page 163 (Halal 1969).

** ବାଦ୍ରାୟନ— ଖ୍ରୀ: ପୂ: ୫୦୦-୨୦୦) ସେ ବ୍ରହ୍ମସୂତ୍ର (ବେଦାନ୍ତ ସୂତ୍ର, ବା ଶାରୀରକ ସୂତ୍ର)ର ରଚୟିତା । ଏହା ବେଦାନ୍ତ ଉପରେ ପ୍ରଥମ ରଚନା । ଶଙ୍କରାଚାର୍ଯ୍ୟ ଏହାର ପ୍ରସିଦ୍ଧ ଟୀକାକାର । କିମ୍ବଦନ୍ତୀ ଅନୁଯାୟୀ ବ୍ୟାସ ଓ ବାଦ୍ରାୟନ ଏକ ଓ ଅଭିନ୍ନ ।

ସୃଷ୍ଟିକ୍ରିୟା ହେଉଛି ପରିପୂର୍ଣ୍ଣ ଚିନ୍ତାର (Absolute Thought) ନିମ୍ନୀକରଣ (Lowering) ଯାହାକୁ ଅସୀମ (Absolute) ଅବସ୍ଥାରେ ଅସତ୍ ଏବଂ ସ୍ଥାନମୟ ବା ଗୋଚର ଅବସ୍ଥାରେ ବା ସସୀମ ଅବସ୍ଥାରେ ବସ୍ତୁ କୁହାଯାଏ । ଏହି ଅଦ୍ୱୈତବାଦ ବ୍ୟତୀତ ସେ ମଧ୍ୟ ରାମାନୁଜଙ୍କର ମତ ପ୍ରତି ଆକୃଷ୍ଟ * ସେ ବ୍ୟକ୍ତିଗତ ଆତ୍ମାର ସ୍ଥିତି ସ୍ୱୀକାର କରନ୍ତି ଏବଂ ଶଙ୍କରଙ୍କ ସହ ଏକମତ ଯେ, ଈଶ୍ୱର ଏବଂ ତାଙ୍କର ଉପାସନା ସର୍ବୋଚ୍ଚ ଜ୍ଞାନ (Higher Knowledge) ଲାଭ କଲାପରେ ମଧ୍ୟ ଆବଶ୍ୟକ ।

ଅଲ୍ ଜିଲିଙ୍କ ମତ ବ୍ୟାଖ୍ୟା କରି ଇକ୍‌ବାଲ୍ କହନ୍ତି ଯେ, ତିନୋଟି ଜମୋନ୍ନତିର ଅବସ୍ଥା ମଧ୍ୟରେ ଗତିକରି ମଣିଷ ପୂର୍ଣ୍ଣତାପ୍ରାପ୍ତି ହୁଏ । ପ୍ରଥମାବସ୍ଥା ହେଉଛି—ଧ୍ୟାନ, ଯାହାକୁ ସେ ଅଲ୍‌ଜିଲିଙ୍କ ଭାଷାରେ କହନ୍ତି,—ଭଗବାନ ଯେତେବେଳେ କୌଣସି ବ୍ୟକ୍ତି ଉପରେ ନିଜ ନାମର ଆଲୋକ ପ୍ରଦାନ କରନ୍ତି ସେତେବେଳେ ସେ ଲୋକ ଉଦବେତ୍ତନାମର ସେହି ଉଜ୍ଜ୍ୱଳାଲୋକରେ ଧ୍ୱଂସ ହୋଇଯାଏ । ** ଇକ୍‌ବାଲ୍ କହନ୍ତି ଯେ ତାର ଶାରୀରିକ ମୃତ୍ୟୁ ନୁହେଁ, କାରଣ ସେ ବଞ୍ଚିଥାଏ ଏବଂ ଝରଣ ପରି ବୁଲୁଥାଏ । ଏକଥା କପିଳ ମଧ୍ୟ ପ୍ରାକୃତି ସହିତ ଏକମତ ହେବା ପରେ କହିଥିଲେ । ଏହି ସ୍ତରରେ ପହଞ୍ଚି ବ୍ୟକ୍ତି ଏକେଶ୍ୱରବାଦୀ ସ୍ୱରରେ ଚିତ୍କାର କରେ—"ସେ ହେଉଛି ମୁଁ ଏବଂ ମୁଁ ହେଉଛି ସେ" ଏବଂ ଆମକୁ କେହି ଭିନ୍ନ କରି ପାରିବ ନାହିଁ ।

ଯୋଗ ଉପରେ ନିଜ ସନ୍ଦର୍ଭରେ ଅଧିକ ବ୍ୟାଖ୍ୟା କରି ସେ କହନ୍ତି ଯେ ନକ୍‌ସବନ୍ଦୀମାନଙ୍କ ପରି କେତେକ ସୁଫୀ ଭାରତୀୟ ବେଦାନ୍ତବାଦୀମାନଙ୍କଠାରୁ ଅଦୃଶ୍ୟର ଉପଲବ୍‌ଧି (Realisation of the Unseen)ର କେତେକ ପନ୍ଥା ଶିଖି ନେଇଛନ୍ତି ବା ଧାର ସୂତ୍ରେ ଗ୍ରହଣ କରିଛନ୍ତି । *** ତାଙ୍କ ଭାଷାରେ— ସେମାନେ ହିନ୍ଦୁମତର କୁଣ୍ଡଳିନୀ ପଦ୍ଧତି ଶିକ୍ଷା ଦେଇ କହିଲେ ଯେ, ମାନବ ଶରୀରରେ ବିଭିନ୍ନ ରଙ୍ଗର ୬ଟି ବିରାଟ ଆଲୋକ କେନ୍ଦ୍ର ରହିଛି ।

---

* ରାମାନୁଜ (ଖ୍ରୀ. ୧୦୧୧—ଖ୍ରୀ. ୧୧୩୭) ଶଙ୍କରାଚାର୍ଯ୍ୟଙ୍କର ଅଦ୍ୱୈତବାଦ ଉପରେ ସମାଲୋଚନା ଲେଖିଥିଲେ । ତାଙ୍କର ପ୍ରସିଦ୍ଧ କୃତି ହେଉଛି 'ଶ୍ରୀଭାଷ୍ୟ' ।

** The Development of Meta Physics in Persia—Page-128

*** The Development of Meta Physics in Persia- Page-86

※ ଜଣେ ସନ୍ନ୍ୟାସୀ (ସୂଫୀ)ର କର୍ତ୍ତବ୍ୟ ହେଉଛି ଧ୍ୟାନର କେତେକ ନିର୍ଦ୍ଦିଷ୍ଟ ପ୍ରଣାଳୀରେ ସେଗୁଡ଼ିକୁ ଗୁଳିତ କରାଇବା, ଯାହା ଫଳରେ ପରିଶେଷରେ ସେ ଅଦୃଶ୍ୟକୁ ନିରୀକ୍ଷଣ କରିବ ସ୍ତରରେ ପହଞ୍ଚି ପାରିବ । ※※

ଏହିପରି ସୂଫିମାନଙ୍କର "ଫନା" (Annihilation ଅସ୍ତିତ୍ୱହୀନକରଣ) ମଧ୍ୟ ବୌଦ୍ଧମାନଙ୍କର 'ନିର୍ବାଣ' ଦର୍ଶନରୁ ସଂଗୃହୀତ । ※※※

ଏଠାରେ କହିବା ବାହୁଲ୍ୟ ଯେ A. Schimmelଙ୍କ ମତରେ ଉତ୍ସଗୁଡ଼ିକ ଅଧିକ ବିଶ୍ଳେଷଣ କରିବା ପରେ (ଯାହା ସେତେବେଳେ ସମ୍ଭବ ନ ଥିଲା) ଏ ମତଟି ବର୍ତ୍ତମାନ ରଦ୍ଦ କରି ଦିଆଯାଇଛି । ବୌଦ୍ଧ ପ୍ରଭାବ କେବଳ ପରବର୍ତ୍ତୀ ଶତାବ୍ଦୀରେ ଗ୍ରହଣୀୟ ହେଲା, ଯେତେବେଳେ ମୁସଲମାନ ସଂପ୍ରଦାୟ ସହିତ କେନ୍ଦ୍ରୀୟ ଏସିଆର ବୌଦ୍ଧମାନଙ୍କ ସମ୍ପର୍କ ନିବଡ଼ ହୋଇଥିଲା । ବେଦାନ୍ତର ପ୍ରଭାବ ପ୍ରସଙ୍ଗରେ ଏଠାରେ ପ୍ରଶ୍ନ ଉଠାଯାଇ ପାରେ ଯେ – 'ଫନା' ର ସର୍ବପ୍ରଥମ ଆଧ୍ୟାତ୍ମିକ ବ୍ୟାଖ୍ୟାନ କରିଥିବା ଗୁରୁ ଅବୁଅଲ ଅଲ୍‌ସିନ୍ଧି ତାଙ୍କ ଶିଷ୍ୟ ବାୟଜିଦ୍‌ଙ୍କ ଧାରଣାକୁ ପ୍ରଭାବିତ କରିଥିଲେ । ※※※※

---

* Lassenଙ୍କ ଅନୁସାରେ Weber ନିମ୍ନମତେ ବ୍ୟାଖ୍ୟା କରନ୍ତି :— ୧୧ଶ ଶତାବ୍ଦୀ ପ୍ରାରମ୍ଭରେ ଅଲ୍‌ବେରୁଣୀ ପାତଞ୍ଜଳିଙ୍କର ଓ ସାଂଖ୍ୟସୂତ୍ରକୁ ଆରବୀରେ ଅନୁବାଦ କରିଥିଲେ । କିନ୍ତୁ ଅମର ହସ୍ତଗତ ବିବରଣୀ ଅନୁଯାୟୀ ଏଗୁଡ଼ିକ ମୂଳ ସଂସ୍କୃତ କୃତ ସହିତ ସମାନ ନୁହନ୍ତି—History of Indian Literature—Page-239

** The Development of Metaphysics in Persia · Page-83

*** Gabriels wings – Page-367

**** ଅବୁଅଲ ସିନ୍ଧି ହେଉଛନ୍ତି ଇସ୍‌ଲାମିକ୍ ସୁଫୀଜିମ୍‌ର ଏକମାତ୍ର ସୂଫୀ ଯେ ଆରବୀ ଜାଣି ନ ଥିଲେ । ବାୟଜିଦ୍ ତାଙ୍କୁ କୋରାନର କେତୋଟି ଶ୍ଳୋକ ଶିଖାଇ ଦେଇଥିଲେ ଯାହା ପ୍ରାର୍ଥନା ସମୟରେ ବୋଲାଯାଏ ଏବଂ ପୁରସ୍କାର ସ୍ୱରୂପ ସେ ତାଙ୍କ ଶିଷ୍ୟଙ୍କୁ monotheismର ଶିକ୍ଷା ଦେଇଥିଲେ । ବାୟଜିଦ୍ ଯେ ତାଙ୍କ ଗୁରୁଙ୍କଦ୍ୱାରା ଭାରତୀୟ ଚିନ୍ତାଧାରେ ପ୍ରଭାବିତ ହୋଇଥିବେ, ଏହାର ସମ୍ଭାବନା ଅନସ୍ୱୀକାର୍ଯ୍ୟ ।

ବାୟୁଜଦ୍ କୁସ୍ତାମିଙ୍କର ପ୍ରବଳ ଇଚ୍ଛାଥିଲା ଯେ, ସେ କଠୋର ଧ୍ୟାନ ଓ ତପସ୍ୟା ବଳରେ ଭଗବାନଙ୍କ ନିକଟରେ ପହଞ୍ଚିବାର ସମସ୍ତ ବାଧାବିଘ୍ନକୁ ଅତିକ୍ରମ କରିବେ । ତାଙ୍କ ମତରେ ପୃଥିବୀର ଆସକ୍ତି, ଅନାସକ୍ତି, ଧ୍ୟାନ, ସାଧାରଣ ପୂଜା, ଭଗବାନଙ୍କ ଗୁଣ ଓ ନାମ କୀର୍ତ୍ତନ ଏବଂ ସୁଫୀର (ଭଗବତ୍ ଦର୍ଶନ) ଉତ୍‌ଥାନରେ ବିଭିନ୍ନ ସ୍ତର ପରଦା ସଦୃଶ ଭଗବାନଙ୍କଠାରୁ ଦୂରେଇ ରଖେ, ଶେଷରେ ଯେତେବେଳେ ସେ ସାପକାତି ଛାଡ଼ିବା ପରି ନିଜ ଅହଂକୁ ପରିତ୍ୟାଗ କରେ, ସେତେବେଳେ ସେ ସର୍ବୋତ୍କୃଷ୍ଟ ଆଶିଷ ଲାଭ କରେ । ଅହଂ ବିଷୟରେ ତାଙ୍କର ପରିବର୍ତ୍ତିତ ଓ ପରିମାର୍ଜିତ ଧାରଣା ବିରୋଧାତ୍ମକ ବକ୍ତବ୍ୟ ଉପରେ ଆଧାରିତ:— 'ମୁଁ ପବିତ୍ରତମ । ମୋର ଆତ୍ମା ଏକ ସର୍ବୋଚ୍ଚ', "ତୋର ମୋ ଠାରେ ସମର୍ପଣ, ମୋର ତୋ ଠାରେ ସମର୍ପଣଠାରୁ ଅଧିକ ଶ୍ରେୟସ୍କର ।" ଏକଥା ତାଙ୍କର ସମସାମୟିକମାନଙ୍କ ମଧ୍ୟରେ ତୀବ୍ର ବିରୋଧ ଜନ୍ମ କରାଇଲା । ତାଙ୍କୁ ଦୋଷାରୋପ କରାଗଲା ଯେ, ସେ ହଜରତ୍ ମହମ୍ମଦଙ୍କ ପରି ମେରାଜ୍ (Ascent-ଭଗବତ୍ ଦର୍ଶନ)ର ମିଥ୍ୟା ଦାବୀ କରୁଛନ୍ତି । ମେରାଜ୍ କେବଳ ହଜରତ୍ ମହମ୍ମଦଙ୍କ ଦ୍ୱାରା ହିଁ ସମ୍ଭବ ହୋଇଥିଲା । *

ସୁଫୀଜିମ୍‌ର ଅନ୍ୟ ଏକ ସାଧାରଣ ମତ ହେଲା— "ସେମାନଙ୍କର ଜ୍ଞାନର ଗୁରୁତ୍ୱପୂର୍ଣ୍ଣ ଉତ୍ସହେଲା ହୃଦୟ, ଯାହା ଆତ୍ମା ଓ ମନର ଏକ ଅଦ୍ଭୁତ ସମ୍ମିଶ୍ରଣ । ଏହା ହିଁ ସ୍ଥିତିର ଚରମ ବାସ୍ତବତାକୁ ଚିହ୍ନିବାର ମାଧ୍ୟମ ।"

ଇକ୍‌ବାଲ୍ ବଡ଼ ଅର୍ଥପୂର୍ଣ୍ଣ ଢଙ୍ଗରେ କହନ୍ତି—'ହୃଦୟ ବା ଏହାର ଉତ୍ସ (ଯାହାକୁ ବେଦାନ୍ତରେ ବୃହତ୍ତର ଜ୍ଞାନ—Higher Knowledge କୁହାଯାଏ) ଯାହା ଦେଖାଏ, ତାହା ବ୍ୟକ୍ତିର ନିଜ ଅହଂ ବ୍ୟତୀତ ଅନ୍ୟ ସତ୍ତା ନୁହେଁ । ଏହା ମାଧ୍ୟମରେ ତାକୁ ଯାହା ଦେଖାଯାଏ ତାହା ହେଉଛି ତାର ନିଜସ୍ୱ ବାସ୍ତବତା ।

ସୁଫୀଜିମ୍‌ର ଅନ୍ୟ ଏକ ଦିଗ ହେଉଛି ମୁକ୍ତିର ମତ ** । ସିଆସ୍ମ ମତ ଅନୁସାରେ ଇଚ୍ଛାର ରୂପାନ୍ତରରେ ସେ ମୁକ୍ତି ନିହିତ । ହିନ୍ଦୁ ବେଦାନ୍ତ

---

* Dayer-i-muarif Islamma - Vol. 1, - Page 933

* The Development of Metaphysics in Persia - page 82/83 and 89.

ଅନୁଯାୟୀ ବିଶ୍ୱପ୍ରତି ଆମର ଭୁଲ୍ ମନୋଭାବ ହିଁ ଦୁଃଖର କାରଣ । ତେଣୁ ତାହା ଆମର ବୁଝାମଣାକୁ ରୂପାନ୍ତରିତ କରିବାର ଆଦେଶ ଅର୍ଥାତ୍ ବେଦାନ୍ତ ଅନୁସାରେ ମନୁଷ୍ୟର ପ୍ରକୃତି, ଇଚ୍ଛା ବା କର୍ମଦ୍ୱାରା ନୁହେଁ ବରଂ ଚିନ୍ତାଦ୍ୱାରା ହିଁ ନିୟନ୍ତ୍ରିତ ହୁଏ ।

ଏହି ପରିପ୍ରେକ୍ଷୀରେ ଅନ୍ତିମ ବାସ୍ତବତା (Ultimate Reality) ହେଉଛି ଚିରନ୍ତନ ସୌନ୍ଦର୍ଯ୍ୟ (External Beauty)ର ମିଳିତ, ଯାହାକୁ ଇବ୍ନେ ସିନା ଓ ଅନ୍ୟାନ୍ୟ ସୂଫୀ ସମର୍ଥନ କରନ୍ତି । ଇକ୍‌ବାଲ୍ ତାକୁ ହିନ୍ଦୁ ଓ ବୌଦ୍ଧ ପ୍ରଭାବ ବୋଲି କହନ୍ତି । ତାଙ୍କ ମତରେ ଯେଉଁ ହିନ୍ଦୁମାନେ ଇରାନ୍‌ର ବାଲ୍‌ଖରେ ଥିବା ବୌଦ୍ଧ ବିହାର ଯାତ୍ରା ଉଦ୍ଦେଶରେ ଯାଉଥିବେ, ତାଙ୍କରି ଦ୍ୱାରା ଏ ମିଳିତର ବିକାଶ ସାଧିତ ହୋଇଥିବ । *

ଏ ସବୁ ଦୃଷ୍ଟାନ୍ତରୁ ପ୍ରାଞ୍ଜଳ ହୁଏ ଯେ, ଇକ୍‌ବାଲ୍ ଭାରତୀୟ ଦର୍ଶନକୁ ଗଭୀର ଭାବେ ଅଧ୍ୟୟନ କରିଥିଲେ । ଏହା ତାଙ୍କର ଅହଂ, କର୍ମ ଓ ସନ୍ୟାସ ସମ୍ପର୍କରେ ଧାରଣାର ବିକାଶ ଉପରେ ଗଭୀର ପ୍ରଭାବ ପକାଇଥିଲା ।

Anna Marie Schimmel ନିଜର କୃତି Gabriel's Wingsରେ କହନ୍ତି :-- "ଜଣେ ଦାର୍ଶନିକ ହିସାବରେ ତାଙ୍କର ଭାରତୀୟ ଦର୍ଶନ ଓ ସାହିତ୍ୟ ସହିତ ସମ୍ପର୍କ ରଖିବା ଜରୁରୀ ଥିଲା । ବିଶେଷ କରି ଉପନିଷଦରୁ ସେ ଅନେକ ସ୍ଥଳରେ ଉଦାହରଣ ଦେଇଛନ୍ତି । Max Mullerଙ୍କର "ବେଦାନ୍ତ ଦର୍ଶନ" ତାଙ୍କର ନିଜସ୍ୱ ଲାଇବ୍ରେରୀରେ ରକ୍ଷିତ ଥିଲା । ନିଜର ଯୌବନାବସ୍ଥାରେ ଯେତେବେଳେ ସେ ଅଦ୍ୱୈତବାଦ ମତ ଆଡ଼େ ଆକୃଷ୍ଟ ଥିଲେ, ସେ ବେଦାନ୍ତ Awful Sublimityର ପ୍ରଶଂସା କରିଛନ୍ତି । ଉପନିଷଦ ଶ୍ଲୋକର ଝଲକ ବେଳେ ବେଳେ ତାଙ୍କ କବିତାରେ ମଧ୍ୟ ଦେଖାଯାଉଛି ଉଦାହରଣ ସ୍ୱରୂପ

---

* Civilization of Eastern Iranians, Vol II, P—170

'ଯାଓେ୍ୱଦ୍ ନାମା' ରେ ଏକ ଶୁଖିଲା କୂଅ ଭିତରର ମଣ୍ଡୂକର ଉପମା * ଆତ୍ମାର କଳ୍ପନା ତାଙ୍କର ଅହଂର ଧାରଣାକୁ କେତେକ ପରିମାଣରେ ପ୍ରଭାବିତ କରିଥିବ ଯଦିଓ ପରବର୍ତ୍ତୀ କାଳରେ ପ୍ରତ୍ୟେକ ଏକତାବାଦୀ ଦର୍ଶନ ପ୍ରତି ତାଙ୍କ ବିରୋଧକୁ ଭ୍ରୂକ୍ଷେପ କରିଯାଇ ନପାରେ ।

ଏତଦ୍‌ବ୍ୟତୀତ ଉପନିଷଦ ପ୍ରଦତ୍ତ ସ୍ୱାଧୀନତାର ଧାରଣା ଏବଂ ମଣିଷ ଆତ୍ମାର ଅମର ହେବାର ଧାରଣା, ଯାହା ଭାରତୀୟ ଦର୍ଶନର ମୌଳିକ ତତ୍ତ୍ୱ ମଧ୍ୟରୁ ଗୋଟିଏ, ଇକ୍‌ବାଲ୍‌ଙ୍କ ଚିନ୍ତାଧାରାକୁ ଗଭୀର ଭାବରେ ପ୍ରଭାବିତ କରିଥିଲା ।

ମୃତ୍ୟୁ ବିଷୟରେ ମଧ୍ୟ ଇକ୍‌ବାଲ୍‌ଙ୍କ ଧାରଣା ଭାରତୀୟ "ଆତ୍ମାର ଧାରଣ ଦ୍ୱାରା ପ୍ରଭାବିତ" । ତାଙ୍କର ବିଶ୍ୱାସ ଯେ ମାନବୀୟ ଆତ୍ମା ଅମର । ନିଜର କବିତା "ସ୍ୱର୍ଗୀୟ ମାତାଙ୍କ ସ୍ମୃତିରେ," ସେ କହନ୍ତି—

ମୌତ ତଜ୍‌ଦିଦେ ମଜାକେ ଜିନ୍ଦଗୀକା ନାମ୍ ହୈ
ଖାକ୍ କେ ପର୍‌ଦେ ମେ ବେଦାରିକା ଏକ୍ ପୈଗାମ୍ ହୈ

ମୌତ୍‌କୋ ସମ୍‌ଝେ ହୈଁ ଗାଫିଲ୍ ଇଖ୍‌ତେତାମେ ଜିନ୍ଦଗୀ
ହୈ ଏ ଶାମେ ଜିନ୍ଦଗୀ, ସୁବ୍‌ହେ ଦଓ୍ୱାମେ ଜିନ୍ଦଗୀ

କିମ୍ୱା, ହୋ ଅଗର୍ ଖୁଦ୍‌ନଗର୍ ଓ ଖୁଦ୍‌ଗର୍ ଓ ଖୁଦ୍‌ଗିର୍ ଖୁଦି
ୟେ ଭି ମୁମ୍‌କିନ୍ ହୈ କେ ତୁ ମୌତ୍ ସେ ଭି ମର୍ ନ ସକେ
ବନ୍ଦଏ ଆଜାଦ୍ ର ଶାନେ ଦିଗର୍
ମର୍ଗ ଓରା ମି ଦେହଦ୍ ଯାବେ ଦିଗର୍

---

* ଯାଓେ୍ୱଦ୍‌ନାମାର ପଦ୍ୟାଂଶ :—

"ଦର୍ ଗୁଲେ ଦାରି ନଓ୍ୱାହ୍ୱା ଖୁବ୍ ଓ ନଗଜ୍
ଚନ୍ଦ୍ ଅନ୍ଦର୍ ଗୁଲ୍ ବନାଲି ମିଁଶଲେ ଚଗଜ୍"

( ତୋ' କଣ୍ଠ ସୁନ୍ଦର ଅଟେ, ତୋ' ସ୍ୱର ସୁନ୍ଦର
ଆଉ କେତେକାଳ ଥିବା—ବେଙ୍ଗ ପରି—କେଁ, କଟର )

( ଇଚ୍ଛାର ନବୀକରଣ—ନୂତନ ଜୀବନ - ତାହା ହିଁ ତ 'ମୃତ୍ୟୁ' ଅନ୍ୟନାମ
ସୁସୁପ୍ତିର ପରଦାରେ —ନୂତନ ଝଲକ – ଜାଗୃତି ହିଁ ତାର ଶ୍ରେଷ୍ଠକାମ

ଜୀବନର ଯବନୀକା ମୃତ୍ୟୁ ବୋଲି, ମୂର୍ଖେ ଧାରୁଥାନ୍ତି
ଶାଶ୍ୱତ ଜୀବନ ଅଛି, ମୃତ୍ୟୁ ସନ୍ଧ୍ୟା ପରେ—ପ୍ରଭାତର କମନୀୟକାନ୍ତି

ବ୍ୟକ୍ତିର ଅହଂ ଯେବେ ହୁଏ, ଆତ୍ମ ନିରୀକ୍ଷକ, ଆତ୍ମ ବସ୍ତୁତ ଆଉ ସ୍ଥାୟୀ
ଆତ୍ମାରେ ବିଶ୍ୱାସ

ମୃତ୍ୟୁର ବା ଶକ୍ତି କେତେ ନିବାପିବ ଜୀବନ ପ୍ରଦୀପ—ଥିବାଯାଏ ତା'ଠାରେ
ନିଶ୍ୱାସ

ଠାଣିମାଣି ସବୁ ଭିନ୍ନ ପରକାର, ସ୍ୱାଧୀନ ଚେତା ବ୍ୟକ୍ତିର
ନୂତନ ଜୀବନ ଦେଇଥାଏ ମୃତ୍ୟୁ—ସେଇ ଏକ ଆଗୁସାର ।)

## ବେଦର ଶ୍ଳୋକ :

ନିଜର ପ୍ରଥମ ପର୍ଯ୍ୟାୟର କବିତାରେ ଇକ୍‌ବାଲ୍ ବେଦର ଗୋଟିଏ ଶ୍ଳୋକ ମଧ୍ୟ ଉର୍ଦ୍ଦୁରେ ଅନୁବାଦ କରିଥିଲେ କିନ୍ତୁ ଦୁଃଖର ବିଷୟ ଯେ, ଏହା ତାଙ୍କର କୌଣସି କବିତା ସଂକଳନରେ ସ୍ଥାନ ପାଇ ନାହିଁ । ଏହା ତାଙ୍କର ଜୀବନୀ "ରୋଜ୍‌ଗାରେ ଫକୀର୍‌ରେ" ସନ୍ନିବେଶିତ ।

ଖେଶୌସେ ହୋ ଅନ୍ଦେଶା ନ ଗୈରୌଁ ସେ ଖତର୍ ହୋ
ଅନ୍ଦେବାକ୍ ସେ ଖଟ୍‌କା ହୋ ନ ଆଦ, ସେ ହଜର୍ ହୋ
ରୌଶନ୍ ମେରେ ସିନେ ମେଁ ମୁହବ୍‌ବତ୍ କା ଶରର୍ ହୋ
ହଲ୍ ଯୌସେଫ୍ ଆଜାଦ୍ ହୋ ବେବାକ୍ ନଜର୍ ହୋ
ପହଲୁ ମେଁ ମେରେ ହଲ୍ ହୋ ମୈ ଆଶାମେ ମୁହବ୍‌ବତ୍
ହର୍ ଶୈ ହୋ ମେରେ ଓ୍ୱାସ୍ତେ ପୈଗାମେ ମୁହବ୍‌ବତ୍

ଏହା ଅଥର୍ବ ବେଦର ନିମ୍ନୋକ୍ତ ଶ୍ଲୋକରୁ ଉଦ୍ଧୃତ ।—

ଅଭୟଂ ମିତ୍ରାଦ୍ ଭୟମ୍ ମିତ୍ରାଦ୍
ଅଭୟଂ ଜ୍ଞାତାଦ୍ଭୟମ୍ ପରୋକ୍ଷାଦ୍
ଅଭୟଂ ନ ନକ୍ତମ୍ଭୟମ୍ ଦିବା ନଃ
ସର୍ବା ଆଶା ମମ ମିତ୍ରଂ ଭବନ୍ତୁ । (୧୯, ୧୫.୬)

( ଆମକୁ ମିତ୍ର କିମ୍ବା ଶତ୍ରୁର ଭୟ ନ ରହୁ
ସମ୍ପର୍କୀୟ ବା ଅନ୍ୟର ଭୟ ଆମକୁ ନ ରହୁ
ଦିନରେ ବା ରାତିରେ ଆମର ଭୟ ନ ରହୁ
ସର୍ବେ ଆମର ମିତ୍ର ହୋଇ ଥାନ୍ତୁ । )

## ଉପନିଷଦର ପ୍ରଭାବ :

※ Prof. Anna Maric Schimmel କହନ୍ତି—"ଏ କଥା ବେଶ୍ ସ୍ୱାଭାବିକ ଯେ ଅଦ୍ୱୈତବାଦ ପ୍ରତି ଅନୁରକ୍ତ ତରୁଣ ଦାର୍ଶନିକ ୧୯୦୬ରେ ତାଙ୍କର ସନ୍ଦର୍ଭରେ ଲେଖିଥିଲେ—"ଏହି ଧାରା ( ଅର୍ଥାତ୍ ସୁଫିବାଦ ହଲ୍ଲାଜଙ୍କ ଅଦ୍ୱୈତବାଦ ପର୍ଯ୍ୟନ୍ତ ଆସୁ ଆସୁ ଆହୁରି ପ୍ରଶସ୍ତ ହୋଇଗଲା । ଯାହା ଫଳରେ ସେ ଉପନିଷଦୀୟ ଭାଷାରେ କହି ଉଠିଲେ "ଅନଲ୍ ହକ୍" ଅର୍ଥାତ୍ "ଅହଂ ବ୍ରହ୍ମାସ୍ମି" ।

ନିମ୍ନମତେ ଏହି କଥା କବି ତାଙ୍କର " ଗୁଲ୍‌ସନେ ରାଜେ ଜଦିଦ୍ "ର ଶେଷ ପଂକ୍ତିରେ ବିପରୀତ ଭାବେ ବର୍ଣ୍ଣନା କରିଛନ୍ତି ଏବଂ ଏଥିରେ ସେ ମନ୍‌ସୁର୍ ଓ ଖାଣ୍ଟି ଅଦ୍ୱୈତବାଦର ପ୍ରତିନିଧି ଶଙ୍କରାଚାର୍ଯ୍ୟଙ୍କୁ ଗୋଟିଏ ସ୍ତରରେ ଠିଆ କରାଇଛନ୍ତି ।

ହିଗର୍ ଅଜ୍ ଶଙ୍କର୍ ଓ ମନ୍‌ସୁର୍ କମ୍ ଗୋଏ **
ଖୁଦାରା ହମ୍ ବରାହେ ଖେଶ୍‌ତନ୍ ଜୋଏ

---

* Gabriel's Wing—Anna Maric Schimmel Page—345

** ମନ୍‌ସୁର୍ ହଲ୍ଲାଜ୍ (୮୫୭-୯୨୨ A.D) ଜଣେ ଭଗବତ୍ ପ୍ରେମୀ ଯୋଗୀ ଥିଲେ ସେ ଅନଲହକ୍ (ମୁଁ ଭଗବାନ) କହିବାରୁ ତାଙ୍କୁ ଶୂଳୀ ଦିଆଯାଇଥିଲା ।

(ଶଙ୍କର ଓ ମନ୍‌ସୁର ଦର୍ଶନ—ତର୍କ କର ଲାଭ କିଛି ନାହିଁ
ଦର୍ଶନ କର ଭଗବତ୍—ନିଜ ଅହଂ— ସତ୍ୟ ଦ୍ରଷ୍ଟା ହୋଇ)

ଇକ୍‌ବାଲ୍ ଅହଂ ବା "ଖୁଦି କୁ ହକ୍" ବା "ସତ୍ୟ" ସହ ସମାନ କରିଛନ୍ତି ।

ଇକ୍‌ବାଲ୍‌ଙ୍କ କବିତାରେ "ଅହଂ"ର ବୈଜ୍ଞାନିକ ଧାରଣା ବିଷୟରେ Prof. Schimmel କହନ୍ତି – ଏକ "ପରିବ୍ୟାପ୍ତ ସତ୍ତା" ଅହଂ ରୂପ ଧାରଣ କରେ ଯାହା ଫଳରେ ବିଭିନ୍ନ ବିଶ୍ୱ ଓ ବ୍ୟକ୍ତିଗତ ଅହଂ ସୃଷ୍ଟି ହୁଏ । ତା'ପରେ ତାହା ନିଜର ଶ୍ରେଷ୍ଠ ଶ୍ରେଷ୍ଠ ବିଶ୍ୱ ସୃଷ୍ଟି କରେ ।

ଏହି କଥା ସେ "ଅସ୍‌ରାରେ ଖୁଦି" ଓ "ଜବୁରେ ଅଜମ୍"ର ପଦାବଳୀରେ ନିମ୍ନମତେ ବର୍ଣ୍ଣନା କରିଛନ୍ତି :—

ପୈକର୍ ଏ ହସ୍ତି ଜ ଆସାରେ ଖୁଦି ଅସ୍ତ୍
ହର୍ ଚେ ମି ବିନି ଜ ଅସ୍‌ରାରେ ଖୁଦି ଅସ୍ତ୍

ସାଜଦ୍ ଅଜ୍ ଖୁଦ୍ ପୈକରେ ଅଗୟାର୍ ରା
ତା ଫଜାୟଦ୍ ଲଜ୍ଜତେ ପୈକର୍ ରା

ଇଁ ଯହାଁ ଚିସ୍ତ୍ ସନମ୍‌ଖାନାଏ ଅସ୍‌ରାରେ ମନ ଅସ୍ତ
ଜଲ୍‌ଓ୍ୱାଏ ଉ ଗିର୍‌ଓ୍ୱେ ଦିଦାଏ ବେଦାରେ ମନ ଅସ୍ତ୍ *

ହସ୍ତି ଓ ନେସ୍ତି ଅଜ୍ ଦିଦନ୍ ଓ ନା ଦିଦନେମନ୍
ଚେ ଜମାଁ ଓ ଚେ ମକାଁ ଶୋଖିଏ ଅଫକାର୍ --ଏ-ମନ ଅସ୍ତ୍ **

(ଅହଂର ଫଳ ସ୍ୱରୂପ ସୃଷ୍ଟିର ଆକାର
ଯେ ଫଳ ଦେଖୁଛ ତୁମେ – ସେ ଫଳ ଅହଂର

ସର୍ବସୃଷ୍ଟି ଆକାର ପ୍ରକାର, ଅଟେ ତାହା ଅହଂ ସରଜନା
ଜୀବନ, ସଂଘର୍ଷ ଆଉ ସୌନ୍ଦର୍ଯ୍ୟର କଥା—ସବୁ ହିଁ ତ ଅହଂର କଳ୍ପନା

---

* ଅସ୍‌ରାରେ ଖୁଦି

** ଜବୁରେ ଅଜମ୍

ମୋ' ରହସ୍ୟ ଶବଘର—ସଂସାର ମଧ୍ୟରେ
ଝଲକତା' ରଣୀ ଚନ୍ଦ୍ରବଦନ---ମୋ' ନେନ ପ୍ରାନ୍ତରେ

ଅସ୍ତି ଅଟେ ମୋ' ଦେଖିବା, ନଦେଖିବା ଅଟେ ନାସ୍ତି ମୋର
ମୋ ଚିନ୍ତା, ମୋ ଦାର୍ଶନିକତା--ସମସ୍ତ ଓ ଶୂନ୍ୟ--ମାତ୍ର ଅଟେ ତୁଚ୍ଛ ପରିକର ।)

ଏତଦ୍‌ବ୍ୟତୀତ "ବାଲେ ଜିବ୍ରୀଲ୍" ଓ "ଜବୂରେ ଅଜମ୍"ରୁ ନିମ୍ନ-ଲିଖିତ ପଂକ୍ତି ଉଦ୍ଧାର କରି Prof. Schimmel କହନ୍ତି ଯେ, ଏହି ପଂକ୍ତିର ମୌଳିକ ଚିନ୍ତାଧାରା ଉପରେ ଉପନିଷଦର ଗଭୀର ପ୍ରଭାବ ପଡ଼ିଛି । ଯଥା :—

ଖୁଦି କ୍ୟା ହୈ ? ରାଜେ ଦରୁନେ ହୟାତ୍
ଖୁଦି କ୍ୟା ହୈ ? ବେଦାରିଏ କାଏନାତ୍ *

ଜହାଁ ତେରୀ ଅକ୍ ତଜଲ୍ଲିହାଏ ମାନେସ୍ତ୍
କେ ବେ ମା ଜଲ୍‌ଓ୍ୱାଏ ନୂର୍ ଓ ସଦା ନେସ୍ତ୍

(ଅହଂ କଣ ? ଏହା ଅଟେ ସାରା ସୃଷ୍ଟି, ବିଶ୍ୱର ରହସ୍ୟ
ସୃଷ୍ଟି ଜାଗରିତ ହୁଏ -- ଯେବେ ହୁଏ ଅହଂର ପ୍ରକାଶ

ସଂସାରଟା ଆଉ କିଛି ନୁହେଁ—ଶୁଦ୍ଧ ଏଠି ଆମ ଲୀଳାଖେଳ,
ଆଲୋକର ସଂଜ୍ଞା ଅର୍ଥହୀନ—ଯହିଁ ନାହିଁ ମାନବର ଲୀଳା ।)

"ଅସ୍‌ରାରେ ଖୁଦି"ର ନିମ୍ନୋକ୍ତ ପଂକ୍ତି ମଧ୍ୟ ପ୍ରଣିଧାନ ଯୋଗ୍ୟ :—

ଶବ୍ ଜ ଖାବଶ୍, ରୋଜ୍ ଅଜ୍ ବେଦାରେୟସ୍
ଶୋଲ୍ଲଏ ଖୁଦ୍ ଦର୍ ଶରର୍ ତକ୍‌ସିମ୍ କରଦ୍

(ଅନ୍ଧକାର ଯଦି ମାଡ଼ିଆସେ—ଅହଂଟାଇ ନିଶ୍ଚିନ୍ତ ନିଦ୍ରାରେ
ପହଡ଼ ଭାଙ୍ଗିଲେ ତାର - ହସେ ଧରା ଆଲୋକ ବନ୍ୟାରେ

ଅହଂ ଅଟେ ସର୍ବମୟ, ମହାଦାମ୍ନୀ, ଅଗ୍ନିର ବଳୟ
ଶିଖା ତାର ସ୍ଫୁଲିଙ୍ଗରେ ବାଣ୍ଟେ—ଚମତ୍କୃତ ହୁଏ ବିଶ୍ୱବଳୟ ।)

---

* ବାଲେ ଜିବ୍ରୀଲ୍

ଏଠାରେ କୌଶିତକୀ ଉପନିଷଦ ଦେଇଥିବା ଆତ୍ମା'ର ଶାଶ୍ୱତ ସଜ୍ଞା କଥା ବେଶ୍ ମନେ ପଡ଼େ –

ଯଥାଗ୍ନେର୍ଜ୍ୱଳତଃ ସର୍ବା ଦିଶୋ ବିସ୍ଫୁଲିଙ୍ଗା ବିପ୍ରତିଷ୍ଠେରନ୍ନେବ ମେବୈତସ୍ମାଦାତ୍ମନଃ
ପ୍ରାଣା ଯଥାୟତନଂ ବିପ୍ରତିଷ୍ଠନ୍ତେ ପ୍ରାଣେଭ୍ୟୋ ଦେବା ଦେବେଭ୍ୟୋ ଲୋକାଃ
(କୌଶିତକୀ ଉପନିଷତ୍ – ୩.୩.)*

(ଯେପରି ପ୍ରଜ୍ୱଳିତ ଅଗ୍ନିଶିଖାରୁ ଅଗ୍ନି ସ୍ଫୁଲିଙ୍ଗ ଚତୁର୍ଦ୍ଦିଗକୁ ବ୍ୟାପି-ଯାଏ, ସେପରି ଅହଂ (ଆତ୍ମା)ରୁ ଜୀବନଶ୍ୱାସ ଗୃହଆଡ଼େ ନିର୍ଗତ ହୁଅନ୍ତି । ଏଥିରୁ ଉପଲବ୍ଧି ଜନ୍ମନିଏ ଏବଂ ଉପଲବ୍ଧିରୁ ସଂସାର ।)

ଏଠାରେ Schimmel କହନ୍ତି :—ଏଠାରେ ଇକ୍‌ବାଲ୍ ଏପରି ନିଜ ଅଜ୍ଞାତସାରରେ ଭାରତୀୟ ଜ୍ଞାନର ଏହି ପ୍ରତୀକଗୁଡ଼ିକ ବ୍ୟବହାର କରିଛନ୍ତି ଯେ, ଜଣେ ଅସତର୍କ ପାଠକ କେବେହେଲେ ଭାବି ପାରିବ ନାହିଁ ଯେ, ତାଙ୍କର ଈଶ୍ୱରତତ୍ତ୍ୱ ଭାରତୀୟ ମାୟାତତ୍ତ୍ୱର ସମ୍ପୂର୍ଣ୍ଣ ବିରୋଧୀ । ସେ କେବେହେଲେ "ଆତ୍ମନ୍" ଓ "ବ୍ରହ୍ମନ୍"କୁ ଏକ ବୋଲି ଭାବନ୍ତି ନାହିଁ । ତାଙ୍କ ନିକଟରେ ସ୍ରଷ୍ଟା ଓ ସୃଷ୍ଟି ସବୁବେଳେ ପୃଥକ୍ । ତାଙ୍କ ମତରେ ସଂସାର ମନୁଷ୍ୟର ଅନୁଭୂତି ଉପରେ ପର୍ଯ୍ୟବେସିତ ଏକ ସତ୍ୟ ।

ଏହିପରି "ପୟାମେ ମଶ୍‌ରିକ୍"ରେ ତାଙ୍କଦ୍ୱାରା ବ୍ୟବହୃତ 'ଜୁଲ୍ଲୁ-ଜୁଲ୍ଲଆ, ପୋକର ପ୍ରତୀକ ପ୍ରଣିଧାନ ଯୋଗ୍ୟ :—

"ଖୁଦ୍ ଅଫ୍‌ରୋଜମ୍ ଚରାଗେ ରାହେ ଖେଶମ୍"
(ମୁଁ ନିଜ ଚଲାପଥରେ ଦୀପକୁ ନିଜେ ଜଳାଏ)

---

* The Twenty Eight Upanishads : Edited by Swami Dwarikadas Shastri, Prachya Bharati Prakashan, Varanasi (Page—336)
Chapter -III, Sub-Ch—III, Page 323--Hume's Edition

ଏଥିରୁ ଏକଥା ପ୍ରାଞ୍ଜଳ ଯେ ବୃହଦାରଣ୍ୟକ ଉପନିଷଦରେ ବର୍ଣ୍ଣିତ 'ଆତ୍ମନ୍' ଠାରୁ ତାଙ୍କର ବର୍ଣ୍ଣିତ ଖୁଦ ବା "ଅହଂ" ପୃଥକ୍ ନୁହେଁ ।

*ଅସ୍ତମିତ ଆଦିତ୍ୟେ ଯାଜ୍ଞବଲ୍କ୍ୟ ଚନ୍ଦ୍ରମସ୍ୟସ୍ତମିତେ ଶାନ୍ତେଽଗ୍ନୌ
ଶାନ୍ତାୟାଂ ବାଚି କିଂଜ୍ୟୋତିରେବାୟଂ ପୁରୁଷ ଇତ୍ୟାତ୍ମୈବାସ୍ୟ ଜ୍ୟୋତିର୍ଭବତୀ
ତ୍ୟାତ୍ମନୈବାୟଂ ଜ୍ୟୋତିଷାସ୍ତେ ପଲ୍ୟୟତେ କର୍ମ କୁରୁତେ ବିପଲ୍ୟେତୀତି ।

(୪.୨.୬)

(ହେ ଯାଜ୍ଞବଲ୍କ୍ୟ ! ଯେତେବେଳେ ସୂର୍ଯ୍ୟ ଅସ୍ତମିତ ହେଲା, ଚନ୍ଦ୍ର ମଧ୍ୟ ଅସ୍ତମିତ ହେଲା, ନିଆଁ ଲିଭିଗଲା, ବଚନ ଦୂର ହେଲା, ସେତେବେଳେ ମଣିଷ କେଉଁଠାରୁ ଆଲୋକ ପାଇବ ? ସେ କହିଲେ "ଅହଂ ହେଉଛି ପ୍ରକୃତରେ ତାର ଆଲୋକ । କାରଣ ଆଲୋକ ପରି ଅହଂ ଦ୍ୱାରା ହିଁ ଜଣେ ବସେ ବୁଲେ, ନିଜର କାର୍ଯ୍ୟ ସାରି ପୁଣି ଫେରିଆସେ ।)

ସଂକ୍ଷେପରେ କହିବାକୁ ଗଲେ Prof. Schimmel ଅନେକ ଗବେଷଣା ପରେ ଇକ୍‌ବାଲ୍ କିପରି ଭାରତୀୟ ଦର୍ଶନ ଦ୍ୱାରା ପ୍ରଭାବିତ ହୋଇଥିଲେ ଏବଂ କିପରି ଜ୍ଞାତସାରରେ ବା ଅଜ୍ଞାତସାରରେ ଭାରତୀୟ ଦର୍ଶନର ପ୍ରତୀକଗୁଡ଼ିକୁ ବ୍ୟବହାର କରିଥିଲେ, ତାହା ପ୍ରତିପାଦିତ କରିଛନ୍ତି ।

## ବୌଦ୍ଧମତ :

ଇକ୍‌ବାଲ୍ ଗୌତମ ବୁଦ୍ଧଙ୍କୁ ଏକ ପୈଗମ୍ବରଙ୍କ ସ୍ଥାନ ଦେଇ ସବୁ ଧର୍ମର ପ୍ରବର୍ତ୍ତକଙ୍କୁ ସମ୍ମାନ ଦେବାର ପ୍ରମାଣ ଦେଇଛନ୍ତି । ସେ ଭାବନ୍ତି ଯେ, ଗୌତମ ବୁଦ୍ଧଙ୍କ ନୀତି ଓ ଦର୍ଶନ ମାନବିକ ମୂଲ୍ୟବୋଧ ଉପରେ ଆଧାରିତ ଏବଂ ଏହା ମଣିଷର ଦୁଃଖ ଓ ସମ୍ବେଦନଶୀଳତା ବିଷୟ ଶିକ୍ଷାଦିଏ । "ଯାଭେଦ୍‌ନାମା"ରେ ଜିନ୍ଦାରୁଦ୍ (ଇକ୍‌ବାଲ୍)ଙ୍କ

---

The Twenty-eight Upanishads : Edited by Swami Dwarikadas, Prachya Bharati Prakashan, Varanasi, 1965, Page—212 ( Bruhadaranyaka Upanishad)

R. E. Hume : Thirteen Principals Upanishads Ch. VII, Sub. Ch. III - page—133, 6th line.

ସାକ୍ଷାତ ତର୍ଓ୍ୱାସିନ୍ ନାମକ ଏକ ଉପତ୍ୟକାରେ ଗୌତମ ବୁଦ୍ଧଙ୍କ ସହିତ ହୁଏ । ଏହି ପରିପ୍ରେକ୍ଷୀରେ ବୈଶାଳୀ ଦରବାରର ଗଣଭୋଗ୍ୟା ନର୍ତ୍ତକୀ ଅମ୍ବାପାଲ୍ଲୀଙ୍କୁ ଗୌତମ ବୁଦ୍ଧ ନିମ୍ନଲିଖିତ ପ୍ରକାରେ ବୁଝାଉଥିବାର ଇକ୍‌ବାଲ୍ ବର୍ଣ୍ଣନା କରିଛନ୍ତି—

ମଏ ଦେଖନା ଓ ମାଶୂକେ ଜଓାଁ ଚଲେ ନେସ୍ତ୍
ପେଶେ ସାହେବେ ନଜର୍ ହୁରେ ଜନାଁ ଚଲେ ନେସ୍ତ୍

ହର୍ଚେ ଅଜ୍ ମହ୍‌କମ୍ ଓ ପାଏନ୍ଦା ସନାଶି, ଗୁଜ୍‌ରଦ୍
କୋହ ଓ ସେହରା ଓ ବର୍ ଓ ବହର୍ ଓ କରାଁ ଚଲେ ନେସ୍ତ୍

ଦାନଶେ ମଗ୍‌ରବିଆଁ, ଫଲ୍‌ସଫାଏ ମଶ୍‌ରକିଆଁ
ହମା ବୁତ୍ କାନା ଓ ଦର୍-ଏ ତୋଫେ ବୁତାଁ ଚଲେ ନେସ୍ତ୍

ଅଜ୍ ଖୁଦ୍ ଅନ୍ଦେଶ୍ ଓ ଅଜାଁ ବାଦିୟା ତର୍ସାଁ ମଗୁଜର୍
କେ ତୁ ହସ୍ତି ଓ ଓଜୁଦେ ଦୋଜହାଁ ଚଲେ ନେସ୍ତ୍

ଦର୍ ତରିକେ କେ ବନୋକେ ମଜ୍‌ହା କାଓ୍ୱିଦମ୍ ମନ୍
ମନ୍‌ଜିଲ୍ ଓ କାଫ୍‌ଲା ଓ ରେଶେ ରଓାଁ ଚଲେ ନେସ୍ତ୍

[ ପୁରୁଣା ମଦିରା, ଯୁବତୀ ପ୍ରେମିକା—ସବୁ ହୋଇଥାଏ ବୃଥା
ଉର୍ବୀ ଦ୍ରଷ୍ଟା ପାଶେ ସ୍ୱର୍ଗର ଅପ୍‌ସରା—ନୁହଁଇ ଉଏ ତା'ମଥା
ଚିରସ୍ଥାୟୀ ବୋଲି ଯାହା ମନେହୁଏ, ସେହି ତ କ୍ଷଣ ଭଙ୍ଗୁର
ପାହାଡ଼, ଜଙ୍ଗଲ, ମରୁ, ଉପତ୍ୟକା - ସ୍ଥାୟୀ ନୁହେଁ ପାରାବାର

ପାଶ୍ଚାତ୍ୟ ଜନତା ବୁଦ୍ଧି, ପ୍ରାଚ୍ୟବାସୀ ଦର୍ଶନର ଜ୍ଞାନ—ଅଟଇ କଣେଇ ଘର
ସବୁ ତୁଚ୍ଛ ଅଟେ ବୁଦ୍‌ବୁଦ୍ ପରାୟେ, ମାତ୍ର ଘୂରିବା ହୁଅଇ ସାର ।

ନିଜର ଭିତରେ ଅଛି ବିଶ୍ୱସତ୍ୟ, ଉର୍ଦ୍ଧ୍ୱେ ଜୀବନ କାଟ
ନିଜକୁ ବରଜି ବାକି ବିଶ୍ୱଗୋଟା—ଅନିତ୍ୟ ସଂସାର ହାଟ

ବନ୍ଧୁ ପରିଶ୍ରମେ ଅକ୍ଲାନ୍ତ ଉଦ୍ୟମେ, ଯେ ପଥ ମୁଁ ଦେଖାଇଛି
ମରୁ, ମରୀଚିକା, ଯାତ୍ରା, ଯାତ୍ରୀଦଳ, ସେ ପଥେ ବୃଥା ଲଭିଛି । ]

ଏହି କବିତାର ୨ୟ ଭାଗରେ ଗୌତମ ବୁଦ୍ଧ ଅମ୍ବାପାଲ୍ଲୀଙ୍କୁ ଜୀବନ—ମୃତ୍ୟୁ, କର୍ମ ଓ ଦଣ୍ଡ, ସତ୍‌କର୍ମ ଓ ଆତ୍ମଚିନ୍ତାର ରହସ୍ୟ ଅତି ଉତ୍ତମରୂପେ ବ୍ୟାଖ୍ୟାନ କରିଛନ୍ତି—

ବଗୁଜର୍ ଅଜ୍ ଗୈବ୍ କେ ଈଁ ଓହମ୍ ଓ ଗୁମାଁ ଚଜେ ନେସ୍ତ୍
ଦର୍ ଜହାଁ ବୁଦନ୍ ଓ ରସ୍ତନ୍ ଜ ଜହାଁ ଚଜେ ନେସ୍ତ୍

ଆଁ ବହ୍ଣସ୍ତେ କେ ଖୋଦାଏ ବତୁ ବଖ୍‌ଶଦ୍ ହମା ହେଚ୍
ତା ଜଜାଏ ଅମ୍‌ଲ୍—ଏ ତୁ ସ୍ତ୍ ଜନାଁ ଚଜେ ହସ୍ତ୍

ସ୍ୱହ୍ନତେ ଜାଁ ତଲବ୍; ସ୍ୱହ୍ନତେ ଜାଁ ଚଜେ ନେସ୍ତ୍
ଦର୍ ଗମେ ହମ୍ ନଫସାଁ ଅଶ୍‌କେ ରୱାଁ ଚଜେ ହସ୍ତ୍

ଚଶ୍‌ମେ ମଖ୍‌ମୂର୍ ଓ ନଗାହେ ଗଲତ୍ତ ଅନ୍ଦାଜ୍ ଓ ସରୁଦ୍
ହମା ଖୁବ୍ ଅସ୍ତ୍ ଓଲେ ଖୁଶ୍‌ତର୍ ଅଜାଁ ଚଜେ ହସ୍ତ୍

ହୁସ୍‌ନେ ରୁଖ୍‌ସାର୍ ଦମେ ହସ୍ତ୍ ଓ ଦମେ ଦିଗର ନେସ୍ତ୍
ହୁସ୍‌ନେ କର୍‌ଦାର୍ ଓ ଖାୟାଲାତ୍ ଖୁସାଁ ଚଜେ ହସ୍ତ୍

[ ଅଦୃଷ୍ଟ ଚନ୍ତାରେ ଘାରହେବା ବୃଥା—ଭ୍ରମ ବନା କଛି ନୁହଁ
ଜୀବନ ବତାଅ ନର୍ଲିପ୍ତେ, ନଶ୍ଚିନ୍ତେ—ନଜ ଆଡ଼େ ନଜେ ଚାହଁ

ବନା କରମରେ ବୈକୁଣ୍ଠ ପ୍ରାପତ—ସ୍ୱପନ ଅଟଇ ସିନା
ସତ୍‌କର୍ମ ଆଚର ସ୍ୱରଗ ଲଭିଲେ—ଜୀବନେ ହୁଅଇ ଯେନା

ଆତ୍ମଶାନ୍ତ ତୁମେ ଚାହଁ ?—ସେ ଶାନ୍ତ କ ମିଳଯିବ ଭଲେ ?
ନଜ ସୁଖେ, ସୁଖୀ ହୋଇ—ପର ଦୁଃଖେ ଅଶ୍ରୁ ନ ଝରଲେ !

ମଉଆଲ ଚଞ୍ଚଳ ଚାହାଣୀ, ତା ସଙ୍ଗେତେ ସଙ୍ଗୀତ ଝଙ୍କାର
ଏସବୁ ତ ଅଲୀକ—ସୁନ୍ଦର, ଅଛି ରମ୍ୟ ଉପବନ, ଅଛି ମଧୁଝର ।

କାୟାର ବାହ୍ୟ ସୌନ୍ଦର୍ଯ୍ୟ ଅନତ୍ୟ ସେ ଅତୀବ ଅଲୀକ
ସତ୍‌କର୍ମ ଓ ସତ୍ ଚନ୍ତା ଯେ ଅତୀବ ମହତ—ଝୁରୁଥାଏ ଜଗତ ଗୋଟାକ । ]

ଉପରୋକ୍ତ ପଦ୍ୟାଂଶଟି ପାଲି ଭାଷାରେ ଅମ୍ବାପଲ୍ଲୀଙ୍କ ଦ୍ୱାରା ରଚତ ଗୋଟିଏ କବତା କଥା ମନେ ପକାଇ ଦଏ, ଯେଉଁ କବତାର ସାରାଂଶ ନମ୍ନରେ ପ୍ରଦତ୍ତ—

[ "ମୋ' ଘନକୃଷ୍ଣ କବରୀ ଓ ଚୂର୍ଣ୍ଣ କୁନ୍ତଳ, ଚକ୍‌ଚକ୍ କରୁଥିଲା—

ମହୁମାଛି ପରି,

କନ୍ତୁ ଆଜ ବାର୍ଦ୍ଧକେ ଉଡ଼ୁଛି—ଝୋଟ ପ୍ରାୟେ, ବଲ୍‌କଲ ପରିଏ
ସ୍ୱଚ୍ଛେ ଅବା ଚରାଲୁଗା ପବନେ ଉଡ଼ୁଛି ।

ମିଥ୍ୟା କେବେ ହୋଇ ତ ପାରେନା—ସେ ସତ୍ୟ ବଚନ
ମୋ' ସ୍ୱର ତ ଆହୁରି ସୁନ୍ଦର—କୋଇଲଠାରୁ ବି
ଆଜି ବାର୍ଦ୍ଧକ୍ୟରେ—ଘଟିଅଛି ମୋର ସ୍ୱରଭଂଗ

ସତ୍ୟଦ୍ରଷ୍ଟା ପୁରୁଷର ଭକ୍ତି, ମିଥ୍ୟା କେବେ ହୋଇ ତ ନ ପାରେ

ଧନ ଥିଲା ଆଜି ତ ଅସ୍ତାତ—

ଯେ ଧନ ମୋ' ଅଂଗଲତା, କ୍ଷୀଣାଙ୍ଗ ଶରୀର
ଜଳୁଥିଲା ବାଲସୂର୍ଯ୍ୟ ପରି—ଆଜି ତାହା ଜରା ଜର୍ଜରିତ ।" ]

ଗୌତମ ବୁଦ୍ଧଙ୍କ କଥା ଶୁଣି ନର୍ତ୍ତକୀ ସଂସାର ତ୍ୟାଗ କରି ତାଙ୍କ ଶିଷ୍ୟା ରୂପେ ସଂସାର ତ୍ୟାଗ କରିଛି ଏବଂ ନିମ୍ନୋକ୍ତ କବିତା (ଗଜଲ୍) ଗାଇ ଉଠିଛି—

ଫୁର୍ସତେ କଶ୍ମକଶ୍ ମଦେହ ଇଁ ଦିଲେ ବେ କରାର୍ ରା
ଯୁକ୍ ଦୋ ଶିକନ୍ ଜ୍ୟାଦା କୁନ୍ ଗେସୁଏ ତାବ୍ଦାର୍ ରା

ଅଜରୁ ଦରୁକେ ସିନା ଅମ୍, ବରକେ ତଜ୍ଜଲିଏ କେ ମନ୍
ବା ମହ ଓ ମହର୍ ଦାଦାଅମ୍ ତଲ୍ଖିଏ ଇନ୍ତେଜାର୍ ରା

ଜୌକେ ହୁଜୁର୍ ଦର ଜହାଁ । ରସ୍ମେ ସନମ୍‌ଗରି ନେହାଦ୍
ଇଶ୍କ ଫରେବ୍ ମି ଦେହଦ୍ ଜାନେ ଉମ୍ମିଦ୍ ୱାର ରା

ତାବଫରାଗେ ଶାଢରେ ନଗ୍‌ମାଏ ତାଜାଏ ଜନମ୍
ବାଜ୍ ବମ୍ର୍ ଗେଜାର୍ ଦେହ୍ ତାଏରେ ମର୍ ଗେଜାର୍ ରା ।

ତବା ବୁଲନ୍ଦ୍ ଦାଦାଏ, ବନ୍ଦ୍ ଜପାଏ ମନ୍ କୁଶାଏ
ତାବ ପଲାସେ ତୁ ଦେହମ୍ ଖିଲ୍ଅତେ ହର୍ଯ୍ୟାର୍ ରା

ତେଶା ଅଗର୍ ନ ସଙ୍ଗ ଜଦ୍ ଇଁ ଚେ ମୁକାମେ ଗୁଫତ୍ ଗୁୟ୍
ଇଶକ୍ ବଦୋଶ୍ ମି କଶଦ୍ ଇଁ ହମା କୋହ୍ ସାର୍ ରା

[ ଆନ୍ଦୋଳିତ ମନ ମୋର, ଆଉ ବେଶୀ ବ୍ୟାକୁଳ କରନା
ଜଟା ଜୁଟ ବାନ୍ଧି ଦିଅ ତରଂଗ ପରାଏ—ନ କରୁ ସେ ମୋ'ରେ ଆନମନା

ଚନ୍ଦ୍ର ସୂର୍ଯ୍ୟ ତୁଚ୍ଛ ମୁଁ ମଣିଛି, ସେ ଆଲୋକେ ମୋର ଲୋଡ଼ା ନାହିଁ
ତୋ ଜ୍ଞାନର ଆଲୋକରେ ଭରିଛି ହୃଦୟ-ବଜୁଲିର ଦାଗ ଲଭିନାହିଁ

ପ୍ରେମିକକୁ ପ୍ରେମ ଆଶା ଭରମେ ମାରଇ—ଚିରଦିନ ଭୁଆଁ ବୁଲୁଥାଏ
ଭଗବତ୍—ସାନ୍ନିଧ ଇଚ୍ଛା ପ୍ରତିମା ସୃଜିଲା—ତୁଚ୍ଛ ପ୍ରେମ ଜଳି ମରୁଥାଏ ।

ଭିନ୍ନ ଏକ ବଗିଚ୍ଚ ଦେଇଦେ— ପ୍ରାଣ ପକ୍ଷୀ ମୋର ଯହିଁ ଶାନ୍ତିରେ ଉଡ଼ିବ
ହୃଦୟ-ନିଭୃତ ଗୀତ, ମନ ଆନନ୍ଦରେ—ଯେଉଁଠାରେ ସେ ଗାଇ ବୁଲିବ

ଦେଲୁ ଯେବେ ଉଚ୍ଚ ଚିନ୍ତା, ମୋ ପାଦରୁ ବନ୍ଧନ ଫେଇଦେ
କବା ନୋଡ଼ା ମହାର୍ଘ ପୋଷାକ, ତେଜିବ ମୁଁ ସବୁକିଛି, ତୋ ପବିତ୍ର ପାଦେ

ଉଆରିନ୍ନ ନୁଆନାଳ, ଫର୍ହାଦ୍ ଖଗିଂଲ ପାହାଡ଼
ଆଚମ୍ବିତ କିଛି ନୁହେଁ, ପ୍ରେମ କାନ୍ଧେ ପରବତ ବୋଝ୍—ନ ପକାଏ ବାଡ଼]

## ଗାୟତ୍ରୀ

ଇକ୍‌ବାଲ୍‌ଙ୍କ ଜୀବନୀ ଲେଖକ—ଅବଦୁଲ୍ ମଜିଦ୍ ସାଲିକ୍ କହନ୍ତି ଯେ, ଇକ୍‌ବାଲ୍ ସଂସ୍କୃତ ମଧ୍ୟ ପଢ଼ିଥିଲେ । ଏ କଥା ଅତିଆ ଫଏଜୀ ମଧ୍ୟ ସ୍ୱୀକାର କରନ୍ତି । ତାଙ୍କର ପ୍ରଥମ ପର୍ଯ୍ୟାୟର କବିତା ପଂକ୍ତିରେ ହିନ୍ଦୁ ଧର୍ମର ପବିତ୍ର ଗାୟତ୍ରୀ ମନ୍ତ୍ରର ସ୍ୱରୂପ ପ୍ରକଟିତ ହୋଇଅଛି—

ଓମ୍ ଭୂର୍ଭୁବ ସ୍ୱଃ
ତତ୍‌ସବିତୁର୍ବରେଣ୍ୟଂ ଭର୍ଗୋ ଦେବସ୍ୟ ଧୀମହି
ଧିୟୋ ଯୋ ନଃ ପ୍ରଚୋଦୟାତ୍

Om
Bhur bhuvah Svah
tat Savitur Varenyam
bhargo devasya dhimahi
dhiyo yo nah Prachodayat. (Rikveda III 62 : 10)

ହେ ସୂର୍ଯ୍ୟ ସହସ୍ରାଂଶୁ ବରଣୀୟ ତୁମେ ହିଁ ସବିତା
ତେଜକୁ କରୁ ଧ୍ୟାନ,
ବୁଦ୍ଧିକୁ ଦେଉ ପ୍ରେରଣା)

ଏକଥା ଏଠାରେ ପ୍ରଣିଧାନ ଯୋଗ୍ୟ ଯେ, ଯେତେବେଳେ ପ୍ରଥମ ଏ କବିତା ଖ୍ରୀ ୧୯୦୬ ରେ 'ମଖ୍‌ଜନ' ରେ ପ୍ରକାଶ ପାଇଲା, ଇକ୍‌ବାଲ୍ ଏଥିରେ ଏକ ଟୀକା ମଧ୍ୟ ଲେଖିଥିଲେ । ମନ୍ତ୍ରର ପୃଷ୍ଠଭୂମି ବର୍ଣ୍ଣନା କରି ଇକ୍‌ବାଲ୍ ଲେଖିଥିଲେ*

---

* Iqbal and Religions other than Islam : Dr. Tarachand Tastogi

"ଏକଥା ସତ୍ୟ ଯେ, ସଂସ୍କୃତ ଭାଷାର ପାଣ୍ଡିତ୍ୟ ଓ ଲାଳିତ୍ୟକୁ ବର୍ତ୍ତମାନ ଯୁଗର ଭାଷାରେ ଅନୁବାଦ କରିବା ସହଜ ନୁହେଁ । ସଂସ୍କୃତ ଶବ୍ଦ Savitur ର ଉର୍ଦ୍ଦୁ ପ୍ରତିଶବ୍ଦ ନାହିଁ । ସାଧାରଣତଃ ଏହାର ଉର୍ଦ୍ଦୁ ପ୍ରତିଶବ୍ଦ ଆଫ୍‌ତାବ୍ (ସୂର୍ଯ୍ୟ) ରୂପେ ହିଁ କରାଯାଇଥାଏ । କିନ୍ତୁ ଏହାର ପ୍ରକୃତ ଅର୍ଥ ହେଉଛି ଆକାଶର ଊର୍ଦ୍ଧ୍ୱରେ ଥିବା ସୂର୍ଯ୍ୟ । ଯାହା ଆମ ବିଶ୍ୱର ସୂର୍ଯ୍ୟ ପାଇଁ ଆଲୋକର ଉତ୍ସ । ଆଦମ ଜାତି ଓ ଇସ୍‌ଲାମ ଧର୍ମର ଯୋଗୀମାନେ ମଧ୍ୟ ଭଗବାନଙ୍କ ଅସ୍ତିତ୍ୱକୁ ଆଲୋକର ଆଖ୍ୟା ଦେଇଛନ୍ତି । ପବିତ୍ର କୋରାନ୍‌ରେ ଅଛି "ଅଲ୍ଲାହ୍ଵ ନୁରସ୍ ସମାଓ୍ୱାତେ ଓଲ୍ ଅରଦ୍" ଗାୟତ୍ରୀ ମଧୁର ମୂର୍ଚ୍ଛନାମୟ ହେଲେ ସୁଦ୍ଧା ଏହାର ଅନୁବାଦ କରିବା ପ୍ରାୟ ଅସମ୍ଭବ । 'ସୂର୍ଯ୍ୟ ନାରାୟଣ' ଉପନିଷଦରେ ମଧ୍ୟ ଗାୟତ୍ରୀକୁ ଅନୁବାଦ କରିବା ଦୁରୂହ ବୋଲି ବର୍ଣ୍ଣନା କରାଯାଇଛି ।

ଇକ୍‌ବାଲ୍ କୁହନ୍ତି, "ମୋର କବିତା ମଧ୍ୟ ଲାଳିତ୍ୟପୂର୍ଣ୍ଣ, ତଥାପି ଏହାକୁ ଗାୟତ୍ରୀ କୁହାଯାଇ ନପାରେ ।" (ମଖ୍‌ଜନ୍—୧୯୦୨)

ଅଏ ଆଫ୍‌ତାବ୍ ରୁହେ ରଓ୍ୱାନେ ଜହାଁ ହୈ ତୁ
ଶିରାଜା ବନ୍ଦେ ଦଫ୍‌ତରେ କୌନ୍ ଓ ମକାଁ ହୈ ତୁ
ବାଇସ୍ ହୈ ତୁ ଓଜୁଦ୍ ଓ ଅଦମ୍ କି ନମୁଦ୍ କା
ହୈ ସବ୍‌ଜ ତେରେ ଦମ୍‌ସେ ଚମନ୍ ହସ୍ତ୍ ଓ ବୁଦ୍ କା
କାୟମ୍ ଏ ଉନ୍‌ସୁର୍‌ଗେଁ କା ତମା ଶା ତୁଝି ସେ ହୈ
ହର୍ ଶୈ ମେଁ ଜିନ୍ଦଗୀ କା ତକାଜା ତୁଝି ସେ ହୈ
ହର୍ ଶୈ କୋ ତେରି ଜଲ୍‌ଓ୍ୱାଗରି ସେ ସବାତ୍ ହୈ
ତେରା ଏ ସୋଜ୍ ଓ ସାଜ୍ ସରାପା ହୟାତ୍ ହୈ
ଓ ଆଫ୍‌ତାବ୍ ଜିସ୍ ସେ ଜମାନେ ମେଁ ନୁର୍ ହୈ
ଦିଲ୍ ହୈ ଖିରଦ୍ ହୈ, ରୁହେ ରଓ୍ୱାଁ ହୈ, ଶୋଉର୍ ହୈ
ଅଏ ଆଫ୍‌ତାବ୍ ହମ୍‌କୋ ଜିଆଏ ଶୋଉର୍ ଦେ
ଚଶ୍‌ମେ ଖିରଦ୍ କୋ ଅପ୍‌ନି ତଜ୍ଜଲ୍ଲି ସେ ନୁର୍ ଦେ
ହେ ମହଫିଲେ ଓଜୁଦ୍ କା ସାମାଁ ତରାଜ୍ ତୁ
ୟଜ୍‌ଦାନେ ସାକନାନେ ନଶିବ୍ ଓ ଫରାଜ୍ ତୁ
ତେରା କମାଲ୍ ହସ୍ତିଏ ହର୍ ଜାନ୍‌ଦାର୍ ମେ
ତେରି ନମୁଦ୍ ସିଲ୍‌ସିଲାଏ କୋହ୍‌ସାର୍‌ମେ
ହର୍ ଚିଜ୍ କି ହୟାତ୍ କା ପର୍‌ଓ୍ୱର୍ ଦିଗାର୍ ତୁ
ଜାଇଦଗାନେ ନୁର୍ କା ହୈ ତାଜ୍‌ଦାର୍ ତୁ

ନେ ଇବ୍ତଦା କୋଇ, ନ କୋଇ ଇନ୍ତହା ତେରା
ଆଜାଦେ କୈଦେ ଅଓ୍ୱଲ୍ ଓ ଆଖିର୍ ଜିଆ ତେରା ।

[ ହେ ସୂର୍ଯ୍ୟ ! ତୁମେ ହିଁ ତ ବିଶ୍ୱ-ଆତ୍ମା ବିଶ୍ୱର ଆଲୋକ
ଭଙ୍ଗା ଗଢ଼ା ଦୁନିଆର ତୁମେ ହିଁ ତ ଏକା ନିୟାମକ
ଜୀବନ, ମୃତ୍ୟୁର ତୁମେ ଅଛ ଯେ କାରଣ,
ତୁମ ଯୋଗୁ ପାଏ ଜୀବନ୍ୟାସ-ଜୀବନ-ଉଦ୍ୟାନ ।
ତୁମ୍ଭ ସତ୍ତା ଯୋଗୁ ସର୍ବେ ଲଭନ୍ତି ଜୀବନ
ତୁମେ ଅଗ୍ନି ଜୀବନର-ଆଲୋକ କାରଣ
ଅଂଧକାର ନାଶି ବିଶ୍ୱେ, ଆଲୋକ ସଞ୍ଚର
ଆଲୋକ ହିଁ ସତ୍ୟ, ବୁଦ୍ଧି, ପ୍ରଜ୍ଞା-ଧ୍ୟାନକାରୀ
ହେ ସୂର୍ଯ୍ୟ ! ବିଶ୍ୱେ ତୁମ୍ଭେ ଜ୍ଞାନାଲୋକ ଦିଅ
ଅସତ୍ୟରୁ ସତ୍ୟ ପଥେ, ଉଦ୍ୟୋତିତ ଦିଅ
ତୁମ୍ଭ ରୂପ ବିଭିନ୍ନତା-ପ୍ରକାଶେ ସବୁରେ
ଉପତ୍ୟକା, ଅଧିତ୍ୟକା, ପର୍ବତ ମାଳାରେ
ସଜୀବକୁ, ନିର୍ଜୀବକୁ ଅଛ ତୁମେ ଜୀବଦାତା
ସବୁରଙ୍କ ପାଇଁ ଅଛ ତୁମ୍ଭେ ଯେ ବିଧାତା
ଆଲୋକର ଉତ୍ସ ତୁମ୍ଭେ ଅନାଦି, ଅନନ୍ତ
ତୁମ୍ଭର ପ୍ରକାଶ ବିଶ୍ୱେ—କଳପନା-ମୁକ୍ତ । ]

## ଭଗବତ୍ ଗୀତାର କର୍ମଯୋଗ

ଇକ୍‌ବାଲ୍ ଭଗବତ୍ ଗୀତାର 'କର୍ମଯୋଗ' ଦ୍ୱାରା ଗଭୀର ଭାବେ ପ୍ରଭାବିତ ହୋଇଥିଲେ । ଗୀତାରେ ଆତ୍ମା (ଅହଂ) କୁ ଅମର ବୋଲି କୁହାଯାଇଅଛି । ଫଳରେ ଫଳପ୍ରାପ୍ତିର କାମନା ନରଖି କର୍ମ କରିଯିବାକୁ ଜୀବନର ଚରମ ଲକ୍ଷ୍ୟ ବୋଲି ଦର୍ଶାଯାଇଛି । କାମନା-ବିବର୍ଜିତ କର୍ମ ସମ୍ପାଦନ କରିବା (ନିଷ୍କାମ କର୍ମ) ହେଉଛି ଏହାର ମୂଳମନ୍ତ୍ର । କର୍ମକ୍ଷେତ୍ରରେ ମନୁଷ୍ୟର ସମ୍ପୂର୍ଣ୍ଣ ତ୍ୟାଗ (କାମନାର ବିନାଶ) ତାର ଆତ୍ମାକୁ ଉନ୍ନତ କରେ ଓ ତାକୁ ଅନନ୍ତ ଆତ୍ମ ସତ୍ତାର (Eternal spirit) ନିକଟବର୍ତ୍ତୀ କରାଇ ଦିଏ ।

ନିଜର ମସ୍‌ନଓ୍ୱି (କବିତା)'' ଅସ୍‌ରାରେ ଖୁଦି''ର ମୁଖବଂଧରେ ଇକ୍‌ବାଲ୍ ଭଗବତ୍ ଗୀତାର ନୀତି ଉପରେ ଆଲୋକପାତ କରିଛନ୍ତି:—

"ଶ୍ରୀକୃଷ୍ଣ ନାମ ସବୁବେଳେ ସମ୍ମାନସହ ଉଚ୍ଚାରଣ କରାଯିବ । ଶ୍ରୀକୃଷ୍ଣ ଅତି ଚମତ୍କାର ଭାବରେ ନିଜ ଦେଶ ଓ ଜାତିର ଦାର୍ଶନିକ ପରମ୍ପରାର ସମାଲୋଚନା କରିଛନ୍ତି ଏବଂ ପ୍ରମାଣିତ କରିଛନ୍ତି ଯେ, କର୍ମରେ ତ୍ୟାଗର ଅର୍ଥ ନୁହେଁ ଯେ, ଆମେ କର୍ମପ୍ରତି ବୀତଶ୍ରୃଦ୍ଧ ହେବା । କାରଣ କର୍ମ ହେଉଛି ପ୍ରକୃତିର ପ୍ରେରଣା ଏବଂ ଜୀବନକୁ ଏହା ନୂତନତ୍ୱ ପ୍ରଦାନ କରେ । ପ୍ରକୃତରେ କର୍ମତ୍ୟାଗ ଅର୍ଥ ହେଉଛି—ଫଳପ୍ରାପ୍ତି ପ୍ରତି ନିର୍ଲିପ୍ତ ହୋଇ କର୍ମ କରାଯିବା ।" *

ଯଦିଓ ଇକ୍‌ବାଲ୍‌ଙ୍କ କର୍ମ ଦର୍ଶନ ଇସ୍‌ଲାମ୍‌ର ମୌଳିକ ନୀତି ଉପରେ ଆଧାରିତ, ତଥାପି ସେ ଭଗବତ୍‌ ଗୀତା ଦ୍ୱାରା ପ୍ରଭାବିତ ହୋଇଛନ୍ତି । ସେ "ମନ୍ତ୍ରିଏ କର୍‌ଦାର୍‌" (Inspired Action)ର ପ୍ରଶଂସକ ଥିଲେ—ଏ ସମ୍ପର୍କରେ ତାଙ୍କର ବାର୍ତ୍ତା ହେଉଛି :—

ଅମଲ୍ ସେ ଜିନ୍ଦଗୀ ବନ୍‌ତି ହୈ ଜନ୍ନତ୍ ଭି, ଜହନ୍ନମ୍ ଭି
ୟେ ଖାକ ଅପ୍‌ନି ଫିତ୍‌ରତ୍ ମେଁ ନ ନୂରି ହୈ ନ ନାରୀ ହୈ
ଅପ୍‌ନି ଦୁନିଆ ଆପ୍ ପୈଦା କର୍ ଅଗର୍ ଜିନ୍ଦୋଁ ମେଁ ହୈ
ସିର୍‌ରେ ଆଦମ୍ ହୈ, ଜମିରେ କୁନ୍ ଫୁକାଁ ହୈ ଜିନ୍ଦେଗୀ

ୟକିଁ ମୁହ୍‌କମ୍ ଅମଲ୍ ପୈହ୍‌ମ୍ ମୁହବ୍‌ବତ୍ ଫାତହେ ଆଲମ୍
ଜିହାଦେ ଜିନ୍ଦଗୀ ମେଁ ହୈ ଏହ ମର୍‌ଦୋଁ କି ଶମ୍‌ସିରେଁ
ଜିସ୍‌କା ଅମଲ୍ ହୈ ବେ ଗରଜ୍ ଉସ୍‌କି ଜଜା କୁଛ୍ ଅଉର୍ ହୈ
ହୁର୍ ଓ ଖୟାମ୍ ସେ ଗୁଜର୍, ବାଦା ଓ ଜାମ୍ ସେ ଗୁଜର୍

କେନାଅତ୍ ନ କର୍ ଆଲମେ ରଙ୍ଗ୍ ଓ ବୁ ପର୍
ଚମନ୍ ଅଉର୍ ଭି ଆଶିୟାଁ ଅଉର୍ ଭି ହୈ
ତୁ ଶାହିଁ ହୈ ପର୍‌ୱାଜ୍ ହୈ କାମ୍ ତେରା
ତେରେ ସାମ୍‌ନେ ଆସ୍‌ମାଁ ଅଉର୍ ଭି ହୈ ।

ହର୍ ଏକ୍ ମୁକାମ୍ ସେ ଆଗେ ଗୁଜର୍‌ଗୟା ମହେନୌ
କମାଲ୍ କିସ୍‌କୋ ମୁୟସର୍ ହୁଆ ହୈ ବେ ତଗ୍ ଓଦୌ
ରାଜ୍ ହୈ, ରାଜ୍ ହୈ, ତକ୍‌ଦିରେ ଜହାନେ ତଗ୍ ଓ ତାଜ୍
ଜୋଶେ କର୍‌ଦାର୍‌ସେ ଖୁଲ୍‌ଯାତେ ହୈଁ ତକ୍‌ଦିର୍ କେ ରାଜ୍

---

* Asgar Ali Engineer : Multi Disciplinary Approach to Iqbal

ଫିତ୍‌ରତ୍ କୋ ଖିରଦ୍ କେ ରୁବରୁ କର୍
ତସ୍‌ଖିରେ ମୁକାମେ ରଙ୍ଗ୍ ଓ ବୁକର୍

ଏ ଘଡ଼ି ମହ୍‌ଶର୍ କି ହୈ ତୂ ଅର୍‌ଶାଏ ମହ୍‌ଶର୍ ମୈ ହୈ
ପେଶ୍‌କର୍ ଗାଫିଲ୍ ଅମଲ୍ କୋଇ ଅଗର୍ ଦଫ୍‌ତର୍ ମୈ ହୈ

[ ଜୀବନେ କରମ ପଥ—ସ୍ୱର୍ଗ, ନର୍କ, ଗତି ନିର୍ଦ୍ଧାରକ
ଜନମେ ମାନବ ନୁହେଁ—ଶ୍ୱେର, ଖଣ୍ଡ ଅବା ଦେବଦୂତ

ତୁମେ ହିଁ ଜୀବନ୍ତ ଆତ୍ମା, ସଂସାରରେ ଏକମାତ୍ର ସତ୍ୟ
ଜୀବନ ରହସ୍ୟ ଗୁମ୍ଫା—ଯାହା ତାର ସୃଜନେ ନିହିତ

ନିଶ୍ୱାସେ ବିଶ୍ୱାସ ଯାର, କର୍ମେ ଯାର ଅପାର ଆନନ୍ଦ
ପ୍ରେମ—ଅସ୍ତ୍ର ଜୀବନ ସଂଗ୍ରାମେ, ଆସେ ନାହିଁ କେବେ ନିରାନନ୍ଦ ।

ଲୋଡ଼ା ନାହିଁ ସୁରା, ସାକୀ ତା'ର, କିବା ଲୋଡ଼ା ନୃତ୍ୟଶାଳା ତାର
କରମେ ଆନନ୍ଦ ଯା'ର—ଦେବଫଳ ସଦା ଭୋଗ୍ୟ ଯାର

ସମ୍ଭୋଗ ପସରା ବିଶ୍ୱେ, ନାନା ରଂଗ, ନାନା ରୂପ, ଆନନ୍ଦର ଧାରା
ତୁଚ୍ଛ ଏ ଅଳୀକ ତୃଷ୍ଣା, ଅଛି ରମ୍ୟ ଉପବନ—କୁସୁମିତ ସରା

ତୋ' ତୃଷ୍ଣାରେ କ୍ଳାନ୍ତ ନାହିଁ, ତୁହି ତ ଆତ୍ମାର ଇଗଲ୍
କୋଟି ବିଶ୍ୱ ଅଂଗନରେ, ଉଡ଼ି ଉଡ଼ି ହୁଅ ମସ୍‌ଗୁଲ୍

କଳାଏ କଳାଏ ବଢ଼ି ପୂର୍ଣ୍ଣିମୀରେ ପୂର୍ଣ୍ଣଚନ୍ଦ୍ର ଶୋହେ
ଜୀବନେ ସଂଗ୍ରାମ ବିନା—ପୂର୍ଣ୍ଣତା କି ଜୀବନକୁ ମୋହେ !

ରହସ୍ୟରେ ଭରା ମନୁଷ୍ୟର ଭାଗ୍ୟ—ସଂଘର୍ଷମୟ ଏ ବିଶ୍ୱ
ଉତ୍ସାହ—କର୍ମରେ ଖୋଲେ ସେ ରହସ୍ୟ—ଧାଏଁ ଯେବେ ମନ-ଅଶ୍ୱ ।

ରଂଗ, ରସ ପୃଥିବୀକୁ ଏକା ଏକା ଜିଣିପାରେ ସିଏ
ପ୍ରକୃତିକୁ କରି କବଳିତ ଜ୍ଞାନଲୋକେ କର୍ମ କରେ ଯିଏ

ଏଇତ ସୁବର୍ଣ୍ଣ ଲଗ୍ନ, ତୁମ୍ଭେ ଆତ୍ମା କେନ୍ଦ୍ରବିନ୍ଦୁ ତାର
ତନ୍ଦ୍ରାମଗ୍ନ ଜୀବନକୁ ହେୟଜ୍ଞାନ କରି, ଭଗବତ୍ ପ୍ରାଣସତ୍ତା କର ଅକ୍ତିଆର । ]

## ବିଶ୍ୱାମିତ୍ର

''ଜାୱେଦ୍ ନାମା''ରେ ବିଶ୍ୱାମିତ୍ର ଏବଂ ରୁମିଙ୍କ କଥୋପକଥନରେ ମଧ୍ୟ ଭାରତୀୟ ଜୀବନ-ଦର୍ଶନ ଓ ଚିନ୍ତାଧାରାର ଉଲ୍ଲେଖ ରହିଛି । ଏହି କଥୋପକଥନରେ

ହିନ୍ଦୁ ଓ ଇସ୍‌ଲାମିକ୍ ଦର୍ଶନ ଓ ଆଧ୍ୟାତ୍ମବାଦ ମଧ୍ୟରେ ତୁଳନାତ୍ମକ ଆଲୋଚନା କରାଯାଇଛି ।

ବିଶ୍ୱବଂଧୁ (ବିଶ୍ୱାମିତ୍ର) ଜିନ୍ଦାରୁଦ୍ (ଇକ୍‌ବାଲ୍) ଙ୍କ ଜ୍ଞାନ ପରୀକ୍ଷା କରିବା ପାଇଁ ତାଙ୍କୁ ପ୍ରଶ୍ନ କରୁଛନ୍ତି :—

ଗୁଫ୍‌ତ୍ ମର୍‌ଗେ ଅକ୍‌ଲ ? ଗୁଫ୍‌ତମ୍ ତର୍କେ ଫିକ୍‌ର୍
ଗୁଫ୍‌ତ୍ ମର୍‌ଗେ କଲ୍‌ବ୍ ? ଗୁଫ୍‌ତମ୍ ତର୍କେ ଜିକର୍

ଗୁଫ୍‌ତ୍ ତନ୍ ? ଗୁଫ୍ତଂମ୍ କେ ଜାଦ୍ ଅଜ୍ ଗର୍‌ଦେ ରାହ
ଗୁଫ୍‌ତ୍ ଜାଁ ? ଗୁଫ୍‌ତମ୍ କେ ରାଜେ ଲା ଇଲାହା

ଗୁଫ୍‌ତ୍ ଆଦମ୍ ? ଗୁଫ୍‌ତମ୍ ଅଜ୍ ଅସ୍‌ରାରେ ଉସ୍ତ୍
ଗୁଫ୍‌ତ୍ ଆଲମ୍ ? ଗୁଫ୍‌ତମ୍ ଭ ଖୁଦ୍ ରୁବରୁସ୍ତ୍

ଗୁଫ୍‌ତ୍ ଇଁ ଇଲମ୍ ଓ ହୁନର୍ ? ଗୁଫ୍‌ତମ୍ କେ ପୋସ୍ତ୍
ଗୁଫ୍‌ତ୍ ହୁଜ୍ଜତ୍ ଚସ୍ତ୍ ? ଗୁଫ୍‌ତମ୍ ରୁଏ ଦୋସ୍ତ୍

ଗୁଫ୍‌ତ୍ ଦନେ ଆମିଆଁ ? ଗୁଫ୍‌ତମ୍ ଶନିଦ୍
ଗୁଫ୍‌ତ୍ ଦନେ ଆରଫାଁ ? ଗୁଫ୍‌ତମ୍ କେ ନଦ୍

ଅଜ୍ କଲାମ୍ ଲଜ୍ଜତେ ଜାନସ୍ ଫାଜ୍‌ଦ୍
ନୁକ୍‌ତା ହାଏ ଦିଲ୍‌ନଶିଁ ଦର୍‌ମନ୍ କଶିଦ୍

(ପଚାରିଲେ "ବୁଦ୍ଧିର ମୃତ୍ୟୁ କଣ ?" କହିଲି ମୁଁ—"ଚିନ୍ତାକୁ ତ୍ୟାଗ କରିବା ।"
ପଚାରିଲେ "ମନର ମୃତ୍ୟୁ କଣ ?" କହିଲି ମୁଁ—"ଗୁଣ କୀର୍ତ୍ତନକୁ ତ୍ୟାଗ କରିବା ।"

ପଚାରିଲେ "ଶରୀର କଣ ?"—କହିଲି, "ମାଟି ରାସ୍ତା, ଧୂଳିରୁ ଉଠାଇ ।"
ପଚାରିଲେ "ଜୀବନ କଣ ?"—କହିଲି, "ସେହି ହିଁ ତ ଏକା ସର୍ବୋପରି ।"

ପଚାରିଲେ "ମଣିଷ କଣ ?" କହିଲି, "ଏଇଆ ତାର ରହସ୍ୟ—ସର୍ଜନା ।"
ପଚାରିଲେ "ପୃଥିବୀ କଣ ?" କହିଲି, "ସେହି ହିଁ ତ ପ୍ରତ୍ୟକ୍ଷ ଦର୍ଶନା ।"

ପଚାରିଲେ "ବିଦ୍ୟା ଓ ବୁଦ୍ଧି କଣ ?" କହିଲି, "କେବଳ ଖୋଳପାଟା।"
ପଚାରିଲେ "ତର୍କ କଣ ?" କହିଲି, "ବନ୍ଧୁଙ୍କର ମୁହଁ—ଚେହେରାଟା।"

ପଚାରିଲେ, "ସାଧାରଣ ଲୋକଙ୍କର ଧର୍ମ କଣ ?" କହିଲି "ଲୋକକଥା ଶୁଣିବା ହିଁ ପ୍ରମାଣ"

ପଚାରିଲେ, "ଜ୍ଞାନୀ ଲୋକଙ୍କର ଧର୍ମ କଣ ?" କହିଲି "କେବଳ ଦର୍ଶନ ଓ ଦର୍ପଣ"

ମୋ' ଉତ୍ତର ପ୍ରାଣେ ତାଙ୍କ ଲହଡ଼ି ଖେଳିଲା
ମୋ' ମନର ପ୍ରଶ୍ନ ସବୁ 'ଉତ୍ତର'—ଭେଟିଲା ।

ଭାରତୀୟ ଋଷି (ବିଶ୍ୱାମିତ୍ର) ନିମ୍ନଲିଖିତ ୯ଟି ଦାର୍ଶନିକ ସତ୍ୟ ବା ତଥ୍ୟ ଇକ୍‌ବାଲ୍‌ଙ୍କୁ ବୁଝାଇ ଦେଲେ :—

(୧)

ଜାଭେ ହକ୍‌ସ୍ ନେସ୍ତ୍ ଈ ଆଲମ୍ ହେଜାବ୍
ଗୋତାସ୍ ହାସ୍ତିଲ୍ ନ ଗର୍‌ଦଦ୍ ନକ୍‌ଶେ ଆବ୍

(୨)

ଜାଦନ୍ ଅନ୍ଦର୍ ଆଲମେ ଦଗର ଖୁଶ୍ ଅସ୍ତ୍
ତା ଶବାବେ ଦଗରେ ଆସୁଦ୍ ବଦସ୍ତ୍

(୩)

ହକ୍ ଓସ୍ଏ ମର୍ଗ ଓ ଅଏନେ ଜିନ୍ଦଗୀ ଅସ୍ତ୍
ବନ୍ଦା ଚୁଁ ମିରଦ୍ ନମି ଦାନଦ୍ କେ ଚସ୍ତ୍
ଗର୍‌ଚେ ମା ମୁର୍‌ଗାନେ ବେ ବାଲେ ପରେମ୍
ଅଜ୍ ଖୁଦା ଦର୍ ଇଲ୍‌ମେ ମର୍ଗ ଅଫ୍‌ଜୁଁ ତରେମ୍

(୪)

ଓ୍ୱକ୍ତ୍ ? ଶିରନ ବକହର୍ ଆମେଖ୍‌ତା
ରହମତେ ଆମେ ବକହର୍ ଆମେଖ୍‌ତା
ଖାଲ ଅଜ୍ କହରଶ୍ ନ ବିନ ଶହର୍ ଓ ଦସ୍ତ୍
ରହମତେ ଉ ଈ କେ ଗୋଇ ଦର ଗୁଜସ୍ତ୍

(୫)

କାଫର ମର୍ଗ ଅସ୍ତ ! ଅଏ ରୌଶନ୍ ନହାଦ୍
କଏ ସଜଦ୍ ବା ମୁର୍ଦା ଗାଜ ସି ଜିହାଦ୍
ମର୍ଦେ ମୋମିନ୍ ଜିନ୍ଦା ଓ ବାଖୁଦ୍ ବଜଙ୍ଗ୍
ବର୍ ଖୁଦ୍ ଉଫ୍‌ତଦ୍ ହମଚୁବର୍ ଆହୁ ପଲଙ୍ଗ୍

(୬)

କାଫିରେ ବେଦାର୍ ଦଲ୍ ପେଶେ ସନମ୍
ବେହ ଜ ଢଁ ଦାରେ କେହ ଖୁଫ୍‌ତ ଅନ୍ଦର୍ ହରମ୍

(୭)

ଚଶ୍‌ମ କୋରସ୍ତ ଇଁ କେ ବନଦ୍ ନାସର୍ଓ୍ୱାବ୍
ହେଚ୍ ଗେହ୍ ଶବ୍ ଗ୍ ନ ବନଦ୍ ଆଫ୍‌ତାବ୍

(୮)

ସୋହବତେ ଗିଲ୍ ଦାନା ଗ୍ ସାଜଦ୍ ଦରଖ୍‌ତ୍
ଆଦମି ଗ୍ ସୋହବତେ ଗିଲ୍ ଢଗ୍ ବଖ୍‌ତ୍
ଦାନା ଅଜ୍ ଗିଲ୍ ମି ପଜରଦ୍ ପେର୍ ଓ ତାବ୍
ତା କୁନଦ୍ ସୈଦେ ଶୋଆଏ ଆଫ୍‌ତାବ୍

(୯)

ମନ୍ ବଗୁଲ୍ ଗୁଫ୍‌ତମ୍ ବଗୋ ଅଏ ଗିନାଗ୍ରୁକ୍
ଚୁଁ ବଗିଜ ରଙ୍ଗ୍ ଓ ବୁ ଅଜ୍ ବାଦ୍ ଓ ଖାକ୍
ଗୁଫ୍‌ତ ଗୁଲ୍ ଅଏ ହୋଶ୍‌ମନ୍ଦେ ରଫ୍‌ତା ହୋଶ୍
ଚଁ ପୟାମେ ଗିର ଅଜ୍ ବର୍ଗେ ଖମୋଶ୍
ଜାଁ ବତନ୍ ମା ଗ୍ ଅଜ୍ ଚଜ୍‌ବେ ଇଁ ଓ ଆଁ
ବଜ୍‌ବେ ତୁ ପୈଦା ଓ ବଜ୍‌ବେ ମା ନେହାଁ ।

(୧)

ଭଗ୍‌ବତ୍ ସତ୍ତା ଯେବେ ଅବତରେ, ପୃଥିବୀର ପରଦା ହଟଇ
ଜଳେ ପ୍ରଭବମ୍ଭ ଦେଖି ଖ୍ରାରୁତାରେ କେବେ ନ ମରଇ ।

ନିଜ ଆତ୍ମା ଅନୁସର ଜନ୍ମ ନିଅ ସୁନ୍ଦର ବିଶ୍ବରେ
ନବ ନବ ଯୌବନ-ଲୀଳାରେ, ସହିଁ ସଦା ଜୀବନ ଫତରେ

(୩)

ସତ୍ୟ ଅଛୁ ମୃତ୍ୟୁର ଊର୍ଦ୍ଧ୍ୱରେ, ତାହା ହିଁ ଆତ୍ମା, ଜୀବନର,
ମୃତ୍ୟୁ ପରେ ପୃଥିବୀରେ କେହନାହିଁ, ରହେ ନାହିଁ କାହାର ଖବର ।

ଯଦ୍ୱର୍ଓ ବା ମଣିଷଟା, ପକ୍ଷକଟା ଚଢ଼େଇ ସଦୃଶ
ଜାଣେ ନାହିଁ ମୃତ୍ୟୁ ଭଗବତ୍—ମୃତ୍ୟୁଟା ହିଁ ମାନବର ଦୃଶ୍ୟ

(୪)

ବିଷକୁମ୍ଭ ପୟୋମୁଖ—ଏହା ହିଁ ତ ସମସ୍ତର ଧର୍ମ
କୋପରେ ଭରିଛି ଗର୍ବ—ହିତବାଣୀ ଜଗାଏ ଭରମ
ସମସ୍ତ କବଳୁ କେନ୍ଦ୍ର, କେବେହେଲେ ରକ୍ଷା ପାଇନାହିଁ
ଏକମାତ୍ର ଦସ୍ୟୁ ତାର, ଆପେ ଆସି, ଆପେ ଯାଏ ବନ୍ଧି

(୫)

ହେ ଜ୍ଞାନୀ ପୁରୁଷ ! ବିଶ୍ୱାସ ହୀନତା ଅଟଇ, ମୃତ୍ୟୁ ସଦୃଶ
ଯେ ମଲଣି ଜାଣି, ଯେବେ ଯୋଦ୍ଧାରଣେ, ଲେଖା କବା ପଦ୍ମରୂପ !
ଆତ୍ମ-ଚିନ୍ତାବାଧ ଝାମ୍ପ ଦିଏ ଯାର ହରଣୀ-ମୀଚ-ବୃତ୍ତିରେ
ସେ ଆତ୍ମବିଶ୍ୱାସୀ, ଚିର ଜାଗରୁକ, ଯୁଝେ ଆତ୍ମ-ପ୍ରବୃତ୍ତିରେ ।

(୬)

ବିଶ୍ୱାସବିହୀନ କାଫିରଟା ଯେବେ ହୋଇଉଠେ ଆତ୍ମଚେତା
ବରଂ ଭଲ ସିଏ, ତା ଠାରୁ ଯେ ଶୋଇ ରହିଛି ମସ୍‌ଜିଦ୍‌ଚଟାଣେ ହଜିଅଛି ଯାର
ଚେତା ।

(୭)

ବରଂ ଭଲ ଅନ୍ଧ ହେବା, ମନ୍ଦ ଦୃଶ୍ୟ ନ ଦେଖୁ ନୟନ
ଆଲୋକର ଉତ୍ସ ସୂର୍ଯ୍ୟ, ଗ୍ରହି କାଳିମାକୁ, କରେ କରେ, କେବେ ବିଲୋକନ !

(୮)

ମାଟି, ପାଣି, ପବନର ସଙ୍ଗ—ଲଭି ବୀଜ ବୃକ୍ଷରେ ଶୋଭଇ
ମାଟିର ମଣିଷ ହୋଇ ମାଟିରେ ଜନମି—ମାନବରେ କିଛି ମୂଲ୍ୟ ନାହିଁ ।
ଶାଖା ତାର ଆକାଶେ ମେଲଇ, ପତ୍ର, ଫୁଲେ ଶୋଭେ କ୍ଷୁଦ୍ର ବୀଜ
ସୂର୍ଯ୍ୟ ରଶ୍ମି ଏକାନ୍ତ ଲୋଡ଼ା ତା', ବ୍ୟତିରେକେ ଜୀବନ ତା' ନୁହଇ ସହଜ ।

(୯)

ମୁଁ ଆଦରେ ପଗ୍ଭରିଲି—ଫୁଲ ତୁରେ କପର କହନା
ମାଟି, ପାଣି, ପବନରୁ ରଙ୍ଗ ଅଉ ଗନ୍ଧ—କି ପ୍ରକାରେ ହୁଏ ତୋର ଯୋଜନା

ବୁଦ୍ଧିମାନ ବୋଲି କହୁ, ବୁଦ୍ଧି ତୋର ଯାଇଅଛୁ ହଜି
"ବିଜୁଳି ଯେବେବରେ ଶାନ୍ତ, ବାର୍ତ୍ତା ମିଳିଯାଏ" – ଫୁଲ୍ .କହେ ମନେ ମନେ
ହେଜି ।
ଗୋପନରେ ଶୋଷୁ ଆମେ, ତା' ବନ୍ଧୁନେ କହ ତୁହ୍ନ, ଜୀବ କି ସମ୍ଭବ
ପ୍ରକାଶ୍ୟେ ଶୋଷଣ ତୋର, ପଡ଼ିଯାଉ ଧରା, କଲବଲ ହୁଏ ତୋର ଜୀବ ।

## ଭର୍ତ୍ତୃହରି

ଇକ୍‌ବାଲ୍ ପ୍ରସିଦ୍ଧ ସଂସ୍କୃତ କବି ଭର୍ତ୍ତୃହରିଙ୍କ ପ୍ରଶଂସକ ଥିଲେ । କିମ୍ବଦନ୍ତୀ ଅନୁସାରେ ଭର୍ତ୍ତୃହରି ଉଜ୍ଜୟିନୀର ରାଜା ଥିଲେ । ସେ ଯୌବନାବସ୍ଥାରେ ସାଂସାରିକ ଭୋଗ-ଲାଳସାରେ ନିମଜ୍ଜିତ ଥିଲେ । କିନ୍ତୁ ଶେଷରେ ସଂସାରକୁ ତୁଚ୍ଛ ମନେ କରି ତ୍ୟାଗ କଲେ ଏବଂ ନିଜକୁ ଧ୍ୟାନ, ତପସ୍ୟା, ଦର୍ଶନ, କବିତା ଆଦିରେ ଉତ୍ସର୍ଗ କରିଦେଲେ । Max Muellerଙ୍କ ମତରେ, ତାଙ୍କର ରାଜତ୍ୱକାଳ ହେଉଛି ସପ୍ତମ ଶତାବ୍ଦୀ, କିନ୍ତୁ ଏ ବିଷୟରେ ବାଦାନୁବାଦ ରହିଛି । କବି ଓ ଦାର୍ଶନିକ ବ୍ୟତୀତ ଭର୍ତ୍ତୃହରି ସଂସ୍କୃତ ବ୍ୟାକରଣରେ ମଧ୍ୟ ପଣ୍ଡିତ ଥିଲେ । ସେ ଅଦ୍ୱୈତ ବାଦରେ ବିଶ୍ୱାସୀ ଥିଲେ । ବେଦାନ୍ତର ଅନ୍ୟାନ୍ୟ ଅନୁଗାମୀଙ୍କ ପରି ସେ ପ୍ରମାଣଦ୍ୱାରା ବାସ୍ତବତା ଅନ୍ୱେଷଣର ବିରୋଧୀ ଥିଲେ । ତାଙ୍କର ମତ ଥିଲା ଯେ, ପ୍ରମାଣ ଦ୍ୱାରା ବାସ୍ତବତାର ଅନ୍ୱେଷଣ— ଅନ୍ଧାରରେ ହାତଗୋଡ଼ ଚଣ୍ଡାଳି ହେବା ସହ ସମାନ । ତାଙ୍କ ମତରେ ସତ୍ୟର ଉପଲବ୍ଧି କେବଳ ପ୍ରେମ ଦ୍ୱାରା ହିଁ ସମ୍ଭବ । ଏଥିରେ ଇକ୍‌ବାଲ୍ ମଧ୍ୟ ଏକମତ ।

Max Muellerଙ୍କ ମତରେ ଭଗବଦ୍ ଗୀତାର ମୂଳନୀତି ଅନୁଯାୟୀ ଭର୍ତ୍ତୃହରିଙ୍କ କବିତାରେ ମଧ୍ୟ ନିଷ୍କାମ-କର୍ମ ଉପରେ ଜୋର୍ ଦିଆଯାଇଛି । "ଯାବେଦ୍‌-ନାମା"ରେ ଇକ୍‌ବାଲ୍, ବୈକୁଣ୍ଠରେ ରୁମିଙ୍କ ସଙ୍ଗରେ ନିମ୍ନ ଲିଖିତ ଭାଷାରେ ଭର୍ତ୍ତୃହରିଙ୍କୁ ପରିଚିତ କରାଉଛନ୍ତି—

ହୁରିୟାଁ ରା ଦର୍ କସୁର୍ ଓ ଦର୍ ଖିୟାମ୍
ନାଲିଏ ମନ୍ ଦାଓ୍ୱତେ ସୋଜେ ତମାମ୍

ଆଁ ୟୁକେ ଅଜ୍ ଭେମା ସର୍ ବେରୁଁ କଶିଦ୍
ଓ୍ୱାଁ ଦିଗର୍ ଅଜ୍ ଗୁର୍‌ଫା ରୁଖ୍ ବନମୁଦ୍ ଓ ଦିଦ୍

ହର୍ ଦିଲେରା ଦର୍ ବିହିଶ୍‌ତେ ଯାଓ୍ୱେଦାଁ
ଦାଦମ୍ ଅଜ୍ ଦର୍‌ଦ୍ ଓ ଗମେ ଆଁ ଖାକ୍ ଦାଁ

ଜେରେ ଲବ୍ ଖନ୍‌ଦିଦ୍ ପିରେ ପାକ୍‌ଜାଦ୍
ଗୁଫ୍‌ତ୍ ଅଏ ଯାଦୂଗରେ ହିନ୍ଦୀ-ନଜାଦ୍

ଆଁ ନଓ୍ୱା ପର୍‌ଦାକେ ହୃନ୍ଦୀ ସ୍ ନଗର୍
ଶବ୍‌ନମ୍ ଅଜ୍ ଫୈଜେ ନଗା ହେ ଊ ଗୋହର୍

ନୁକ୍ତା ଆସ୍ବଏ କେ ନାମଣ୍ ବର୍ତ୍ତର ଅସ୍ତ୍
ଫିତ୍ରରତେ ଊ ଟୁଁ ସହାବେ ଆଜର ଅସ୍ତ୍

ଅଜ୍ ଚମନ୍ ଜୁଯ୍ ଗୁନ୍‌ଗୁଏ ନୌରସ୍ ନ ଚଦ୍
ନଗ୍‌ମାଏ ଉ ସୁଏ ମା ଊ ସ୍ କଶିଦ୍

ପାଦ୍‌ଶାହେ ବାନଓ୍ୱାଏ ଅର୍‌ଜମନ୍ଦ୍
ହମ୍ ବ ଫକ୍‌ର ଅନ୍ଦର୍ ମକାମେ ଊ ବୁଲନ୍ଦ୍

ନକ୍‌ଶେ ଖୁଦ୍ ବେ ବନ୍ଦନ୍ଦ୍ ଅଜ୍ ଫିକ୍‌ରେ ଶଗର୍ଫ
ଯୁକ୍ ଯହାଁ ମାନ୍ନ ନେହାଁ ଅନ୍ଦର୍ ଦୋ ହର୍ଫ ।

କାର୍‌ଗାହେ ଜିନ୍ଦଗୀ ସ୍ ମୋହ୍‌ରମ୍ ଅସ୍ତ୍
ଊ ଜମ୍ ଅସ୍ତ୍ ଓ ଶେରେ ଊ ଜାମେ ଜମ୍ ଅସ୍ତ୍

ମା ବା ତାଜମେ ହୁନର୍ ବର୍‌ଖାସ୍ତେମ୍
ବାଜ୍ ବାଓ୍ୱେ ସୋହ୍‌ବତେ ଆସ୍ବ ସ୍ତେମ୍

[ ମୋ ସଙ୍ଗୀତେ ସ୍ୱର୍ଗର ଅପ୍‌ସରା
ଆକର୍ଷିତ ହେଲେ, ମୁଗ୍ଧ ତାଙ୍କ ନୟନର ତାରା

ଜଣକ ଗୃହିଲା ମୋତେ ତମ୍ବୁର ଫାଙ୍କରୁ
ଆରେକ ଗ୍ରହିଁ ରହିଲା ଝରକା କଡ଼ରୁ

ମାଟି-ପୃଥିବୀର ଦୁଃଖ ବାଣ୍ଟି ମୁଁ ବସିଲି
ବୈକୁଣ୍ଠର ଅଧିବାସୀ, ମାଟିଦୁଃଖ ବୈକୁଣ୍ଠେ ବାଣ୍ଟିଲି

ବାଃ ବାଃ ବାଜକର ! ଭାରତୀୟ ବାସୀ
ହସିଲେ ବାର୍ଦ୍ଧକ୍ୟେ ରୁମି- ପୁଚ୍ଛାକଲେ ହସି

ଭାରତୀୟ କବଟିଏ, ଦେଖିନଥ ବାରେ
ତାଙ୍କ ଦୃଷ୍ଟି ସମ୍ବେଦନଶୀଳ-ଶିଶିର ବ ଯାଲଟେ ମୁକ୍ତାରେ

ଏ ଅଟନ୍ତି ବଙ୍କ କବ, ଭର୍ତ୍ତୃହରି ନାମ
ସମସ୍ତ ପାଣ୍ଡିତ୍ୟ ସତ୍ତ୍ୱେ, ମୂର୍ତ୍ତିଗଢ଼ା କାମ

ତୋଳନାହିଁ ନୂତନ ସୁମନ, କାରେ କାରେ ଦେଇନାହିଁ ହାତ
ମୋଆଡ଼େ ସେ ଆକର୍ଷିତ, ବାରେ ଶୁଣି ତୋ' ମଧୁ-ସଙ୍ଗୀତ

ରାଜା ସିଏ ହେଲେ ବି ତ, ମହାନାମା କବି
ଉର୍ଦ୍ଧାସନେ ଆସୀନ ସେ, ସନ୍ୟାସରେ ଦ୍ରବି

ସୂକ୍ଷ୍ମ ଜୀବନ-ଦର୍ଶନ୍ଦୁ କବିତା ଛନ୍ଦରେ
ସମଗ୍ର ବିଶ୍ୱ ଗୁମ୍ଫିତ, ମାତ୍ର ତାଙ୍କ ଦୁଇଟି ଶବ୍ଦରେ

ଜୀବନ ରହସ୍ୟ ଅଛୁ ଅଛୁ ତାଙ୍କ ଅଙ୍ଗାଅଙ୍ଗୀ ଭାବ
କବିତା ହିଁ ଜାମ୍‌ସେଦ୍ ପିଆଲା, ଜାମ୍‌ସେଦ୍ ସିଏ-ସେବି ଜଣେ ମହାନୁଭବ ।

କଳାରେ ସମ୍ମାନ ଦେଇ ଆମ୍ଭେ ଉପସ୍ଥିତ
ଆଲାପ ମାଧ୍ୟମେ ଆମ୍ଭେ ହେଲୁ ପରିଚିତ ]

ଏଠାରେ ଜନାରୁଦ୍ ଇକ୍‌ବାଲ୍ ଭର୍ତ୍ତୃହରିଙ୍କୁ ପଚାରୁଛନ୍ତି ଯେ, ଜଣେ କବି କିପରି କବିତା ରଚନା କରେ :—

ଅଏ କେ ଗୁଫ୍‌ଡ଼ ନୁକ୍‌ତାହାଏ ଦିଲ୍‌ନଓ୍ୱାଜ୍
ମଶ୍‌ରିକ୍ ଅଜ୍ ଗୁଫ୍‌ତାରେ ତୁ ଦାନାଏ ରାଜ୍
ଶେର୍ ରା ସୋଜ୍ ଅଜ୍ କୁଜା ଆୟଦ୍ ବଗୋଏ
ଅଜ୍ ଖୁଦ୍ ୟା ଅଜ୍ ଖୁଦା ଆୟଦ୍ ବଗୋଏ ।

[ ବର୍ଣ୍ଣନା ସୁନ୍ଦର ତବ, ମହାକବି ତୁମ୍ଭେ ଭର୍ତ୍ତୃହରି
ତୁମ ଯୋଗୁ ପ୍ରାଚ୍ୟବାସୀ, ଜୀବନ ରହସ୍ୟ, ପାରିଛନ୍ତି ହେଲେ ଭେଦକରି

ଅନୁଭବ ପ୍ରକାଶନ୍ତୁ, କେଉଁଭାବେ କବିତାରେ ସଞ୍ଚୁଳେ ଅଗ୍ନିକଣା
ଅହଂରୁ ଭଗବତ୍ ଅବା ଆନ କେଉଁଠାରୁ, ଖୋଜିଖୋଜି ହେଉ ବାଟବଣା ।]

ଭର୍ତ୍ତୃହରି, ଇକ୍‌ବାଲଙ୍କୁ ଉତ୍ତର ଛଳରେ କବିତାର ସମସ୍ତ ତଥ୍ୟ ବାଖ୍ୟା କରୁଛନ୍ତି : —

କସ୍ ନଦାନଦ୍ ଦର୍ ଜହାଁ ଶାଏର୍ କୁଜାସ୍ତ୍
ପରଦଏ ଉ ଅଜ୍ ବମ୍-ଓ-ଜେର୍-ଏ ନଓ୍ୱାସ୍ତ୍

ଆଁ ଦିଲେ ଗର୍ମି କେ ଦାରଦ୍ ଦର୍ କନାର୍
ପେଶେ ଯୁଜ୍‌ଦାଁ ହମ ନମି ଗିରଦ୍ କରାର୍

ଜାନେ ମାରା ଲଜ୍ଜତ୍ ଅନ୍ଦର୍ ଜୁସ୍ତ୍‌ଜୁସ୍ତ୍
ଶେର୍ ରା ସୋଜ୍ ଅଜ୍ ମୁକାମେ ଆର୍ଜୁସ୍ତ୍

ଅଏ କେ ତୁ ଅଜ୍ ଡାକେ ସୋଖାନ୍ ମସ୍ତେ ମୋଦାମ୍
ଗର୍ ଚୋଗ ଆସୁଦ୍ ମୋସ୍ତସହ୍ର୍ ଈ ମୁକାମ୍

ବା ଦୋ ବୈତେ ଦର୍ଦ୍ର ଜହାନେ ସଲ୍ ଓ ଖଣ୍ଡ
ମି ତଓ୍ୱାଁ ବୁର୍ଦନ୍ ଦିଲ୍ ଅଜ୍ ହୁରେ ବହ୍ଷ୍ଟ୍ ।

[ ଆଜର ଏ ସମାଜରେ ବା ହୃଦୟେ କବି ପାଇଁ ଦରଦ ଯେ ନାହିଁ
ହୃଦୟର ଭାବରାଶି, ଶବ୍ଦର ତରଂଗେ, ନଭ୍ତରେ କବି ଥାଏ ରହି

ହେଲେ ବି ହୃଦୟ ତାର ସ୍ନେହ, ପ୍ରେମ, କରୁଣାରେ ପୂର୍ଣ୍ଣ
ପାଏ ନ ଜୀବନେ ଶାନ୍ତି, ସ୍ୱର୍ଗରାଜ୍ୟେ ନାହିଁ ତା ଆସନ

ସମାଜ-ଜୀବନ-ଚର୍ଯ୍ୟା କବି ପ୍ରାଣେ ଆଲୋଡ଼ନ ଆଣେ
ଟଁରଇ କବିତା ଲତା, ହୃଦୟେ ଆକାଂକ୍ଷା ଯହିଁ, ତୀବ୍ରବେଗେ ହାଣେ

ଚୋଟେ ଯେବେ କେବେ ଜୀବନରେ, ମିଳଯାଏ କବିର ଆସନ
ଖୋଜ ଖୋଜ, ଗଣି ଗଣି ଶବ୍ଦ—କରିବୁ ତୁ କବିତା ଗୁମ୍ଫନ

ବୁଢ଼ିରହି କାଦୁଅ ପଙ୍କରେ, ମିଠାକଥା କହି ଦୁଇପଦ
କବିତାର ରସସିକ୍ତ ଭାଷା, ବାନ୍ଧନାଏ ଅପସରୀଙ୍କ ହୃଦ । ]

ଉପରୋକ୍ତ ପଦ୍ୟାବଳୀରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ, ଇକ୍‌ବାଲ୍ କବି ହିସାବରେ ଭର୍ତ୍ତୃହରିଙ୍କୁ ଖୁବ୍ ଉପାସନ ଦେଇଥିଲେ । ଇକ୍‌ବାଲ୍ ତାଙ୍କର ଜଣେ ଉଚ୍ଚକୋଟିର ପ୍ରଶଂସକ ଥିଲେ ।

ଇକ୍‌ବାଲ୍ ନିମ୍ନୋକ୍ତ ପଂକ୍ତିରେ ସ୍ୱାଧୀନତା ପାଇଁ ସଂଗ୍ରାମରତ ଭାରତୀୟଙ୍କ ପ୍ରତି ଦୃଷ୍ଟି ନିକ୍ଷେପ କରିବାକୁ ଅନୁରୋଧ କରିଛନ୍ତି :—

ହିନ୍ଦୀୟାଁ ରା ଉଦାଅମ୍ ଦର୍ ପେଚ୍ ଓ ତାବ୍
ମିର୍‌ସେ ହକ୍ ଓକ୍ତ୍ ଅସ୍ତ୍ ଗୋଇ ବେ ହେଜାବ୍

[ ଦେଖୁଛି ମୁଁ ଭାରତୀୟେ, ମୁକ୍ତିପାଇଁ ସଂଗ୍ରାମରେ ରତ
ଖୋଲିଦିଅ ସତ୍ୟର ପରଦା, ଉର୍ଦ୍ଧିମାରୁ ନୂତନ ପ୍ରଭାତ ।]

ଏକଥା ଶୁଣି ଭର୍ତ୍ତୃହରି ଗୋଟିଏ କବିତା ପାଠ କରୁଛନ୍ତି :—

ଈ ଖୋଦାୟାନେ ତୁନକ୍ ମାୟା କ ସଙ୍ଗ୍ ଅନ୍ଦ୍ ଓ କ ଖସ୍ତ୍
ବରତରେ ହସ୍ତ୍ କେ ଦୂର୍ ଅସ୍ତ୍ କ କୈର ଓ କ କନଶତ୍ର

ସଜ୍‌ଦା ବେ ଜୈକ୍-ଏ ଅମଲ୍ ଖୁଶ୍‌କ୍ ଓ ବଜାଏ ନ ରସଦ୍
ଜିନ୍ଦଗାନୀ ହମା କର୍‌ଦାର୍ ଚେ ଯେବା ଓ ଚେ ଜଶିତ୍

ଫାଶ୍ ଗିରମ୍ ବରୁ ହର୍‌ଫେ କେ ନଦାନଦ୍ ହମା କସ୍
ଅଏ ଖୁଶ୍ ଆଁ ବନ୍ଦା କେ ବର୍ ଲୌହେ ଦଲ୍ ଭଗ୍ ବନଓ୍ୱିଶ୍ତ୍
ଇଁ ଜହାଁନେ କେ ରୁ ବନ୍ଦ ଅହରେ ସ୍ୱଜ୍‌ଦାଁ ନେସ୍ତ୍
ଚରଖା ଅଜ୍ ରୁସ୍ତ୍ ଓ ହମ୍ ଆଁ ରଶ୍‌ତା କେ ବର୍ ଦୋକେ ରୁରଶ୍ତ୍ ।

ପେଶେ ଆଇନେ ମକାଫାତେ ଅମଲ୍ ସଜ୍‌ଦା ଗୁଜାର୍
କାଁ କେ ଶେଜେଦ୍ ଜ ଅମଲ୍ ଦୋଜଖ୍-ଓ-ଆସ୍ୱଫ୍ ଓ ବହୁଶ୍ତ୍ ।

[ ଏ ଭଙ୍ଗୁର ଭଗବାନ—ଦେଥର ଓ ଇଟାରେ ଢଆଣ
ମନ୍ଦର ଓ ଗୀର୍ଜାଠାରୁ ତଥାପି ଦୂରରେ—ସିଏ ହିଁ ତ ଅଟେ ଭଗ୍ନହୃଦ

ବୃଥା ମୁଣ୍ଡ ନୁଆଁଇବା—କର୍ମ ଅଟେ ଆନନ୍ଦର ଧାମ
ଅବା ଭଲ ମନ୍ଦ ହେଉ—ଜୀବନଟା କର୍ମଶାଳା—କର୍ମକର ଜୀବନଟା ସାର

କହିବ ଗୋଟିଏ କଥା, ଯାହା କେହି ଜାଣିନାହିଁ ମୋଟେ
ସେହି ଲୋକ ସୁଖୀ ଭବେ, ଏହି କଥା ଲେଖାଅଛି ଯା'ହୃଦୟ ପଟେ ।

ଯେଉଁ ରୂପେ ଦେଖ ସଂସାରକୁ, କୃତ ତାହା ନୁହେଁ କେବେ ଭଗବାନଙ୍କର
ହାତରେ ଚରଖା ତୁମ, କାଟିପାର ଯେତେ ସୂତା—ସେ ସବୁ ତୁମର

ସୁକର୍ମରେ ମିଳଇ ସୁଫଳ- କର୍ମ ଯୋଗେ ମଥା ନତକର
ସ୍ୱର୍ଗ, ନର୍କ, ମର୍ତ୍ତ୍ୟ ବା ପାତାଳ—ସବ ପ୍ରାପ୍ତି କର୍ମ ଅନୁସର ।]

Prof. Schimmelଙ୍କ ମତରେ ଏହି କବିତାଟି Bothlingk Editionର କବିତା ନମ୍ବର ୬୩୬୭ର ମର୍ମାନୁବାଦ ।
ମୂଳ କବିତାଟି ନିମ୍ନରେ ପ୍ରଦତ୍ତ:—

"* ନମସ୍ୟାମି ଦେବାନ୍ନନୁ ହତଧିସ୍ତ୍ରେପି ବଶଗା
ବିଧିର୍ବନ୍ଦ୍ୟଃ ସୋପି ପ୍ରତିନୟତ କର୍ମୈ କ ଫଳଦଃ
ଫଳଂ କର୍ମାୟତ୍ତଂ ସ୍ୱଦ କିମମରୈଃ କିଂଚ ବିଧିନା
ନମସ୍ତତ୍‌କ'ର୍ମଭ୍ୟୋ-ବିଧିରପି ନ ଯେଭ୍ୟଃ ପ୍ରଭବତି ।" (୧୯)

---

* Verse No. 6 × 7
"The Epigrams Httributed to Bhartruhari."
Edited by D. D. Kosamdi (Page-27). This is published in the Edition of Sanskrit poems compiled by Dr, Bothlingk, as poem 6330.

[ ଆମେ ଯେଉଁ ଦେବତାଙ୍କୁ ପୂଜାକରୁ, ସେମାନେ ବି ସର୍ବଶକ୍ତିମାନ ବ୍ରହ୍ମାଙ୍କ ଅଧୀନ । ତେଣୁ ଆମେ ବ୍ରହ୍ମାଙ୍କୁ କାହିଁକି ପୂଜା ନ କରିବା ? ଆମ କର୍ମାନୁସାରେ ବ୍ରହ୍ମା ଫଳ-ଦାୟୀ । ବିନା କର୍ମରେ ଅନନ୍ତ ଭଗବାନ ବି ଆମକୁ ସୁଫଳ ଦେଇପାରିବେ ନାହିଁ । ବ୍ରହ୍ମା ଚାହିଁଲେ ବି ଯେଉଁ କର୍ମଫଳର ପରିବର୍ତ୍ତନ କରିପାରିବେ ନାହିଁ, ମୁଁ ସେହି 'କର୍ମ' କୁ ହିଁ ନମସ୍କାର କରୁଛି । ]

ଇକ୍‌ବାଲ୍ ଭର୍ତ୍ତୃହରିଙ୍କ ଦ୍ୱାରା ଏତେଦୂର ପ୍ରଭାବିତ ହୋଇଥିଲେ ଯେ, ସେ ନିଜର ୨ୟ ଉର୍ଦ୍ଦୁ କବିତା ସଙ୍କଳନ "ବାଲେ ଜିବ୍ରିଲ୍" (Gabriel's Wing)ରେ ନୀତିବଚନ ରୂପେ ନିମ୍ନୋକ୍ତ ପଂକ୍ତି ରଚନା କରିଅଛନ୍ତି :—

ଫୁଲ୍ କି ପତ୍ତି ସେ କଟ୍ ସକ୍‌ତା ହୈ ହୀରେ କା ଜିଗର୍
ମର୍‌ଦେ ନାଦାଁ ପର୍ କଲାମେ ନର୍ମ୍ ଓ ନାଜୁକ୍ ବେ ଅସର୍

[ହୀରାଖଣ୍ଡ, ଖଣ୍ଡ ଖଣ୍ଡ ହୋଇପାରେ, ଅଗ୍ର କରି ଗୋଲାପ ପାଖୁଡ଼ା
ଯେତେ କହ ମଧୁର ବଚନ, ମୂର୍ଖ ମନୁଷ୍ୟ ତୋ ଗାଲରେ ମାରିବ ଚାପୁଡ଼ା ]

ଉପରୋକ୍ତ ପଂକ୍ତିଟି ଭର୍ତ୍ତୃହରିଙ୍କ "ନୀତିଶତକ"ର ନିମ୍ନ ଲିଖିତ ଶ୍ଳୋକରୁ ଉଦ୍ଧୃତ :—

(୧)

* "ବ୍ୟାଳଂ ବାଳମୃଣାଳତନ୍ତୁଭିରସୌ ରୋଦ୍ଧୁଂ ସମୁଜ୍ଜୃମ୍ଭତେ
ଭେତ୍ତୁଂ ବଜ୍ରମଣିଂ ଶିରୀଷ-କୁସୁମ-ପ୍ରାନ୍ତେନ ସନ୍ନହ୍ୟତେ
ମାଧୁର୍ଯ୍ୟଂ ମଧୁବିନ୍ଦୁନା ରଚୟିତୁଂ କ୍ଷାରାମ୍ବୁଧେରୀହତେ
ମୂର୍ଖାନ୍ୟଃ ପଥି ନେତୁମିଚ୍ଛତି ବଲାତ୍ ସୂକ୍ତୈଃ ସୁଧାସ୍ୟନ୍ଦିଭିଃ"

(ନୀତିଶତକ, ଶ୍ଳୋକ-୫)

---

* Verse No·22
"The Epigrams Attributed to Bhartuhari"
Edited by D. D. Kosambi (Page-10)
Bharatiya Vidya Bhavan, Bombay (1948)

ଏହା Otto Bothlingk ଙ୍କ ଲିଖିତ Indische Spruche ର ୨ୟ ସଂସ୍କରଣ (St. Petersburg ଦ୍ୱାରା ପ୍ରକାଶିତ)ରେ କବିତା ନଂ. ୩୩୬୭ ରୂପେ ସନ୍ନିବେଶିତ ।

[ ଯେଉଁ ବ୍ୟକ୍ତି ନିଜର ମଧୁର ବାକ୍ୟ ଦ୍ୱାରା କୌଣସି ଦୁଷ୍ଟ ଲୋକକୁ ସତ୍-ପଥରେ ଆଣିବାର ଚେଷ୍ଟାକରେ, ତାର ଚେଷ୍ଟା ନିଷ୍ଫଳ ହୁଏ । କାରଣ କଅଁଳ ପଦ୍ମନାଡ଼ ଦ୍ୱାରା ଯେପରି ଏକ ମତ୍ତହସ୍ତୀ ବାନ୍ଧିବା ଅସମ୍ଭବ, ଶିରସ (ଏକ ପ୍ରକାର ଗଛ ) ପାତଥା ଦ୍ୱାରା ହୀରାକୁ କାଟିବା ଅସମ୍ଭବ ବା କ୍ଷାରଯୁକ୍ତ ସମୁଦ୍ରକୁ ବିନ୍ଦୁଏ ମଧୁ ଦ୍ୱାରା ମଧୁର କରିବା ଯେପରି ଅସମ୍ଭବ, ଦୁଷ୍ଟ ଲୋକକୁ ମଧୁର ବଚନ ଦ୍ୱାରା ସତ୍ପଥକୁ ଆଣିବା ସେହିପରି ଅସମ୍ଭବ ।

## ରାମାୟଣକୁ କବିତା-ରୂପ ଦେବାର ଇଚ୍ଛା

ଏହି ସବୁ କଥାରୁ ପ୍ରମାଣିତ ହୁଏ ଯେ, ଇକ୍‌ବାଲ୍ ଭାରତୀୟ ଦର୍ଶନ, ପୁରାଣ ଓ ଧର୍ମ ସହିତ ଗଭୀର ଭାବରେ ପରିଚିତ ଥିଲେ । କଥିତ ଅଛି ଯେ, ସେ ଭାରତୀୟ ମହାକାବ୍ୟର ପ୍ରଶଂସକ ଥିଲେ ଏବଂ ରାମାୟଣକୁ ଉର୍ଦ୍ଦୁରେ ଅନୁବାଦ କରିବାର ଇଚ୍ଛା ପୋଷଣ କରିଥିଲେ । ମହାରାଜା କୃଷ୍ଣପ୍ରସାଦଙ୍କୁ ଏକ ପତ୍ରରେ ସେ ଲେଖିଥିଲେ ଯେ, ଜାହାଙ୍ଗୀରଙ୍କ ଅମଳର ଜଣେ କବି "ମସିହି" ରାମାୟଣକୁ 'ପାର୍ସି' ଭାଷାରେ କବିତାର ରୂପ ଦେଇଥିଲେ । ଇକ୍‌ବାଲ୍ "ମସିହି"ଙ୍କ ପାଣ୍ଡୁଲିପିଟି ମହାରାଜା କୃଷ୍ଣ ପ୍ରସାଦଙ୍କୁ ତାଙ୍କ ପାଠାଗାରରୁ ଖୋଜିବା ପାଇଁ ଅନୁରୋଧ କରିଥିଲେ । ଦୁର୍ଭାଗ୍ୟବଶତଃ ପାଣ୍ଡୁଲିପିଟି ନ ମିଳିବାରୁ ଇକ୍‌ବାଲ୍‌ଙ୍କ ଆଶା ସୁଦୂର ପରାହତ ହେଲା ।

## ଭାରତୀୟ ଅବତାର ଓ ଋଷିଙ୍କ ପ୍ରତି ସମ୍ମାନ

ଜାତୀୟ ସଂହତିର ସୃଷ୍ଟି ଓ ଏହାକୁ ବଜାୟ ରଖିବାକୁ ହେଲେ ଗୋଟିଏ ଧର୍ମର ଲୋକେ ଅନ୍ୟ ଧର୍ମର ସାଧୁ ଓ ସନ୍ଥଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କରିବା ଉଚିତ । ଏ ସମ୍ବନ୍ଧରେ ଇକ୍‌ବାଲ୍ ଏକ ନୂତନ ପରମ୍ପରା ସୃଷ୍ଟି କଲେ । ସେ ଭାରତୀୟ ସାଧୁ, ସନ୍ଥ ଓ ଧର୍ମାବତାରଙ୍କ ଉପରେ କବିତା ଲେଖିବା ଆରମ୍ଭ କଲେ । ରାମଚନ୍ଦ୍ରଙ୍କ ଉପରେ ଲିଖିତ ତାଙ୍କର ଏକ କବିତାରେ ସେ ରାମଚନ୍ଦ୍ରଙ୍କ ବୀରତ୍ୱ, ପବିତ୍ରତା ଏବଂ ମାନବ ଜାତିପ୍ରତି ଗଭୀର ପ୍ରେମ କଥା ବର୍ଣ୍ଣନା କରିଛନ୍ତି—

ଲବ୍‌ରେଜ୍ ହୈ ଶରାବେ ହକିକତ୍ ସେ ଜାମେ ହିନ୍ଦ୍,
ସବ୍ ଫଲସଫି ହୈଁ ଖିତ୍ତଏ ମଗ୍‌ରବ୍ କେ ରାମ୍ ହିନ୍ଦ୍ ।
ଯେ ହିନ୍ଦୀୟୋଁ କେ ଫିକ୍‌ରେ ଫଲକ୍ ରସ୍ କା ହୈ ଅସର୍ ,
ରଫ୍‌ଅତ୍ ମେଁ ଆସ୍‌ମାଁ ସେ ଭି ଉଁଚ୍ଚା ହେ ବାମେ ହିନ୍ଦ୍ ।
ଇସ୍ ଦେଶ୍ ମେଁ ହୁଏ ହେଁ ହଜାରୋଁ ମଲକ୍ ଶରସ୍ତ୍ ,
ମଶ୍‌ହୁର୍ ଯିନ୍‌କେ ଦମ୍ ସେ ହୈ ଦୁନ୍‌ୟା ମେଁ ନାମେ ହିନ୍ଦ୍ ।

ହୈ ରାମ୍‌କେ ଓଜୁଦ୍‌ ପେ ହିନ୍ଦୁସ୍ତାଁ କୋ ନାଜ୍‌
ଅହ୍‌ଲେ ନଜର୍‌ ସମଝତେ ହୈଁ ଇସ୍‌କୋ ଇମାମେ ହିନ୍ଦ୍‌,
ଏଜାଜ୍‌ ଇସ୍‌ ଚରାଗେ ହିଦାୟତ୍‌କା ହୈ ୟହି
ରୌଶନ୍‌ତର୍‌ ଅଜ୍‌ ସେହର୍‌ ହୈ ଜମାନେ ମେଁ ଶାମ୍‌ ହିନ୍ଦ୍‌

ତଲ୍‌ଓ ାର୍‌କା ଧନୀ ଥା ଶୁଜାଅତ୍‌ ମେଁ ଫର୍ଦ୍‌ ଥା
ପାକଜ୍‌ଗୀ ମେଁ ଯୋଶେ ମୁହବତ୍‌ ମେଁ ଫର୍ଦ୍‌ ଥା ।

## ରାମ

[ ସତ୍ୟ-ସୁର ପରମ୍ପରି ଭାରତୀୟ ଜୀବନର ପାଇ
ପାଶ୍ଚାତ୍ୟର ଯେତେ ଦାର୍ଶନିକ—ଆଜି ସର୍ବେ ଭାରତର ଭକ୍ତ

ଭାରତର ଚିନ୍ତା ଓ ଦର୍ଶନ, ସର୍ବୋପରି ଆତ୍ମନିଷ୍ଠା ପାଇଁ
ଭାରତର ସ୍ଥାନ ଆଜି ସ୍ୱର୍ଗଠୁ ଊର୍ଦ୍ଧ୍ୱରେ—ଉଚ୍ଚାସନ ପାଇଁ

ଚତୁର୍ଦ୍ଦିଗେ ପ୍ରସାରିତ ହେଉ ଭାରତର ଯଶ, ଗୁଣ, ନାମ
ଜନମିଲେ କେତେ ଦେବ ଦୂତ—ମୁଖେ ତାଙ୍କ ଯଶ ଅବିରାମ
ଗରଭେ ରାମଙ୍କୁ ଧରି ଭାରତର ପୂରିଛି ଅନ୍ତର
ଦିବ୍ୟ ଦ୍ରଷ୍ଟା ମାନବଙ୍କ ପାଇଁ, ରାମ ହିଁ ତ ପୂର୍ଣ୍ଣ ଅବତାର

ସାରା ଜଗତଟା ଆଲୋକରେ ଭାସେ, ସକାଳେ ସୂର୍ଯ୍ୟ ଉଦିତ
ଭାରତ ଆକାଶେ ସନ୍ଧ୍ୟା ଆଲୋକିକ, ରାମ—ଆକାଶେ ପୂର୍ଣ୍ଣଚନ୍ଦ୍ର ତ !

ବୀର ରାମଚନ୍ଦ୍ର, ଯୋଦ୍ଧା ରାମଚନ୍ଦ୍ର, ରାମ ସେ ପ୍ରଜାପାଳକ
ମାନବ-ପ୍ରେମରେ, ପବିତ୍ର ହୃଦୟେ, ଅଦ୍ୱିତୀୟ ରାମ—କୀର୍ତ୍ତି ଯାର ଅଲୌକିକ ]

## ଗୁରୁ ନାନକ

ସେହିପରି ଗୁରୁ ନାନକଙ୍କ ଉପରେ ସେ ଏକ କବିତା ଲେଖି ତାଙ୍କର ଅଦ୍ୱୈତବାଦର ପ୍ରଶଂସା କରିଛନ୍ତି । ଏହି କବିତାରେ ସେ ମହାତ୍ମା ଗୌତମ ବୁଦ୍ଧଙ୍କୁ ସମ୍ମାନ ପ୍ରଦର୍ଶନ କରି କହିଛନ୍ତି ଯେ, ତାଙ୍କର ଦେଶବାସୀ ବୁଦ୍ଧଙ୍କ ଶିକ୍ଷାକୁ ଅନାଦର କଲେ । ଆମ ଦେଶରେ ଅସ୍ପୃଶ୍ୟତା, ସାଧାରଣ ଅନୁକମ୍ପା ଓ ଭ୍ରାତୃଭାବର ଅଭାବ ଲକ୍ଷ୍ୟକରି ସେ ଗଭୀର କ୍ଷୋଭ ପ୍ରକାଶ କରିଛନ୍ତି ।

## ନାନକ

କୌମ୍ ନେ ପୈଗାମେ ଗୌତମ୍ କି ଜରା ପର୍‌ୱା ନ କି
କଦର୍ ପହଚାନି ନ ଅପ୍‌ନେ ଗୌହରେ ୟକ୍ ଦାନା କି ।

ଆହ ! ବଦ୍‌କିସ୍‌ମତ୍ ରହେ ଆୱାଜେ ହକ୍ ସେ ବେଖବର୍
ଗାଫିଲ୍ ଅପ୍‌ନେ ଫଲ୍‌କି ଶିରିନି ସେ ହୋତା ହୈ ଶଜର୍

ଆଶ୍‌କାର୍ ଉସ୍‌ନେ କିୟା ଯୋ ଜିନ୍ଦଗୀ କା ରାଜ୍ ଥା
ହିନ୍ଦ୍ କୋ ଲୈକିନ୍ ଖୟାଲି ଫଲ୍‌ସଫେ ପର୍ ନାଜ୍ ଥା ।

ସମ୍ମାଏ ହକ୍ ସେ ଯୋ ମନୱର ହୋ ୟେ ଓ ମହଫିଲ୍ ନ ଥି
ବାରିଶେ ରହ୍‌ମତ୍ ହୁଇ ଲୈକିନ୍ ଜମିଁ କାବିଲ୍ ନ ଥି

ଆହ ! ଶୁଦର୍ କେ ଲିଏ ହିନ୍ଦୁସ୍ତାଁ ଗମ୍ ଖାନା ହୈ
ଦର୍ଦେ ଇନ୍‌ସାନି ସେ ଇସ୍ ବସ୍ତି କା ଦିଲ୍ ବେଗାନା ହୈ

ବରହ୍‌ମନ୍ ସର୍‌ଶାର୍ ହୈ ଅବ୍ ତକ୍ ମୈ ପିନ୍ଦାର୍ ମେ
ଶମ୍ମା ଗୌତମ୍ ଜଲ୍ ରହି ହେ ମହଫିଲେ ଅଗ୍‌ୟାର୍ ମେ

ବୁତ୍‌କଦା ଫିର୍ ବାଦ୍ ମୁଦ୍‌ଦତ୍ କେ ମଗର ରୌଶନ୍ ହୁଆ
ନୁରେ ଇବ୍‌ରାହିମ୍ ସେ ଆଜର୍ କା ଘର୍ ରୌଶନ୍ ହୁଆ

ଫିର୍ ଉଠି ଆଖିର୍ ସଦା ତୌହିଦ୍ କି ପଞ୍ଜାବ ସେ
ହିନ୍ଦ୍ କୋ ଏକ୍ ମର୍ଦେ କାମିଲ୍ ନେ ଜଗାୟା ଖାବ୍ ସେ

[ଲୁକ୍‌କାୟିତ ଜୀବନର ସତ୍ୟ, ଜନ୍ମି ସିଏ ଉନ୍ମୋଚିତ କଲେ
ଧନ୍ୟ ଭାରତ ବାସୀଏ ! ବୃଥା ଚିନ୍ତା ଜାଲେ ସମୟ ବିତାଇ ଦେଲେ ।

ସତ୍ୟର ବାଣୀ ଏ ଦେଶେ ବହିଲା, ପ୍ରଭାବିତ କଲା ନାହିଁ
ଯେତେ ସେ ଢାଳିଲେ କରୁଣାର ଜଳ, ମାଟିକୁ ଛୁଇଁଲା ନାହିଁ ।

ଶୂଦ୍ର ଜନପାଇଁ ଭାରତ ଭୂଇଁ ଯେ ଅଟଇ ଦୁଃଖର ଘର
ଦରିଦ୍ର ଜନତା ଦୁଃଖେ ଅନୁକମ୍ପା ହୋଇନ କା'ରେ ସଞ୍ଚର

ଏ ଦେଶ ବ୍ରାହ୍ମଣ, ନିଜ ପାଣ୍ଡିତ୍ୟରେ ଆଜି ଯେ ଗରବ କରେ
ବୁଦ୍ଧ-ଜ୍ଞାନ-ଜ୍ୟୋତି, ଏ ଦେଶୁ ସରିର ବିଦେଶ ଆଲୋକ ଭରେ ।

ଗୋଟିଏ ଯୁଗର ଅବସାନ ପରେ ମନ୍ଦରେ ଆଲୋକ ବନ୍ୟା
ଆଜର୍‌ଙ୍କ ଗୃହେ ଆବ୍ରାହମ୍ ଜନ୍ମି—କରଲେ ଆଲୋକେ ଧନ୍ୟା

ପଞ୍ଜାବ ମାଟିରୁ ଶୁଭିଲା ସେହନ—ଈଶ୍ୱର ଅଟନ୍ତି ଏକ
ଭାରତ ବାସୀଙ୍କୁ ଆଲସ୍ୟ ନିଦ୍ରାରୁ—ଜଗାଇଲେ ସନ୍ଥ ଏକ । ]

## ସ୍ୱାମୀ ରାମତୀର୍ଥ

ଅନ୍ୟ ଜଣେ ଭାରତୀୟ ପଥ-ପ୍ରଦର୍ଶକ ସ୍ୱାମୀ ରାମତୀର୍ଥଙ୍କ ଦ୍ୱାରା ଇକ୍‌ବାଲ୍ ଗଭୀର ଭାବରେ ପ୍ରଭାବିତ ହୋଇଥିଲେ । ସେ ତାଙ୍କର ସମସାମୟିକ ଥିଲେ । ସ୍ୱାମୀଜି ୨୨ ଅକ୍ଟୋବର ୧୮୭୩ରେ ମୁରଲୀ ଓ୍ୱାଲା ନାମକ ଗ୍ରାମରେ ଗୁଜ୍‌ରାନ୍ ଓ୍ୱାଲା ଜିଲ୍ଲାରେ (ବର୍ତ୍ତମାନ ପାକିସ୍ଥାନରେ) ଜନ୍ମ ଗ୍ରହଣ କରିଥିଲେ । ୧୮୯୫ରେ ସ୍ୱାମୀଜି ଗଣିତରେ ସ୍ନାତକୋତ୍ତର ଉପାଧି ହାସଲ କରିଥିଲେ । କିଛିକାଳ ସରକାରୀ ଚାକିରୀରେ ରହିବା ପରେ ଯୌବନାବସ୍ଥାରେ ସେ ସନ୍ନ୍ୟାସ ଗ୍ରହଣ କରିଥିଲେ । ୧୯୦୬ରେ ୩୮ ବର୍ଷ ବୟସରେ ଦୀପାବଳି ଦିନ ଗଙ୍ଗାସ୍ନାନ କରୁଥିବା ଅବସ୍ଥାରେ ସେ ବୁଡ଼ିଯାଇ ଇହଲୀଳା ସମ୍ବରଣ କରିଥିଲେ । ଏହି ଦୁର୍ଘଟଣା ଦ୍ୱାରା ଇକ୍‌ବାଲ୍ ବିଶେଷ ଭାବରେ ପ୍ରଭାବିତ ହୋଇ ତାଙ୍କ ଉପରେ ଏକ କବିତା ରଚନା କରିଥିଲେ :—

ହମ୍ ବଗଲ୍ ଦରିୟା ସେ ହୈ ଅଏ କତ୍‌ରଏ ବେତାବ୍ ତୁ
ପହଲେ ଗୌହର୍‌ଥା, ବନା ଅବ୍ ଗୌହରେ ନାୟାବ୍ ତୁ

ଆହ ! ଖୋଲା କିସ୍ ଅଦାସେ ତୁ ନେ ରାଜେ ରଙ୍ଗ୍ ଓ ବୁ
ମୈ ଅଭିତକ୍ ହୁଁ ଅସିରେ ଇମ୍‌ତେଆଜେ ରଙ୍ଗ୍ ଓ ବୁ

ମିଟ୍‌କେ ଗୋଗା ଜିନ୍ଦଗୀକା ଶୋରଶେ ମହଶର୍ ବନା
ଏ ଶରାର ବୁଝ୍‌କେ ଆତଶ୍ ଖାନାଏ ଆଜର୍ ବନା

ନଫିଏ ହସ୍ତି ଏକ୍ କରଶ୍‌ମା ହୈ ଦଲେ ଆଗାହ୍ କା
ଲା କେ ଦରିୟା ମେ ନେହାଁ ମୋତି ହେ ଇଲ୍ଲଲାହା କା

ଚଶ୍‌ମେ ନାବିନା ସେ ମଖ୍‌ଫି ମାନିଏ ଅନ୍‌ଜାମ୍ ହୈ
ଥମ୍ ଗଇ ଜିସ୍ ଦମ୍ ତଡ଼ପ୍ ସିମାବ୍ ସିମେ ଖାମ୍ ହୈ

ଛୋଡ଼୍ ଦେତା ହୈ ବୁତେ ହସ୍ତି କୋ ଇବ୍ରାହମେ ଇଶ୍‌କ
ହୋଶ୍ କା ଦାରୁ ହୈ ଗୋୟା ମସ୍ତିଏ ତସ୍‌ନିମେ ଇଶ୍‌କ ।

## ସ୍ୱାମୀ ରାମତୀର୍ଥ

[ ହେ ଚଳ ଚଞ୍ଚଳ ବିନ୍ଦୁ ! ମିଶିଗଲୁ ଆଜ ଭୁବି ସମୁଦ୍ର ସାଥିରେ
ସାଧାରଣ ମୁକ୍ତା ଥିଲୁ, ପରିଣତ ହେଲୁ ଆଜ ଅମୂଲ୍ୟ ମୁକ୍ତାରେ ।
କେଡ଼େ ସୁନ୍ଦର ଭାବରେ ଖୋଲି ଦେଲୁ ଭୁବି ରଙ୍ଗ ଓ ଗନ୍ଧ ରହସ୍ୟ
ପାରୁ ନାହିଁ ଖୋଲି, ଏ ଯାଏ ବି, ସେ ରଙ୍ଗ ଗନ୍ଧ ରହସ୍ୟ ।

ତୋ ଜୀବନ କୋଳାହଳ ନିର୍ବାପିତ ହେଲା—ବିଶ୍ୱ ବିଗ୍ରହ ବିବସ—
କୋଳାହଳ ସ୍ତବ୍ଧ ପଡ଼ିଗଲା
ତୋ' ଜୀବନ୍ର ଅଗ୍ନିର ସ୍ଫୁଲିଙ୍ଗ, ନିର୍ବାପିତ ହୋଇ, ଆଜର୍* ଗୃହେ
ଜ୍ୟୋତି ପ୍ରକଟାଇ ଦେଲା ।

ଆସ୍ପାବାସୀ ହୃଦୟ ସ୍ୱରୂପ-ଅହଙ୍କାର ବିବର୍ଜିତ-ଶ୍ରେଷ୍ଠ ନିଦର୍ଶନ
ଶାମୁକାରେ ନାସ୍ତିକର ଭାବ-ଗର୍ଭେ ତା ପୂର୍ଣ୍ଣ ଅସ୍ତିଭାବ-ମୁକୁତା ଦର୍ଶନ

ସହଜେ ତ ମୂର୍ଖ, ମୂର୍ଖର ରହସ୍ୟ କପରି ପାରିବ ଭେଦି
ଗୁଣ ହରାଇଲେ, ପାରଦ ହେଲେବି, ଅସ୍ତିତ୍ୱ ହୁଏ ତା'ମୃଦି

ପ୍ରେମର ଆବ୍ରାହମ୍, ଜୀବନ ପ୍ରତିମା, ଭାଙ୍ଗି ଚୂର୍ମାର୍ କରେ
ପ୍ରେମର ନିଶା ହିଁ, କାରଣର ଭିତ୍ତି, ଅତି ମଜବୁତ୍ କରେ । ]

### ଭାରତର ପ୍ରଶଂସା

ଅନ୍ୟାନ୍ୟ କବିତାରେ ମଧ୍ୟ ଇକ୍‌ବାଲ୍, ଯେଉଁଠାରେ ଅବକାଶ ପାଇଛନ୍ତି, ଭାରତର ପ୍ରଶସ୍ତି ଗାନ କରିଛନ୍ତି । ଯେତେବେଳେ ସେ ମୁସଲମାନମାନଙ୍କ ପାଇଁ ଏକ ଉଜ୍ଜ୍ୱଳ ଭବିଷ୍ୟତରେ ସ୍ୱପ୍ନ ଦେଖିଛନ୍ତି, ସେତେବେଳେ ସେ ଗାଇ ଉଠିଛନ୍ତି :—

ଅତା ମୋମିନ୍ କୋ ଫିର୍ ଦର୍‌ଗାହେ ହକ୍ ସେ ହୋନେ ୱାଲା ହୈ
ଶିକୋହେ ତୁର୍କମାନୀ, ଜହ୍‌ନେ ହିନ୍ଦୀ, ନୁତ୍‌କେ ଆରାବୀ

[ ତୁର୍କୀ-ଆଭିଜାତ୍ୟ, ଭାରତୀୟ-ଜ୍ଞାନ, ଆରବ-ପ୍ରଗଲ୍‌ଭତା, ଲୋଡ଼ାଆଜି ଆମପାଇଁ
ହେ ମଙ୍ଗଳମୟ, ମୁସଲମାନରେ, ଦିଅ ଏଥି ସବୁ, ବାରେ କୃପା ଦୃଷ୍ଟି ଫେଇ ]

ସେ ଇଉରୋପରେ ମଧ୍ୟ ଭାରତର ରୂପବତୀମାନଙ୍କୁ ପାଶୋରି ନ ଥିଲେ । :—

ମୈଁନେ ଏ ଇକ୍‌ବାଲ୍ ! ଇଉରୋପ୍ ମେଁ ଉସେ ଢୁଣ୍ଢା ଅବସ୍
ବାତ୍ ଯୋ ହିନ୍ଦୁସ୍ତାଁ । କେ ମାହ୍‌ସିମାଓଁ ମେ ଥି

---

* ଆବ୍ରାହମ୍‌ଙ୍କ ପିତା ଆଜର୍ ଜଣେ ଅଗ୍ନିପୂଜକ ଥିଲେ ।

[ଭାରତୀୟ ଲଲନାଙ୍କ ଅଙ୍ଗୁରନ୍ତ, ଉନ୍ମନା ରୂପରେ
ତୃଥାରେ ମୁଁ ଇକ୍‌ବାଲ୍, ଖୋଜବସେ ଖାଲି, ଆଜ ବଳାଣ ନାହିରେ]

ଯାର୍ଓ୍ୱାଦ୍‌ଙ୍କୁ ଉପଦେଶ ଛଳରେ ସେ କହୁଛନ୍ତି :—

ଉଠା ନ ଶିଶା ଗର୍ଗନେ ଫିରିଙ୍ଗ୍ କେ ଅହସାଁ
ସିଫାଲେ ହିନ୍ଦ୍ ସେ ମିନା ଓ ଜାମ୍ ପୈଦା କର୍ ।

[ଇଉରୋପରେ ଦର୍ପଣର ଯେ ପ୍ରସ୍ତୁତକାରୀ, ଋଣୀ କିବା ହୋଇନ୍ତ ତା'ଠାରେ
ଲୋଡ଼ା ଯେବେ ପାନପାତ୍ର, ଗଢ଼ି ନିଅ ଦାରେ ତୁମେ, ଭାରତ ମାଟିରେ । ]

ଅନ୍ୟ ଏକ ପ୍ରସଙ୍ଗରେ ଇକ୍‌ବାଲ କହନ୍ତି:—

" ପୃଥିବୀର ଏପରି ଗୁଟିଏ ବ୍ୟକ୍ତିତ୍ୱ ଅଛନ୍ତି ଯେ, ତାଙ୍କ ବଳିଷ୍ଠ ପ୍ରଭାବରୁ ଜଣେ ସହଜରେ ମୁକ୍ତି ପାଇ ପାରିବ ନାହିଁ । ସେମାନେ ହେଲେ ବେଦିଲ୍ *, ମୋଇନୁଦ୍ଦିନ୍ ଇବ୍‌ନେ ଅରବୀ **, ଶଙ୍କରାଚାର୍ଯ୍ୟ *** ଓ ହେଗେଲ୍ †।

---

* ମୀର୍ଜା ଅବ୍‌ଦୁଲ୍ କାଦର୍ ବେଦିଲ୍—ସୟଦ୍ ଅଫର୍ ଶେଖ୍ ପୃ ୭-୮ ବେଦିଲ୍ (D. 1720) ଭାରତର ଜଣେ ପ୍ରସିଦ୍ଧ ପାର୍ସି କବି ଥିଲେ । ତାଙ୍କର ଆଧ୍ୟାତ୍ମବାଦୀ କବିତା ଗାଲିବ୍‌ଙ୍କ କବିତାକୁ ଗଭୀର ଭାବରେ ପ୍ରଭାବିତ କରିଥିଲା ଏବଂ ଇକ୍‌ବାଲ୍‌ଙ୍କ କବିତା ମଧ୍ୟ କେତେକ ପରିମାଣରେ ପ୍ରଭାବିତ ହୋଇଥିଲା ।

** ମୋଇନୁଦ୍ଦିନ୍ ଇବ୍‌ନେ ଆରବୀ ( 1165-1240 ) ଜଣେ ପ୍ରସିଦ୍ଧ ମୁସଲମାନ ଫକୀର (ଯୋଗୀ) ଓ ଦାର୍ଶନିକ ଥିଲେ । ସେ ଅନ୍‌ଦୁଲେସିଆ (ବର୍ତ୍ତମାନ ସ୍ପେନ)ରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ଲେଖା ୧୦୦ରୁ ଅଧିକ । ଏବଂ ଏଥିମଧ୍ୟରୁ "ଫୁସୁସୁଲ୍ ହିକମ୍" ଓ "ଫତୁହାତେ ମକ୍କିୟା" ଇସ୍‌ଲାମିକ୍ ଦର୍ଶନ ଓ ଆଧ୍ୟାତ୍ମ ଉପରେ ଦୁଇଟି ମୁଖ୍ୟ ରଚନା ସେ "ଓ୍ୱାହେଦତୁଲ୍ ଓ୍ୱାଜୁଦ୍" ବା "ଅଦ୍ୱୈତବାଦ" ଉପରେ ବିଶ୍ୱାସ କରୁଥିଲେ ।

*** ଶଙ୍କରାଚାର୍ଯ୍ୟ (ଖ୍ରୀ ୭୮୮-୮୨୦) ଅଦ୍ୱୈତବାଦର ପ୍ରବକ୍ତା ଥିଲେ । ସେ ବ୍ରହ୍ମସୂତ୍ରର ଟୀକାକାର ଥିଲେ ।

† ହେଗେଲ୍ (ଖ୍ରୀ. ୧୭୭୦-୧୮୩୧) ଜଣେ ପ୍ରସିଦ୍ଧ ଜର୍ମାନ୍ ଦାର୍ଶନିକ ଥିଲେ । ତାଙ୍କର ଦ୍ୱନ୍ଦ୍ୱବାଦ କାର୍ଲମାର୍କସ୍‌ଙ୍କୁ ଗଭୀର ଭାବରେ ପ୍ରଭାବିତ କରିଥିଲା । ଇକ୍‌ବାଲ୍ ତାଙ୍କ କବିତାରେ ଏକଥା ସ୍ୱୀକାର କରିଛନ୍ତି ।

ତାଙ୍କର "Stray Thoughts"ରେ ଇକ୍‌ବାଲ୍ କହନ୍ତି :—"ହେଗେଲଙ୍କ ଦର୍ଶନ ହେଉଛି ଗଦ୍ୟର ଲିଖିତ ମହାକାବ୍ୟ" ।*

ଖ୍ରୀ ୧୯୨୮-୨୯ରେ ଇକ୍‌ବାଲ୍ Reconstraction of Religious Thoughts in Isalm** ଉପରେ ମାଡ୍ରାସ୍, ମହୀଶୂର ଓ ହାଇଦ୍ରାବାଦ୍‌ରେ ୭ଟି ବକ୍ତୃତା ଦେଇଥିଲେ । ସେତେବେଳେ ସେ କେବଳ ନିଜ ଦର୍ଶନର ବ୍ୟାଖ୍ୟା କରି ନ ଥିଲେ ବରଂ ଆଧୁନିକ ବୈଜ୍ଞାନିକ ପଦ୍ଧତିରେ ଇସ୍‌ଲାମ୍‌ର ମୂଲ୍ୟାୟନ କରିଥିଲେ । ତେଣୁ ଅହଂର ଧାରଣା ଉପରେ ଇଂରେଜ ଦାର୍ଶନିକ Bradleyଙ୍କର ପୁସ୍ତକ "Appearance and Reality"ର ଦୁଇଟି ଅଧ୍ୟାୟକୁ ସେ ଆଧୁନିକ ଯୁଗର ଉପନିଷଦ କହିଛନ୍ତି । ଏଥିରେ ଜୀବାତ୍ମାକୁ ଅବାସ୍ତବ ବୋଲି ବର୍ଣ୍ଣନା କରାଯାଇଛି । ତାଙ୍କ ବକ୍ତୃତାରେ କେତେକ ଉପାଦେୟ ଉଦ୍ଧୃତାଂଶ ନିମ୍ନରେ ପ୍ରଦତ୍ତ :—

ଆଧୁନିକ ଦର୍ଶନର ଅଧ୍ୟୟନ କଲେ ଜଣାଯାଏ ଯେ, ସର୍ବ ପ୍ରଥମେ Bradley "ଅହଂ" ହେଉଛି ଅବାସ୍ତବ – ଏହି ଉକ୍ତି ସପକ୍ଷରେ ଉପଯୁକ୍ତ ପ୍ରମାଣ ଦେଇଛନ୍ତି । ନୀତିଶାସ୍ତ୍ର ଦୃଷ୍ଟିରୁ ସେ ଅହଂର ବାସ୍ତବତା ସ୍ୱୀକାର କରନ୍ତି କିନ୍ତୁ ତର୍କବେଳେ ସେ ଏହାକୁ ଜ୍ଞାନପ୍ରକଳ୍ପ ବୋଲି କହନ୍ତି । Appearance and Reality ରେ Bradley ଅହଂର ବାସ୍ତବତା ଉପରେ ଗଭୀର ଭାବରେ ଆଲୋକପାତ କରିଛନ୍ତି । ବାସ୍ତବରେ ଏଥିରେ ସେ ଅହଂ କଣ, ଏହାର ସ୍ୱରୂପ କଣ ବିଷୟରେ ବେଶ୍ ଜୋର ଦେଇଛନ୍ତି । ଏହି ଅଧ୍ୟାୟ ଦୁଇଟିକୁ ଆଧୁନିକ ଉପନିଷଦ କହିଲେ ଅତ୍ୟୁକ୍ତି ହେବନାହିଁ । ଏହା ଜୀବାତ୍ମାର ବାସ୍ତବତାକୁ ଅସ୍ୱୀକାର କରେ । Bradleyଙ୍କ ମତରେ ବାସ୍ତବତା ହେଉଛି ପରିବର୍ତ୍ତନ ଓ ସ୍ଥାୟିତ୍ୱ ଓ ଐକ୍ୟ-ଅନୈକ୍ୟର ସଙ୍ଗତିହୀନ ପ୍ରତିକୂଳତାରୁ ମୁକ୍ତ । ଏହା ହେଉଛି ଅନୁଭୂତି ଓ ପ୍ରଜ୍ଞାର କେନ୍ଦ୍ର । ତେଣୁ ଅହଂର ବାସ୍ତବତା ହିଁ ମାୟା । ଏହି ପରିପ୍ରେକ୍ଷୀରେ ଆମେ ଅହଂକୁ ଅନୁଭୂତି, ଆତ୍ମ ପରିଚୟ, ଆତ୍ମା ବା ପରମେଶ୍ୱରଙ୍କ ଇଚ୍ଛା, ଯାହାକିଛି କହିଲେ ବି ଏହା ଚିନ୍ତା ନିୟମର ଅନ୍ତର୍ଭୁକ୍ତ ହେବ । ଚିନ୍ତାର ନିୟମ ହେଉଛି ପରସ୍ପର ସମ୍ପର୍କୀୟତା ଏବଂ ପ୍ରତ୍ୟେକ ସମ୍ପର୍କ ହେଉଛି ପରସ୍ପର ବିରୋଧୀ । ଯଦିଓ Bradley ତର୍କ ଛଳରେ ଅହଂକୁ ମାୟାବୋଲି କହିଛନ୍ତି ତଥାପି ସେ ସ୍ୱୀକାର କରନ୍ତି ଯେ, କୌଣସି ନା କୌଣସି ଅର୍ଥରେ ଅହଂ ହେଉଛି ବାସ୍ତବ

---

* Stray Thoughts of Islam in S. A. Vahid's "Thoughts and Reflections of Iqbal"

** "Thoughts and Reflections of Iqbal" By S. A Vahid.

ଏବଂ ସସସ୍ଥାଗତ । ଏକଥା ସହଜରେ ଅନୁମେୟ ଯେ, ଅହଂ ଏହାର ଅସୀମତା ଦୃଷ୍ଟିରୁ ଜୀବନର ଐକ୍ୟ ରୂପେ ସଂପୂର୍ଣ୍ଣ ଅଟେ । ବାସ୍ତବରେ ଦେଖିବାକୁ ଗଲେ ଐକ୍ୟ ପରେ ଏହାର ପ୍ରକୃତ ହେଉଛୁ, ସଂପୂର୍ଣ୍ଣ ସହଚ୍ଛା ଅଧିକ ଅନ୍ତର୍ବେଶି, ଅଧିକ ଫଳପ୍ରସୂ, ଅଧିକ ସମତୁଲ ଏବଂ ଏକକ । ଏକ ସଂପୂର୍ଣ୍ଣ ଏକକ ପ୍ରଚ୍ଛଧ୍ୱା ପାଇଁ ଏହାକୁ କେତେ ଭିନ୍ନ ପ୍ରକାର ବାତାବରଣ ମଧ୍ୟ ଦେଇ ଗଢ କରିବାକୁ ପଡ଼େ, ସେକଥା କିଏ ଜାଣେ ? ସଂପ୍ରତ ଅବସ୍ଥାରେ କ୍ରମାଗତ ନିଦ୍ରାର ଶିଥିଳୀକରଣ ବ୍ୟତୀତ ଏହା ନିଜର ସଂପ୍ରସାରଣର ନିରବଚ୍ଛିନ୍ନତା ରକ୍ଷା କରିବାରେ ଅକ୍ଷମ । ଏକ ସାମାନ୍ୟ ଉତ୍ତେଜନା ମଧ୍ୟ ଏହାର ଐକ୍ୟକୁ ଫଟାଇ, ନିୟନ୍ତ୍ରଣକାରୀ ଶକ୍ତିରୂପେ ଏହାକୁ ବିଫଳ କରିଦେଇପାରେ । ଯାହା-ହେଉନା କାହିଁକି, ଯେ କୌଣସି ଦୃଷ୍ଟିରୁ ସମୀକ୍ଷା ଓ ବିଶ୍ଳେଷଣ କଲେ ମଧ୍ୟ ଆମର ଅହଂବୋଧ ଅବଶ୍ୟମ୍ଭାବୀ। ଏହି ଅହଂବୋଧ ଏତେ ଶକ୍ତିଶାଳୀ ଯେ, Prof.Bradley ଏହାର ଅସ୍ତିତ୍ୱ ସ୍ୱୀକାର କରିବାକୁ ବାଧ୍ୟ ହୋଇଥିଲେ । ※

## ସ୍ୱାଧୀନତା ଆନ୍ଦୋଳନ

### ଭାରତର ସ୍ୱାଧୀନତା ପାଇଁ ଦୁଃଖ ଓ କ୍ଷୋଭ

ନିଜର କବିତା ଓ ଅନ୍ୟାନ୍ୟ ଲେଖାରେ ଇକ୍‌ବାଲ୍ ଇଂରେଜମାନଙ୍କ ଦ୍ୱାରା ଭାରତର ପରାଧୀନତା ପାଇଁ ଗଭୀର ଦୁଃଖ ଓ କ୍ଷୋଭ ପ୍ରକାଶ କରିଛନ୍ତି । ଏପରିକି ତାଙ୍କର ପ୍ରଥମ ପର୍ଯ୍ୟାୟର କବିତା "ପରିନ୍ଦେ କି ଫରିୟାଦ୍" (ପଞ୍ଜୁରୀବଦ୍ଧ ପକ୍ଷୀର ଚିତ୍କାର) ମଧ୍ୟ ଭାରତର ପରାଧୀନତା ଉପରେ ଲିଖିତ ଏକ ପ୍ରତୀକଧର୍ମୀ କବିତା । ※※

### ପରିନ୍ଦେ କି ଫରିୟାଦ୍

ଆତା ହୈ ୟାଦ୍ ମୁଝକୋ ଗୁଜ୍‌ରା ହୁଆ ଜମାନା
ଓହ୍ ବାଗ୍ କି ବାହାରେଁ ଓହ୍ ସବ୍ କା ଚହଚହାନା

ଆଜାଦିୟାଁ କାହାଁ ଅବ୍ ଓହ୍ ଅପନେ ଘୋଁସଲେ କି
ଅପ୍‌ନି ଖୁସି ସେ ଆନା, ଅପନି ଖୁସି ସେ ଯାନା

ଲଗ୍‌ତି ହୈ ଚୋଟ୍ ଦିଲ୍ ପର୍, ଆତା ହୈ ୟାଦ୍ ଜିସ୍ ଦମ୍
ଶବ୍‌ନମ୍ କେ ଆଁସୁଓଁ ପର୍ କଲ୍‌ୟୋଁ କା ମୁସ୍‌କୁରାନା

---

※ Reconstruction of Religious Thoughts in Islam (Translated by Sd. Nazir Neyazi) Page—146-148.

※※ ଇକ୍‌ବାଲ୍‌କା ସିଆସି କାର୍, ନାମା ମହମ୍ମଦ ଅହେମଦ୍ ଖାଁ ପୃ ୨୦

ଓହ ପ୍ୟାର ପ୍ୟାରୀ ସୂରତ୍ ଓହ କାମିନୀ ସି ମୂରତ୍
ଆବାଦ୍ ଜିନ୍‌କେ ଦମ୍ ସେ ଥା ମେରା ଆଶିଆନା

ଆତା ନହିଁ ସଦାଏଁ ଉନ୍‌କି ମେରେ କଫସ୍‌ମେଁ
ହୋତି ମେରି ରିହାଇ ଅଏ କାଶ୍ ମେରେ ବସ୍ ମେଁ

କ୍ୟା ବଦ୍‌ନସିବ୍ ହୁଁ ମେଁ ଘର୍‌କୋ ତରସ୍ ରହା ହୁଁ
ସାଥି ତୋ ହେଁ ଓ୍ୱତନ ମେଁ ମୈଁ କୈଦ୍ ମେଁ ପଡ଼ା ହୁଁ

ଆଇ ବାହାର୍ କଲିୟୋଁ ଫୁଲେ କି ହଁସ୍ ରହୀହେଁ
ମୈଁ ଇସ୍ ଅନ୍ଧେରେ ଘର ମୈଁ କିସ୍‌ମତ୍‌କୋ ରୋ ରହାହୁଁ

ଇସ୍ କୈଦ୍‌କା ଇଲାହି ଦୁଃଖ୍‌ଡ଼ା କିସେ ଶୁନାଉଁ
ଡ଼ର୍ ହେ ୟହିଁ କଫସ୍ ମେଁ ମୈଁ ଗମ୍ ସେ ମର ନ ଯାଉଁ ।

ଯବ୍‌ସେ ଚମନ୍ ଛୁଟା ହେ ୟେ ହାଲ୍ ହୋ ଗୟା ହେ
ଦିଲ୍ ଗମ୍ କୋ ଖା ରହା ହେ, ଗମ୍ ଦିଲ୍ କୋ ଖା ରହା ହେ

ଗାନା ଇସେ ସମଝ୍ କର୍ ଖୁସ୍ ହୋ ନ ଶୁନ୍‌ନେ ଓ୍ୱାଲେ
ଦୁଃଖେ ହୁଏ ଦିଲୋଁ କି ଫରିୟାଦ୍ ୟେ ସଦା ହେ

ଆଜାଦ୍ ମୁଝ୍‌କୋ କର୍‌ଦେ ଓ କୈଦ୍ କର୍‌ନେ ଓ୍ୱାଲେ
ମେଁ ବେଜୁବାଁ ହୁଁ କୈଦୀ ତୁ ଛୋଡ଼୍ କର୍ ଦୋଆ ଲେ ।

## ପଞ୍ଜୁରୀ-ବଦ୍ଧ ପକ୍ଷୀଟିର କରୁଣ ବିଳାପ

[ ମନେପଡ଼େ ଆଜି ମୋର, ଅତୀତର ମଧୁ-ସ୍ମୃତି-ଦିନ
ବସନ୍ତ କାଳରେ, ପକ୍ଷୀ କୂହୁତାନେ—ଭରିଥିଲା ଉପବନ

ନିଜ ନୀଡ଼ ସ୍ୱାଧୀନତା, ମୁଁ ପାଇବି ଆଉ କେଉଁଠାରେ
ମନଇଚ୍ଛା ଆତ୍ମଯାତ ସବୁ ସମୟରେ—ମୁହିଁ ଯେଉଁଠାରେ

କଳିକାର ସ୍ମିତହାସ୍ୟ, ଶିଶିରର ଅଶ୍ରୁ ବିମୋଚନେ
ମନେ ପଡ଼ିଗଲେ ଆଜି, ଦିଏ ବ୍ୟଥା, ମୋର ଏ ପରାଣେ

କମନୀୟ ରୂପ, କାନ୍ତ—ମୋ ପ୍ରାଣ ପ୍ରିୟାର
ଆନନ୍ଦ ସ୍ୱରୂପୀ ଯିଏ, ଥିଲା ସେତ ମୋ' କ୍ଷୁଦ୍ର ନୀଡ଼ର

ତା' ମଧୁର ସ୍ୱର ଆଜ ଶୁଭେ ନାହିଁ ରୁଦ୍ଧ ପଞ୍ଜୁରୀରେ
ସବେ ଖାଲି—ମୁକ୍ତ ମୋର ଆତ୍ମା କ ନିଜ ଆସ୍ଥାନରେ

କେତେ ହତଭାଗ୍ୟ ସତେ, ନିଜ ଗୃହ କାହିଁ ଆଜ କାହିଁ କେତେଦୂରେ
ସାଂଗ ସାଥୀ ମୁକ୍ତ, ମତୁଆଲ—ମୁଁ ବିଳପେ ପଞ୍ଜୁରୀ କକ୍ଷରେ

ନବୀନ କଳିକା ପଂକ୍ତି ହସୁଛନ୍ତି ବସନ୍ତ ଆଗମେ
ମୁଁ ଝୁରଇ ଅନ୍ତରରେ, ପଞ୍ଜୁରୀରେ, ଭଗ୍ନହୃଦ, ବ୍ୟଥିତ ମରମେ

ହେ ପ୍ରଭୁ ! କାହା ଆଗେ କହିବି ମୁଁ ମୋ ଦୁଃଖ ବେଦନା
ପଞ୍ଜୁରୀ ଭିତରେ ଶେଷେ, ନିଶ୍ଚିତ ମୃତ୍ୟୁରେ—ତୁଟିବ ଯାତନା

ଯେଉଁଦିନୁ ଆସିଛି ମୁଁ ଛାଡ଼ି, ମୋ ନିଜ ନୀଡ଼କୁ
ଦୁଃଖ ମୋତେ ଗ୍ରାସିଅଛି' ମୁଁ ମୋର ଦୁଃଖକୁ

ଆନନ୍ଦିତ ନ ହୁଅନ୍ତୁ ଶ୍ରୋତାମାନେ, ଶୁଣି ଆଜ ମୋର ଆର୍ତ୍ତ ଚିତ୍କାର
ବୁଲ୍ବୁଲିର କାହାଣୀ ନୁହେଁ, ବ୍ୟଥିତ ପ୍ରାଣର ଏହା କରୁଣ ଚୀତ୍କାର

ଛାଡ଼ିଦେ, ଛାଡ଼ିଦେ ବ୍ୟାଧ ! ମୋ' ମନର ଶୁଭାଶିଷ ନିଅ
ମୁକ୍ତ କର ବନ୍ଦ ଜୀବନକୁ—ମୁକ୍ତ ସ୍ୱାଦେ ପ୍ରାଣ ଭରିଦିଅ । ]

ରାଜନୈତିକ ପରାଧୀନତା, ଭାରତୀୟମାନଙ୍କର ଚିନ୍ତାଧାରା ଏବଂ ଗୃହ-ଚଳଣକୁ ଚୂର୍ଣ୍ଣ କରି ଦେଉଥିବାର ଦେଖି ଇକ୍ବାଲ୍ଙ୍କ ଅନ୍ତର ବିପ୍ଳବ କରି ଉଠୁଥିଲା । ତେଣୁ ସେ ଭାଷାରେ ପ୍ରକାଶ କରିଛନ୍ତି :—

ବନ୍ଦଗୀ ମେଁ ଘୁଟ୍‌କେ ରହ ଯାତି ହୈ ଏକ୍ ଜୁଏ କମ୍ ଆବ୍
ଔର ଆଜାଦି ମେଁ ଦରିୟା ବେକରାଁ ହୈ ଜିନ୍ଦଗୀ

ଅପ୍‌ନେ ମନ୍‌ମେଁ ଡୁବ୍ କର୍ ପା ଯା ସୁରାଗେ ଜିନ୍ଦଗୀ
ତୁ ଅଗର୍ ମେରା ନହିଁ ବନ୍‌ତା ନ ବନ୍, ଅପ୍‌ନା ତୋ ବନ୍

ମନ୍ କି ଦୁନିଆ ? ମନ୍ କି ଦୁନିଆ ସୋଜ ଓ ମସ୍ତି ଜଜ୍‌ବ୍ ଓ ଶୌକ୍
ତନ୍‌କି ଦୁନିଆ ? ତନ୍‌କି ଦୁନିଆ ସୁଦ୍ ଓ ସୌଦା ଫିକ୍‌ର୍ ଓ ଫନ୍

ମନ୍‌କି ଦୌଲତ୍ ହାଥ୍ ଆତି ହୈ ତୋ ଫିର ଯାତି ନହିଁ
ତନ୍‌କି ଦୌଲତ୍ ଛାଓଁ ହୈ ! ଆତା ହୈ ଧନ୍ ଯାତା ହୈ ଧନ୍

ମନ୍‌କୀ ଦୁନିଆ ମେଁ ନପାୟ୍ୱା, ମୈଁନେ ଅଫ୍‌ରଂଗୀକା ରାଜ୍
ମନ୍‌କୀ ଦୁନିଆ ମେଁ ନ ଦେଖେ ମୈଁନେ ଶେଖ୍ ଓ ବରହମନ

ପାନି ପାନି କର ଗଇ ମୁଝ୍‌କୋ କଲନ୍ଦର୍ କୀ ୟେହ୍ ବାତ୍
ଯବ୍ ଝୁକା ତୁ ଗୈର୍ କେ ଆଗେ ନ ତନ୍ ତେରା ନ ଧନ୍

× × ×

ଥା ଯୋ ନାଖୁବ୍ ବତଦ୍‌ରିଜ୍ ଓହି ଖୁବ୍ ହୁଆ
କେ ଗୋଲାମୀ ମେଁ ବଦଲ୍ ଯାତା ହେ କୌମୋଁ କା ଜମିର୍

ଭରୋସା କର୍ ନହିଁ ସକ୍‌ତେ ଗୋଲମୋଁ କ ବସିରତ୍ ପର୍
କେ ଦୁନିଆ ମେଁ ଫକତ୍ ମରଦାନେ ହୁର୍ କ ଆଁଖ୍ ବିନା ହୈ ।

[ ସତ୍ୟ ଭେଦ କର ମନ ! ଆପଣା ମନକୁ ପୁଛି
ନିଜର ନିକେ ହୋଇ ଯା, ମୋର ହୁଅ, ପଛେ ହେଲେ ନାହିଁ

ନୀତିଯୁକ୍ତ ଭାବ ପ୍ରବଣତା ଆଉ ଏକାଗ୍ରତା—ତାହା ହିଁ ତ ଆତ୍ମାର ସଂସାର
ଲୋଭ କ୍ଷତ, ହସାକ ନିକାଶ, କୁଟ କପଟତା—ତାହା ଅଟେ ଦେହର ସଂସାର

ହୃଦୟ ଧନରେ ଥରେ ଧନୀ ହେଲେ, ଆଉ ସେ ତ ସରେ ନାହିଁ
ଦେହର ସମ୍ପଦ ଛାଇ ପରକାର, ଧନ ଆସେ ଯିବାପାଇଁ

ହୃଦୟ ସାମ୍ରାଜ୍ୟେ ବିଦେଶୀ ଶାସନ, ଆସିବ ବା କାହୁଁ ଭଲ
ଧର୍ମ ପ୍ରଚାରକ—ଶେଖ୍ ଓ ଫକୀର, ନ ଲଗାନ୍ତି ତହିଁ ପାଲ

ଫକୀର ବଚନେ ଲଜ୍ଜିତ ହେଲି, କେତେ ସତ କହିଗଲେ
"ଦେହ, ମନ ତୋର ନଷ୍ଟ ହେବ ସିନା – ଅପରେ ମୁଣ୍ଡ ନୋଇଁଲେ

ଯିଏ ଭଲ ଥିଲା, କ୍ରମେ ମନ୍ଦ ହେଲା—ପରାଧୀନତାର ଗତି
ଜାତିର ବିବେକ, ଜ୍ଞାନ ଗଉରବ, ଅଧୀନସ୍ଥ ହେଲେ—ବଦଳି ଯାଏ ସେ ମତି

ଯିଏ ପରାଧୀନ, ତା' ଭବିଷ୍ୟ ସ୍ୱପ୍ନ—କେବେ ବି ସଫଳ ନୁହେଁ
ସ୍ୱାଧୀନ ଦେଶରେ ସ୍ୱାଧୀନ ମାନବ—ସେହି ଏକା ଉର୍ଦ୍ଧ୍ୱେ ରୁହେଁ । ]

## ସ୍ୱଦେଶୀ ଆନ୍ଦୋଳନକୁ ସମର୍ଥନ

ଗାନ୍ଧିଜୀଙ୍କ ସ୍ୱଦେଶୀ ଆନ୍ଦୋଳନକୁ ଇକ୍‌ବାଲ୍ ସମର୍ଥନ କରିଥିଲେ । କାନ୍‌ପୁର୍'ର "ଜାମାନା" ପତ୍ରିକାର ମେ, ୧୯୦୭ ସଂଖ୍ୟାରେ ପ୍ରକାଶିତ ଇକ୍‌ବାଲ୍‌ଙ୍କ

ଚିଠି, ଯାହା ସେ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରୁ ଲେଖିକରି ପଠାଇଥିଲେ, ତାହା ଏ କଥାର ପ୍ରମାଣ ଦିଏ । ତାଙ୍କ ଚିଠିର ନିମ୍ନଲିଖିତ ଉଦ୍ଧୃତାଂଶରୁ ଜଣାଯାଏ ଯେ, ନିଜ ମାତୃଭୂମିର ସ୍ୱାଧୀନତା ପାଇଁ ଜାତି ଜାତି ମଧ୍ୟରେ ସ୍ନେହ, ସଦ୍‌ଭାବର ପ୍ରତିଷ୍ଠା ପାଇଁ ତଥା ଭାରତବର୍ଷକୁ ଏକ ଉନ୍ନତ ଓ ସମୃଦ୍ଧ ଦେଶ ରୂପେ ଗଢ଼ିତୋଳିବା ପାଇଁ ତାଙ୍କର ଆତ୍ମା କିପରି କ୍ରନ୍ଦନ କରୁଥିଲା—-

"ସ୍ୱଦେଶୀ ଆନ୍ଦୋଳନ କେବଳ ଭାରତ ପାଇଁ ନୁହେଁ, ବରଂ ଯେଉଁ ଦେଶ-ଗୁଡ଼ିକର ଅର୍ଥନୈତିକ ଓ ରାଜନୈତିକ ଅବସ୍ଥା ଭାରତ ପରି, ସେମାନଙ୍କ ପାଇଁ ମଧ୍ୟ ମଙ୍ଗଳମୟ । ଅର୍ଥନୈତିକ ଅବସ୍ଥାର ଉନ୍ନତି ନ ହେଲେ କୌଣସି ଦେଶ ରାଜନୈତିକ ସ୍ୱାଧୀନତା ହାସଲ କରିପାରିବ ନାହିଁ । ସମସ୍ତେ ରାଜନୈତିକ ସ୍ୱାଧୀନତା ପାଇଁ ଚିତ୍କାର କରୁଛନ୍ତି କିନ୍ତୁ କେହି ଭାବୁନାହାନ୍ତି ଯେ ରାଜନୈତିକ ସ୍ୱାଧୀନତାର ପ୍ରଥମ ସୋପାନ ହେଉଛି ଅର୍ଥନୈତିକ ଉନ୍ନତି ……ଯାହା ହେଉ ବର୍ତ୍ତମାନ ଆମ ଦେଶବାସୀ ଏ ଦିଗ ପ୍ରତି ସଜାଗ…… ରାଜନୈତିକ ସ୍ୱାଧୀନତାର ଦ୍ୱିତୀୟ ସୋପାନ ହେଉଛି, ଜାତି ମଧ୍ୟରେ ଥିବା ସମସ୍ତ ବ୍ୟକ୍ତିଙ୍କର ଉଦ୍ଦେଶ୍ୟ ଏକ ହେବା । ଉଦ୍ଦେଶ୍ୟ ଏକ ନ ହେଲେ ଜାତୀୟତା ତିଷ୍ଠି ରହିବ ନାହିଁ । ବ୍ୟକ୍ତିସମୂହ ଜାତୀୟତା ବନ୍ଧନରେ ଏକ ନ ହେଲେ, ପ୍ରକୃତିର ନିୟମ ତାଙ୍କୁ ଧରା ପୃଷ୍ଠରୁ ନିଶ୍ଚିହ୍ନ କରିଦେବ । ପ୍ରକୃତି କୌଣସି ବ୍ୟକ୍ତି ବା କୌଣସି ନିର୍ଦ୍ଦିଷ୍ଟ ଗୋଷ୍ଠୀକୁ ଭ୍ରୂକ୍ଷେପ କରେ ନାହିଁ । ଅତ୍ୟନ୍ତ ପରିତାପର ବିଷୟ ଯେ, ଲୋକେ "ଏକତା" "ଏକତା" ବୋଲି ଉଚ୍ଚାରେ ଚିତ୍କାର କରୁଛନ୍ତି । ବାସ୍ତବତଃ "ଏକତା" ନାହିଁ । ଆମକୁ ବାକ୍ୟବୀର ପରିବର୍ତ୍ତେ କର୍ମବୀର ହେବାକୁ ପଡ଼ିବ । ପୃଥିବୀରେ ଧର୍ମ ବିଭେଦ ଦୂରୀଭୂତ କରି ଶାନ୍ତି ଓ ଏକତା ପ୍ରତିଷ୍ଠା କରେ ।… ମୋ ମତରେ ମୁସଲମାନମାନେ ସ୍ୱଦେଶୀ ଆନ୍ଦୋଳନ ଦ୍ୱାରା ଅନୁପ୍ରାଣିତ ହେବେ । ଜନୈକ ଭଦ୍ରବ୍ୟକ୍ତି କୌଣସି ସମ୍ବାଦପତ୍ରରେ ଏକ ଚିଠି ପ୍ରକାଶ କରିଥିଲେ ଯେ, ସ୍ୱଦେଶୀ ଆନ୍ଦୋଳନ ଦ୍ୱାରା ମୁସଲମାନ୍ ମାନେ କୌଣସି ଉପକାର ପାଇବେ ନାହିଁ, କାରଣ ସେମାନେ ମୁଖ୍ୟତଃ କୃଷକ । ପଞ୍ଜାବରେ ପ୍ରଚଳିତ ଅବସ୍ଥା ପାଇଁ ତାଙ୍କର ଏ ମତାମତ ଠିକ୍ ନୁହେଁ । ତଥାପି ଏ କଥା ଅନେକାଂଶରେ ସତ୍ୟ ଯେ, ମୁସଲମାନମାନେ କୃଷକ ହୋଇଥିବାରୁ ସ୍ୱଦେଶୀ ଆନ୍ଦୋଳନରୁ କିଛି ଉପକାର ପାଇବେ ନାହିଁ…… ଧୈର୍ଯ୍ୟ ଓ ନିଷ୍ଠାର ସହ ଅଗ୍ରସର ହେଲେ, ଏହି ଆନ୍ଦୋଳନ ନିଶ୍ଚିତରୂପେ ସଫଳ ହେବ… ଆନ୍ତରିକତାର ସହିତ ଆମର ଶପଥ କରିବା ଉଚିତ ଯେ, ଆମେ ବିଦେଶୀ ଜିନିଷ ବ୍ୟବହାର କରିବୁ ନାହିଁ…… ଯଦି ଏହି ସ୍ୱଦେଶୀ ଆନ୍ଦୋଳନରେ ହିନ୍ଦୁ ଓ ମୁସଲମାନ ଉଦ୍ଦେଶ୍ୟ ଦୃଷ୍ଟିରୁ ଏକ ହୋଇଯାଆନ୍ତି, ତେବେ ବହୁତ କିଛି ହେବ । ଭଗବାନ କରନ୍ତୁ,

ଭାରତର ସୁପ୍ତ ଭାଗ୍ୟ ଜାଗ୍ରତ ହେଉ ଏବଂ ମୋ ଦେଶର ନାମ ପୃଥିବୀ ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହେଉ ।" *

ଏ ଚିଠିଟି ବିଳାତରୁ ପ୍ରେରିତ ହୋଇଥିଲା । ଏଠାରେ ଲକ୍ଷ୍ୟ କରିବା କଥା ଯେ, ଇକ୍‌ବାଲ୍ ଭାରତର ତତ୍କାଳୀନ ମୁସ୍‌ଲିମ୍ ନେତୃବର୍ଗଙ୍କ ପ୍ରତି ଭ୍ରୂକ୍ଷେପ ନ କରି ବଙ୍ଗ ବିଭାଜନକାରୀ ତଥା ସ୍ୱଦେଶୀ ଆନ୍ଦୋଳନର ପରିପନ୍ଥୀମାନଙ୍କୁ ବିରୋଧ କରୁଥିଲେ ।

## ଜାମିଆ ମିଲିଆ ଇସ୍‌ଲାମିଆର କୁଳପତି ପଦ ଅର୍ପଣ

ଜାମିଆ ମିଲିଆ ଇସ୍‌ଲାମିଆ ପ୍ରତିଷ୍ଠା ସମୟରେ ଗାନ୍ଧିଜୀ ଇକ୍‌ବାଲ୍‌ଙ୍କୁ ଏହାର କୁଳପତି ରୂପେ ବାଛିବା ପାଇଁ ସ୍ଥିର କରିଥିଲେ । ଏହି ଦାୟିତ୍ୱ ଗ୍ରହଣ କରିବା ପାଇଁ ଗାନ୍ଧିଜୀ ତାଙ୍କ ପାଖକୁ ଏକ ତାରବାର୍ତ୍ତା ପଠାଇଲେ । ** ପରେ ପରେ ଗାନ୍ଧିଜୀ ତାଙ୍କ ନିକଟକୁ ନିମ୍ନୋକ୍ତ ପତ୍ର ପ୍ରେରଣ କରିଥିଲେ ।*** ଚିଠି ସହ ଅନୁରୋଧ କରିଥିଲେ ଯେ, ନୂତନ ବିଶ୍ୱବିଦ୍ୟାଳୟଟି ତାଙ୍କର ବ୍ୟୁତ୍ପନ୍ନ ତତ୍ତ୍ୱାବଧାନ ଦ୍ୱାରା ବିକଶିତ ହେଉ :—

ମୁସ୍‌ଲିମ୍ ଜାତୀୟ ବିଶ୍ୱବିଦ୍ୟାଳୟ ( ଜାମିଆ ମିଲିଆ ଇସ୍‌ଲାମିଆ ) ଆପଣଙ୍କୁ ଆହ୍ୱାନ କରୁଛି । ମୋର ଦୃଢ଼ ବିଶ୍ୱାସ, ଆପଣ ଏହାର ଦାୟିତ୍ୱ ଗ୍ରହଣ କଲେ, ଆପଣଙ୍କ ବ୍ୟୁତ୍ପନ୍ନ ତତ୍ତ୍ୱାବଧାନ ଦ୍ୱାରା ଏହାର ଉନ୍ନତି ସାଧିତ ହେବ ।

Dear Dr. Iqbal,

The Muslim National University **** calls you. If you could but take charge of it, I am sure that it will prosper under your cultured leadership.

---

* "Anwar-e-Iqbal" Bashir Ahmed Dar (Page—25)

** The collected Works of Mahatma Gandhi – Vol. XIX (1920-21) Page – 34

*** The addressee's reply dated Nov. 29, 1920, says that Gandhiji's letter was received two days earlier.

**** At Aligarh

Hakimji Ajmal Khan * and Dr. Ansari ** and of course the Ali Brothers desire it. I wish you could see your way to respond. Your expenses on a scale suited to the new awakening can be easily guaranteed. Please reply Allahbad, care Pandit Nehru.

Yours sincerely

Sd/ M. K. Gandhi***

ଇକ୍‌ବାଲ ଏହି ପଦବୀ ଗ୍ରହଣ କରିବାର ଅନିଚ୍ଛା ପ୍ରକାଶ କରି ଗାନ୍ଧିଜୀଙ୍କୁ ନିମ୍ନ ଉତ୍ତରଟି ପଠାଇଥିଲେ ।

"Thank you so much for your letter which I received the day before yesterday. I regret very much my inability to respond to the call of those for whom I have the highest respect, for reasons which need not and perhaps cannot be mentioned at present. While I am a strong supporter of National Education I do not think I possess all the necessary qualifications

---

* Hakim Ajmal Khan (1865-1927), Eminent Muslim Physician and Politician who took a leading part in the Khilafat movement, President Indian National Congress. (1921-1922)

** Dr. Mukhtar Ahmed Ansari (1830-1936); a nationalist Muslim leader; President, Indian Muslim League, 1920, President National Congress 1927-1928

Gandhiji reached Allahabad on November 28, 1920 and stayed there for four days.

for the guidance of a University which requires a man who would steer the infant institution through all the struggles and rivalries likely to arise in the earlier stages of its life. And I am, by nature a peace-time worker." *

## ଗାନ୍ଧିଜୀଙ୍କ ଉପରେ କବିତା

୨୧ ନଭେମ୍ବର ୧୯୨୧ର ଦୈନିକ "ଜମିଦାର" ନାମକ ସମ୍ବାଦପତ୍ରରେ ପ୍ରକାଶିତ ନିଜର ଏହି କବିତାରେ ଇକ୍‌ବାଲ୍ ଗାନ୍ଧିଜୀଙ୍କୁ ** "କର୍ମବୀର, ସନ୍ଥ ପୁରୁଷ ଓ ମହତ୍ତ୍ୱ" ମନୀଷୀ ରୂପେ ପରିଚିତ କରାଇଛନ୍ତି :—

ଗାନ୍ଧିଜୀ ସେ ଏକ୍ ରୋଜ୍ କହ୍‌ତେ ଥେ ମାଲଓ୍ୱି
କମ୍‌ଜୋର୍ କି କନ୍ଧେ ହୈ ଦୁନିଆ ମେଁ ନାରସା

ନାଜୁକ୍ ଏ ସଲ୍‌ତନତ୍ ସିଫତେ ବର୍ଗେ ଗୁଲ୍ ନହିଁ
ଲେ ଯାଏ ଗୁଲସ୍ତାଁ ସେ ଉଡ଼ାକର୍ ଜିସେ ସବା

ଗାଢ଼ା ଇଧର୍ ହୈ କେବେ ବଦନ୍ ଅଓ୍ୱର୍ ଇଧର୍ ଜରାହ
ଯର୍‌ଯର୍ କି ରହ୍‌ଗୁଜାର୍ ମେଁ କ୍ୟା ଅର୍‌ଜେ ତୁଢିଆ

ପିସ୍‌କର୍ ମିଲେଗା ଗର୍ଦେ ରହେ ରୋଜ୍‌ଗାର୍ ମେଁ
ଦାନା ଜୋ ଆସିୟା ସେ ହୁଆ କୁଓ୍ୱତ୍ ଆଜ୍‌ମା

ବୋଲା ଏ ବାତ୍ ସୁନ୍‌କେ କମାଲେ ଓକାର୍ ସେ
ଓ ମର୍ଦେ ପୋଖ୍‌ତାକାର ଓ ହକ୍‌ଅନ୍ଦେଶ୍ ଓ ବା ସଫା

ଖାରି ହରଫେ ଯଇଏ ଜଇଫାଁ ନମି ଶଓ୍ୱଦ୍
ଯଦ୍ କୁର୍ ଇସ୍ତ୍ ଦର୍ ବୁନେ ଦନ୍ଦାଁ ଫେଲ୍ ଗ

---

* Reproduced from Donald P. Littla, Essays on Islamic Civilization presented to Niyazi Berkes (Leider, 1976), P. 212 (Ed) – Speeches, writings and statements of Iqbal Latif Ahmed Sherwani-P 203.

** ଯର୍‌ଗୁଜସ୍ତେ ଇକ୍‌ବାଲ୍ : ଅବ୍ଦୁଲ୍ ସଲାମ ଖୁର୍‌ଶିଦ୍ — ପୃ- ୧୫୦-୧୫୧

[ ପଣ୍ଡିତ ମାଳବ୍ୟ ଗାନ୍ଧିଜୀଙ୍କୁ ଯେବେ କହିଥିଲେ ସେହିକଥା
ଦୁର୍ବଳ ଜନ, ଜୀବନ ସଂଗ୍ରାମେ, ଲକ୍ଷ୍ୟ ସିଦ୍ଧିରେ ଲଗାଇ ପାରେନି ମଥା ।

ସାମ୍ରାଜ୍ୟ ପ୍ରତିଷ୍ଠା କଳପନା କେବେ ନୁହଇ ଗୋଲପ ସର
ବାତ୍ୟା ପବନ ଉଡ଼ାଇ ନେବଟି, କଅଁଳ ପାଙ୍ଖୁଡ଼ା ପର

ସୂତା, ଖଦଡ଼ ପୋଷାକ ଅଟେ ଖଦ୍ଦରର
ସାଜ୍ଞ୍ଚୁ ପରିହିତ ଦେହ, ଇଂରେଜ ଜାତିର

ବାତ୍ୟା ଆଗରେ ସାମାନ୍ୟ ଧୂଳିର—ଶକ୍ତି ତାର ବା କେତେ
ପଥର ଖଣ୍ଡିଏ, ଯୁଝିବ ବା କାହୁଁ— ଅମାପ ଶକ୍ତ ପର୍ବତେ

ସତ୍ ପୁରୁଷ ସିଏ, କର୍ମବୀର ସିଏ—ମନୀଷୀ ଉତ୍ତର ଦେଲେ
"ପଥର ବି ଯୁକ୍ତା ପାଣି ଫାଟିଯିବ—ଅଦମ୍ୟ ଉଦ୍ୟମ ବଳେ ।" ]

ଇକ୍‌ବାଲ୍ ଯେଉଁ ଦୁଇଟି ଜାତୀୟ ଦୁର୍ଘଟଣାରେ ବ୍ୟଥିତ ହୋଇଥିଲେ, ତାହା ନିମ୍ନରେ ପ୍ରଦତ୍ତ—

## ଜାଲିଆନାୱାଲାବାଗ୍‌ର ସାଂଘାତିକ ହତ୍ୟାକାଣ୍ଡ

ଜାଲିଆନାୱାଲାବାଗ୍‌ର ନିଷ୍ଠୁର ହତ୍ୟାକାଣ୍ଡ * ଇକ୍‌ବାଲ୍‌ଙ୍କ ଅନ୍ତରାତ୍ମାକୁ ବିଶେଷ ଭାବରେ ଆନ୍ଦୋଳିତ କରିଥିଲା, ବୋଧହୁଏ ନିମ୍ନ ପଦ୍ୟାଂଶରେ ଇକ୍‌ବାଲ୍ ସେହି ନିଷ୍ଠୁର ହତ୍ୟାକାଣ୍ଡ ବିଷୟ ସୂଚାଇଛନ୍ତି—

ହର୍ ଜାଏରେ ଚମନ୍ ସେ ୟେ କହତି ହୈ ଖାକେ ପାକ୍,
ଗାଫିଲ୍ ନ ରହି ଜହାନ ମେ ଗର୍ଦୋଁ କି ଚାଲ୍ ସେ ।
ସିଁଚ୍ ଗୟା ହୈ ଖୁନେ ଶହିଦାଁ ସେ ଇସ୍‌କା ତୁଖମ୍
ତୁ ଆଁସୁଅଁ କା ବୁଖଲ୍ ନକର୍ ଇସ୍ ନିହାଲ୍ ସେ

[ଶହୀଦ୍ ରକ୍ତ-ରଞ୍ଜିତ, ଆମ ପୁଣ୍ୟଭୂମି, କହଇ ନିଜ କାହାଣୀ
ସମୟର ସ୍ରୋତ, ପ୍ରତିଟି ମୁହୂର୍ତ୍ତି—ରଖିଥା ତୀକ୍ଷ୍ଣ ଚାହାଣୀ

ଏ ମାଟିର ଧୂଳିକଣା, ଶହୀଦ୍ ରକ୍ତରେ, ହୋଇଛି ଆଜି ପ୍ଲାବିତ
ଅଶ୍ରୁ ବିମୋଚନ ପାଇଁ ତୁମ ନେତ୍ର, ହୁଅଇ କିମ୍ପା କୁଣ୍ଠିତ !]

---

* ବାଲ୍ୟାତେ ଇକ୍‌ବାଲ୍—ଅବ୍‌ଦୁଲ୍ ଓ୍ୱାହିଦ୍ ମୋଇନି ଓ ଅବ୍‌ଦୁଲ୍ଲା କୋରେଶି, ପୃ. ୨୩୮

ଅବଶ୍ୟ ଇକ୍‌ବାଲ୍‌ଙ୍କ ଉପରୋକ୍ତ ପଂକ୍ତି ତାଙ୍କର କୌଣସି ସଂକଳନରେ ସ୍ଥାନ ପାଇନାହିଁ ।

## ଚୌରିଚୌରା ଘଟଣା

ଚୌରିଚୌରାରେ ଘଟିଥିବା ନିଷ୍ଠୁର ଘଟଣା ଇକ୍‌ବାଲ୍‌ଙ୍କୁ ବିଶେଷ ଭାବେ ପ୍ରଭାବିତ କରିଥିଲା । ନିଜର ଏକ ପତ୍ରରେ ଏହି ନିଷ୍ଠୁର ଘଟଣା ସମ୍ପର୍କରେ ସେ ଲେଖିଛନ୍ତି,—"ଗାନ୍ଧୀଙ୍କ ଗିରଫ ହେବା ପରେ ଭାରତର ବାତାବରଣ ନିଶ୍ଚିତ ରୂପେ ଶାନ୍ତ ହୋଇଯାଇଛି କିନ୍ତୁ ସବୁଠ ସେହି କରୁଣ ଭାବୋଚ୍ଛ୍ୱାସ । ଏତେ ଅଳ୍ପ ସମୟ ମଧ୍ୟରେ ଏପରି ଏକ ବିପ୍ଳବ ସଂଘଟନ, ପୃଥିବୀ ଇତିହାସରେ ଅଦ୍ୱିତୀୟ । ଆମ୍ଭେମାନେ ବିପ୍ଳବ ଦ୍ୱାରା ପ୍ରଭାବିତ ହେଲେ ସୁଦ୍ଧା, ଏଥିର ଗୁରୁତ୍ୱ ଉପଲବ୍‌ଧି ହୋଇନାହିଁ । ଭବିଷ୍ୟତ ବଂଶଧର ଏହି ଅହିଂସା ଆନ୍ଦୋଳନର ଇତିହାସ ପାଠକରି ବିସ୍ମିତ ହେବେ । ※

ସ୍ୱାଧୀନତା ଆନ୍ଦୋଳନ ପାଇଁ ଆମ ପୂର୍ବପୁରୁଷଙ୍କ ତ୍ୟାଗ ଓ ଆତ୍ମବଳି ଆମର ବର୍ତ୍ତମାନ ବଂଶଧରମାନଙ୍କୁ ସେତିକି ପରିମାଣରେ ଉଦ୍‌ବୁଦ୍ଧ କରି ନ ପାରିବା ଏକ ଆଶ୍ଚର୍ଯ୍ୟ କଥା । ଜାତୀୟ ସଂହତି ଓ ଏକତା ରକ୍ଷା ପାଇଁ ସ୍ୱାଧୀନତା ଆନ୍ଦୋଳନର ଦୀର୍ଘ ଇତିହାସ, ଆମର ବର୍ତ୍ତମାନ ଓ ଭବିଷ୍ୟତ ବଂଶଧରମାନଙ୍କ ଆଗରେ ପ୍ରାଞ୍ଜଳ ଭାବରେ ଉପସ୍ଥାପିତ କରିବା ମଧ୍ୟ ଏକ ମୁଖ୍ୟ ଜାତୀୟ କର୍ତ୍ତବ୍ୟ ।

## ସର୍ବଭାରତୀୟ ମୁସ୍‌ଲିମ୍ ଲିଗ୍ ଅଧିବେଶନରେ ସଭାପତି ଆସନରୁ ଇକ୍‌ବାଲ୍‌ଙ୍କ ଭାଷଣ

ଏଲାହାବାଦଠାରେ ୨୯ ଡିସେମ୍ବର ୧୯୩୦ରେ ଅନୁଷ୍ଠିତ ହୋଇଥିବା ସର୍ବଭାରତୀୟ ମୁସଲିମ୍ ଲିଗ୍ ଅଧିବେଶନରେ ସଭାପତିତ୍ୱ କରି ଇକ୍‌ବାଲ୍ କହିଥିଲେ—

ଭାରତର ରାଜନୈତିକ ପରାଧୀନତା ସମଗ୍ର ଏସିଆ ପାଇଁ ଏକ ଦୁଃଖର କାରଣ । ଏହି ପରାଧୀନତା ପ୍ରାଚ୍ୟ ଭୂଖଣ୍ଡର ଆତ୍ମାକୁ ରକ୍ତାକ୍ତ କରିଛି । ତା' ସହିତ ଗୌରବୋଜ୍ଜ୍ୱଳ ସଂସ୍କୃତିର ପାଣ୍ଡିତ୍ୟପୂର୍ଣ୍ଣ ଚଞ୍ଚଳ ବାକ୍‌ଶକ୍ତି ଓ ଆନନ୍ଦର ମଧ୍ୟ କଣ୍ଠରୋଧ କରିଛି । ଭାରତର ଭାଗ୍ୟ ସହ ଆମ୍ଭମାନଙ୍କର ଜୀବନ ଓ ମୃତ୍ୟୁ ଜଡ଼ିତ, ତେଣୁ ସେହି ଜନନୀ ପାଇଁ ଆମର ଯଥେଷ୍ଟ କର୍ତ୍ତବ୍ୟ ରହିଛି ।

---

※ "ସର୍‌ଗୁଜସ୍ତେ ଇକ୍‌ବାଲ୍"—ପୃ. ୧୫୧

※ Saul Bellowଙ୍କ କାହାଣୀର ଏକ ନାୟକର ଉକ୍ତିପରି ଇକ୍‌ବାଲ୍‌ଙ୍କ ଅନୁଭବ ନିମ୍ନୋକ୍ତ ଉକ୍ତିରେ ପ୍ରତିଫଳିତ—

"I was never my own. I was only loaned to myself."

(ମୁଁ କେବେ ନିଜେ ନିଜର ନ ଥିଲି । ନିଜ ପାଖରେ ବନ୍ଧା ପଡ଼ିଥିଲି)

## ପାଶ୍ଚାତ୍ୟ ଅନୁଗାମୀମାନଙ୍କୁ ଇକ୍‌ବାଲ୍‌ଙ୍କ ନିନ୍ଦା

ଚଉଦଶତାର ସହିତ ଦୁଇଟି ଉପାୟରେ ଏହି ପରିସ୍ଥିତିର ମୁକାବିଲା କରିବା ପାଇଁ ଇକ୍‌ବାଲ ପରାମର୍ଶ ଦେଇଥିଲେ । ପ୍ରଥମଟି ହେଉଛି କଠୋର ଭାଷାରେ, ପାଶ୍ଚାତ୍ୟ ଶିକ୍ଷା, ପାଶ୍ଚାତ୍ୟ ଚିନ୍ତା ପାଶ୍ଚାତ୍ୟ, ସଭ୍ୟତା ଓ ପାଶ୍ଚାତ୍ୟ ପରମ୍ପରାକୁ ନିନ୍ଦା କରିବା । ଏଠାରେ ଏହି ବିଷୟ ଉପରେ ମୁଁ ବିଶେଷ ଜୋର ଦେବାକୁ ଚାହୁଁନାହିଁ । ଇକ୍‌ବାଲ୍‌ଙ୍କର କୋଡ଼ିଏଟି ପଂକ୍ତି ଉଦାହରଣ ଦେଲେ ଏ ବିଷୟ ପ୍ରାଞ୍ଜଳ ହୋଇଯିବ ।

ଅଭିତକ୍ ଆଦମି ସଏଦେ ଯବ୍ରନେ ଶହର୍-ୟାର ହୈ
କୟାମତ୍ ହୈ କେ ଇନ୍‌ସାଁ ନୋଏ ଇନ୍‌ସାଁ କା ଶିକାର୍ ହୈ

ଗର୍‌ଚେ ମକତବ୍ କା ଯଓ୍ୱାଁ ଜିନ୍ଦା ନଜର୍ ଆତା ହୈ
ମୁର୍ଦା ହୈ ମାଙ୍ଗ୍ କେ ଲୟା ହୈ ଫରଙ୍ଗୀ ସେ ନଫସ୍

ନଜ଼ର କୋ ଖିର୍ କର୍‌ତି ହୈ ଚମକ୍ ତହ୍‌ଜିବେ ହାଜିର୍ କି
ୟେ ସନ୍ନାଈ ମଗର୍ ଝୁଟେ ନଗୋଁ କି ରେଜାକାରୀ ହୈ

ଓ ହିକ୍‌ମତ୍ ନାଜ୍ ଥା ଯିସ୍‌ପର୍ ଖିରଦ୍‌ମନ୍ଦାନେ ମଗ୍‌ରିବ୍ କୋ
ହଓ୍ୱସ୍ କେ ପଞ୍ଜାଏ ଖୁନି ମେ ତେଗେ କାର୍‌ଜାର ହୈ

ୟେ ହୁରିୟା ନେ ଫରଙ୍ଗୀ ଦିଲ୍ ଓ ନଜର୍ କା ହିଜାବ୍
ବହିଶ୍‌ତେ ମଗ୍‌ରିବୀଆଁ ଯଲଓ୍ୱାହାଏ ପା ବ ରକାବ୍

ଗର୍‌ଚେ ହୈ ଦିଲ୍‌କୁଶା ବହୁତ୍ ହୁସ୍‌ନେ ଫରଙ୍ଗ୍ କି ବାହାର୍
ତାଏର୍‌କେ ବୁଲନ୍ଦ୍ ବାଲ୍ ଦାନା ଓ ଦାମ୍ ସେ ଗୁଜର୍

ବୁରା ନ ମାନ୍ ଜରା ଆଜ୍‌ମା କେ ଦେଖ୍ ଇସେ
ଫରଙ୍ଗ୍ ଦିଲ୍ କି ଖରାବି, ଖିରଦ୍ କି ମାମୁରି

※ ନୋବେଲ୍ ପୁରସ୍କାର ବିଜେତା ଆମେରିକୀୟ ଔପନ୍ୟାସିକ ।

ପିରେ ମୈଖାନା ଯୋ କହ୍‌ତା ହୈ କେ ଅଏଓ୍ୱାନେ ଫରଙ୍ଗ୍
ସୁସ୍ତ୍ ବୁନିଆଦ୍ ଭି ହୈ, ଆଇନା ଦଓ୍ୱାର୍ ଭି ହୈ

ହୁଆ ନ ଜୋର୍ ସେ ଇସ୍‌କେ କୋଇ ଗରେବାଁ ଚାକ୍
ଅଗର୍ ଚେ ମଗର୍‌ବିୟୋଁ କା ଯନୁଁ ଭି ଥା ଚାଲାକ୍

ମୈଖାନାଏ ୟୁରୋପ୍ କେ ଦସ୍ତୁର୍ ନିରାଲେ ହୈଁ
ଲାତେ ହୈଁ ସରୁର୍ ଅଓ୍ୱଲ୍, ଦେତେ ହୈଁ ଶରାବ୍ ଆଖିର୍

ଖବର୍ ମିଲି ହୈ ଖୁଦାୟାନେ ବହ୍‌ର୍ ଓ ବର୍ ସେ ମୁଝେ
ଫରଙ୍ଗ୍ ରହ୍‌ଗୁଜରେ ସଏଲେ ବେପନାହ୍ ମେଁ ହେ

ଅହ୍‌ଲେ ନଜର୍ ହୈଁ ୟୁରୋମ୍ ସେ ନୋମିଦ୍
ଇନ୍ ଉମ୍ମତୋଁ କେ ବାତନ୍ ନହିଁ ପାକ୍

[ଏ ଯାବତ୍ ମଣିଷ ସମାଜ୍ୟ ବାଘ ଶକ୍ତିର ଶୀକାର ସାଜିଛି
ସବୁଠୁ ଆଶ୍ଚର୍ଯ୍ୟ ଲାଗେ, ମଣିଷଟା ମଣିଷରେ ଶୀକାର କରୁଛି

ବିଦ୍ୟାଳୟରେ ଯେ ସାଧନାରତ, ସିଏ ସିନା ଜୀବନ୍ତ ଲାଗୁଛି
ମରିଛି ସେ, ବଳାତରୁ ବିଦ୍ୟା, ବୁଦ୍ଧି-ଯେବେ ସେ କିଣିଛି

ପାଶ୍ଚାତ୍ୟ ଆଧୁନିକ ସଭ୍ୟତା ଝଲକେ, ଆଖିଆଇ ଅନ୍ଧ କରିଦିଏ
ନକଲି ମୁକ୍ତା—ଚମକ ଆଖିରେ ଲାଗିଲେ, ଆପେ ଆପେ ଆଖି ମୁଦିଯାଏ।

ବିଲାତର ଜ୍ଞାନଥିଲା, ଗାରମା ବି ଥିଲା—ଗରବେ ସେ ମଥା ଟେକିଥିଲା
ଆଜି ସିଏ ବ୍ୟଭିଚାରୀ, ହାତରେ ତରବାରୀ—ରକତେ ସେ ହୋଲି ଆରମ୍ଭିଲା

ପଶ୍ଚିମା ସୁନ୍ଦରୀମାନେ, ରୂପର ଜାଦୁକେ—ସତ୍ୟ ନୁହେଁ ଅଟଇ ତ ମାୟା
ଲାଗେ ସରଗ ଭୁବନ, ଅଟଇ ନର୍କ ସମାନ—ବୈକୁଣ୍ଠର ଛାୟା।

ବିଲାତେ ବସନ୍ତ ଆସିଲେ, ଲୋଭନୀୟ ଅତି, କମନୀୟ ତାର ରୂପକାନ୍ତି
ଯେ ଉଡ଼ଇ ଯେତେଦୂର, ସେ ଜାଣେ ତାକୁ ବେଖାର-ବସୁରଣେ ନର୍କେ ପଡ଼ିଥାନ୍ତି

ମୋ କଥାଟା ଅଡୁଆ ଲାଗିବ ତଥାପି ବି ଚନ୍ଦ୍ରାକର ବସ
ପାଶ୍ଚାତ୍ୟର ଜ୍ଞାନ,କଉଶଳ-ଲାଭ ନାହିଁ ଛାଡିସବୁ-ମଧୁରୂପେ ଅଟଇ ସେ ବିଷ

ପାନଶାଳା ପଶଚାରୀ, ସେ ତ ନୁହେ ବିଲାତୀ ପ୍ରସାଦ
ଉପରେ ଚକମିକିଆ, ମୂଳ ନାହିଁ ଖାଲି ଠିଆ-ହୁଦେ ତାଙ୍କ କେତେ ପରମାଦ।

ହେଲେ ବି ସମୃଦ୍ଧ ସହଜାତ ଜ୍ଞାନେ, ପାଶ୍ଚାତ୍ୟର ନାହିଁ ଯେ ଉନ୍ନତି
ବିପ୍ଳବ କରନ୍ତି କେବେ, ସଜୁଥାଇ କିଛି ନାହିଁ, କେବଳ ଦୁର୍ଗତି

ୟୁରୋପୀୟ ପାନଶାଳା ନୟମଣା ବିଚିତ୍ର, ବିକଟ
କିଣା ଘାରଗଲି ପରେ ପାଦ୍ୟ-ମଦିରା, ହୃଦେ ତାଙ୍କ ଭରିଛି କପଟ

ପୃଥିବୀ ଓ ସମୁଦ୍ରର ଭଗବାନ, ପେଣ୍ଟିଛନ୍ତି ଏକଇ ଖବର
ଆସୁଛି ବିକଟ ଝଡ଼ ଭାଙ୍ଗିବ ବିଳ୍ପ୍ଳବୀ ଗଡ଼, ଆସେ ଝଡ଼ ଅତି ଭୟଙ୍କର

ପାଶ୍ଚାତ୍ୟ ସଭ୍ୟତା ଅବା କିଛି ଦେଇପାରେ, ଏ ଭାବନା ଜ୍ଞାନୀ ହୃଦେ ନାହିଁ
ସଭ୍ୟତାର ନାଗପାଶେ ବନ୍ଦୀ ଯିଏ—କଳୁଷରେ ଭରି ହୃଦ ଯହିଁ । ]

ଇକ୍‌ବାଲ୍‌ଙ୍କ ନିଜ ମସ୍‌ନଓ୍ୱି 'ପଶ୍‌ଚେ ବାୟଦ୍‌ କରଦ୍‌ ଏଏ ଅକ୍‌ଓ୍ୱାମେ ମଶ୍‌ରିକ୍" (୧୯୩୬) ରେ ମଧ୍ୟ ଭାରତର ପରାଧୀନତା ପାଇଁ ତାଙ୍କର ଦୁଃଖ, ଇଂରେଜ ସାମ୍ରାଜ୍ୟ ପ୍ରତି ଘୃଣା ଓ ସ୍ୱଦେଶୀ ଆନ୍ଦୋଳନ ପ୍ରତି ସମର୍ଥନ କଥା ଉଲ୍ଲେଖ କରିଛନ୍ତି । ତାଙ୍କର ଏହି କବିତାରେ ଇକ୍‌ବାଲ ଇଂରେଜମାନଙ୍କର ମାନବ ଜାତିକୁ ଧ୍ୱଂସ କରିବା କଥା ବର୍ଣ୍ଣନା କରିଛନ୍ତି । ଇଂରେଜମାନେ କପରି ଦୁର୍ବଳ ଜାତିମାନଙ୍କୁ ଗ୍ରାସ କରିଛନ୍ତି, ନିଜର ବିଦ୍ୟା ଓ ବୁଦ୍ଧି ବଳରେ କପରି ଲୋକଙ୍କୁ ଶିକାର କରୁଛନ୍ତି ଓ ବାଣିଜ୍ୟ ବ୍ୟବସାୟକୁ ରାଜନୈତିକ ଅସ୍ତ୍ର ରୂପେ ବ୍ୟବହାର କରି କପରି ଲୋକଙ୍କର ରକ୍ତଶୋଷଣ କରୁଛନ୍ତି, ସେ କଥା ମଧ୍ୟ ଏହି କବିତାରେ ଉଲ୍ଲେଖ ରହିଛି :—

ଆଦମିୟତ୍‌ ଜାର୍‌ ବାଲଦ୍‌ ଅଜ୍‌ ଫରଙ୍ଗ୍‌
ଜିନ୍ଦଗୀ ହଙ୍ଗାମା ବର୍‌ଚିଦ୍‌ ଅଜ୍‌ ଫରଙ୍ଗ୍‌

ଗୁର୍ଗେ ଅନ୍ଦର୍‌ ପୋସ୍ତିନେ ବର୍‌ରାଇ
ହର୍‌ ଜମାଁ ଅନ୍ଦର କମିନେ ବର୍‌ରାଇ

ମୁଶ୍‌କଲାତେ ହଜ୍‌ରତେ ଇନ୍‌ସାଁ ଅଜ୍‌ ଉସ୍ତ୍‌
ଆଦମିୟତ୍‌ ରା ଗମେ ପିନ୍‌ହାଁ ଅଜ୍‌ ଉସ୍ତ୍‌

ଇଲ୍‌ମେ ଅଶ୍‌ୟା ଖାକେ ମା ରା କିମିୟାସ୍ତ୍‌
ଆହ୍‌ ଦର୍‌ ଅଫ୍‌ରଙ୍ଗ୍‌ ତା ସିରଶ୍‌ ପୁଦାସ୍ତ୍‌

ଇଲ୍‌ମ୍‌ ଅଜ୍‌ ରୁସ୍‌ଓ୍ୱା ଅସ୍ତ୍‌ ଅନ୍ଦର୍‌ ଶହର୍‌ ଓ ଦସ୍ତ୍‌
ଜିବ୍‌ରଇଲ୍‌ ଅଜ୍‌ ଶୋହବତଶ୍‌ ଇବ୍‌ଲିସ୍‌ ଗସ୍ତ୍‌

ଦାନଚଶେ ଅଫ୍‌ରଙ୍ଗିସ୍ତାଁ ଚେଚଶେ ବଦୋଶ୍
ଦର୍ ହଲକେ ନୋଏ ଇନ୍‌ସାଁ ସଙ୍ଗ୍ ଦେ କୋଶ୍

ଶର୍‌ରଏ ୟୁରୋପ୍ ବେ ନଜାଏ ଜଲ୍ ଓ ଜାଲ୍
ବର୍‌ଗ ସ କରଦ୍ ଅସ୍ତ ବର୍ ଗୁରଗାଁ ହଲାଲ

ନକ୍‌ଶେ ନୌ ଅନ୍ଦର୍ ଜହାଁ ବାୟଦ୍ ନେହାଦ୍
ଅଜ୍ କଫନ୍ ଦୁଜ୍‌ଦାଁ ଚେ ଉମ୍ମିଦେ କୁଶାଦ୍

[ ବିଳାସୀ ଶୋଷଣ ଦାଉ, ଚଉଦଗେ କାନ୍ଦେ ଆଜ ମଣିଷ ସମାଜ
ଚଉଦଗେ ବିଳାସ ବୁଣିଛୁ, ଜାଲ ବଚ୍ଛାଇଛୁ—କଳଙ୍କର ବୀଜ

ଛେଳି ଖୋଳ ତଳେ ଗଧିଆ ଆଜି ତ ଶିକାରୀ ପ୍ରାଏ ବସିଛୁ
ବୀର ପଣ ତାର୍ ଦେଖାଇ ଜଗତେ-ମେଣ୍ଢା, ଛେଳି ଗ୍ରାସୁଅଛୁ

ସମଗ୍ର ମାନବ ଜାତି ତାଙ୍କର ଦାଉରୁ ଆଜ, ଯନ୍ତ୍ରଣା କାତର
ବିଶ୍ୱ ମାନବରେ ଇଂରେଜ ଜାତିଟା, ମହାବ୍ୟାଧି କାନ୍‌ସର୍

ବସ୍ତୁବାଦୀ ଜ୍ଞାନ, ଆମ ଦେଶ ପାଇଁ ଅଟଇ କୁହୁକ ପ୍ରାଏ
ପାର୍ଥିବ ସୁଖକୁ ଅଗ୍ନିରେ ପୁରାଇ, ବିବ୍ରତଟା ଜଳିଯାଏ

ବିଜ୍ଞାନର ଜ୍ଞାନ ଧ୍ୱଂସର ଅସ୍ତ୍ର-ହୋଇଛୁ ଆଜି ବିଶ୍ୱରେ
ପ୍ରକୋପେ ତାହାର ସୈତାନ୍ ବେଶେ, ଆଜି ସ୍ୱର୍ଗ ଦେବଦୂତେ

ନିଜ ହସ୍ତେ ତାର କରବାଳ ଆଜି, ନିଜ ଗବେଷଣା ଫଳ
ଚଉହଦ ଖାଲି ରକ୍ତେ ଭରଯାଉ, ରକ୍ତର ହୋଉଖେଳ

ଦୁର୍ବଳ ଉପରେ ସବଳର ଦାଉ, ୟୁରୋପ କରୁଛି ପେଶା
ବିନା କାରଣରେ ଶୋଷଣେ, କଫନେ— ଯାଉଛି ୟୁରୋପୀ ନିଶା

ଶବକୁ ନେଇ ଯେ ବେପାର କରୁଛୁ, କି ଭାଷାରେ ମୁଁ ବର୍ଣ୍ଣିବି
ସମଗ୍ର ବିଶ୍ୱରେ ନୂଆ ପରଂପରା ମୁଣ୍ଡ ଟେକୁ—ମୁଁ ଶୁଣିବି । ]

ଇକ୍‌ବାଲ୍‌ଙ୍କ ମତରେ ପ୍ରାଚ୍ୟ ଭୂଖଣ୍ଡର ଉନ୍ନତି ଆମ ନିଜ ପ୍ରଚେଷ୍ଟା ଉପରେ ନିର୍ଭର କରେ । ସମସ୍ତ ଦେଶ ମଧ୍ୟରେ ଏକତା ଓ ସଦ୍‌ଭାବ ପ୍ରତିଷ୍ଠିତ ହେବା ଉଚିତ ଏବଂ ପ୍ରାଚ୍ୟର ସମସ୍ତ ଜାତି ସତ୍ୟ, ନ୍ୟାୟର ପତାକା ତଳେ ଏକତ୍ରିତ ହେବା ଉଚିତ । ତାଙ୍କ ମତରେ ଆମ ଦେଶ ଧର୍ମ ଓ ସଂସ୍କୃତିରେ ସମୃଦ୍ଧ । ତେଣୁ ଆମେ ନିଜର ଐତିହ୍ୟ ନେଇ ଗର୍ବ କରିବା ଉଚିତ । ପ୍ରାଚୀନ ସଭ୍ୟତା ଓ ଧର୍ମର ଆମେ ଉତ୍ତର-ଦାୟାଦ ।

ତେଣୁ ପ୍ରାଚ୍ୟ ଜାତିଗୁଡ଼ିକର ସ୍ୱାସ୍ଥ୍ୟ ପରିବର୍ତ୍ତନ କରିବା ଢଙ୍ଗରେ ଆମକୁ ଜାଗ୍ରତ ହେବାକୁ ହେବ । ପାଶ୍ଚାତ୍ୟ ସଭ୍ୟତା ପ୍ରତି ଆମର ନିଶା ବା ମୋହକୁ ଆମ ମନରୁ ତ୍ୟାଗ କରିବାକୁ ପଡ଼ିବ । ତେଣୁ ଇକ୍‌ବାଲ୍ କୁହନ୍ତି :—

ଶଗ୍ଧାଏ ସୁଦ୍ ଓଜ ସ୍ୱାଁ ଦର୍ ଦସ୍ତେ ତୁସ୍
ଆବ୍‌ରୂଏ ଖାଓଗାଁ ଦର୍ ଦସ୍ତେ ତୁସ୍

ଇଁ କୋହନ୍ ଅକ୍‌ଓ୍ୱାମ୍‌ର ସିଗ୍ଲଜ୍‌ବନ୍ଦ
ଗସ୍ତେତେ ସିଦ୍‌କ୍ ଓ ସଫାଗ୍ର କୁନ୍ ବୁଲନ୍ଦ

ହମ୍ ହୁନର୍ ହମ୍ ଦିଁ ଜ ଖାଟକେ ଖାଓର୍ ଅସ୍ତ୍
ରଶ୍‌କେ ଗର୍ଦୁଁ ଖାକେ ପାକେ ଖାଓ୍ୱର୍ ଅସ୍ତ୍

ଅଏ ଅମିନେ ଦୌଲତେ ତହଜିବ୍ ଓ ଦିନ୍
ଆଁ ସ୍ୟଦେ ବୈଜା ବର୍‌ଆର୍ ଅଜ୍ ଆସ୍ତିନ୍ *

ଖେଜ୍ ଓ ଅଜ୍‌କାରେ ହମମ୍ ବକୁଶା ଗିରହ୍
ନଶାଏ ଅଫ୍‌ରଙ୍ଗ୍ ଗ୍ର ଅଜ୍ ସର୍ ବନାହ

ଆଁ ଜହାଁବାନେ କେ ହମ୍ ସୌଦାଗର ଅସ୍ତ୍
ବର୍ ଜବାନଶ୍ ଖୈର୍ ଓ ଅନ୍ଦର୍ ଦିଲ ଶର୍ ଅସ୍ତ୍

ଖୂଦ୍ ବଦାନୀ ବାଦ୍‌ଶାହୀ କାହିରୀ ଅସ୍ତ୍
କାହିରୀ ଦର୍ ଅସ୍‌ରେ ମା ସୌଦାଗରୀ ଅସ୍ତ୍

ତଖ୍‌ତଏ ଦୁକାଁ ଶରକେ ତଖ୍‌ତ୍ର ଓ ତାଜ୍
ଅଜ୍ ତେଜାରତ୍ର ନଫ୍‌ଫା ଓ ଅଜ୍ ଶାହୀ ଖେଗ୍ରଜ୍

[ ତୁମ କର୍ମ ଅନୁସର ହୋଇବ ହିଁ ଲାଭକ୍ଷତି, ହସାବ-ନିକାଶ
ତୁମ ହାତ କୁଣଳୀ-କରଣୀ, ବିକଶିବ ପ୍ରାଚ୍ୟର ଆକାଶ

ଜରାଜୀର୍ଣ୍ଣ ପୁରାତନ ଜାତି, ଆସ ଆଜି ସଙ୍ଗଠିତ କର
ସତ୍ୟ, ଧର୍ମ, ନ୍ୟାୟର ପତାକା, ଆସ ଆଜି ଉର୍ଦ୍ଧ୍ୱେ ତୋଳି ଧର

---

* ହଜ୍‌ରତ୍ର ମୁସା ନିଜର ଆସ୍ଲେକତ ପାଖୁଲ ଦେଖାଇ ବିଭିନ୍ନ ଅଲୌକିକତା ପ୍ରଦର୍ଶନ କରୁଥିଲେ ।

କଳା, ଧର୍ମ, ସଭ୍ୟତର—ପ୍ରାଚ୍ୟ ଯା'ର ଅଟେ ଜନ୍ମଦାତା
ଈର୍ଷାନ୍ତ ସରତେ ପ୍ରାଚ୍ୟେ—ଏପରିକ ସ୍ୱରୂପ ଦେବତା
ରକ୍ଷାକର୍ତ୍ତା ଅଟ ତୁମେ, ନିଜ ଦେଶ—ଧର୍ମ, ସଭ୍ୟତର
ନିଜ ଜ୍ଞାନେ ନିଜ୍‌ରତ୍ନ ମୁସାଙ୍କ ପରି, ଜଗତକୁ ଆଲୋକିତ କର ।

ଜାଗତ ହୁଅ, ଆଗୁସାର ହୁଅ, କାରର ପ୍ରଗତି ପଥେ
ଇଂରେଜୀ ଭୂତ ଦୂରେ ହଟିଯାଉ—ଧର୍ମ ବିଜୟ ରଥେ ।
ବେପାରୀ ଇଂରେଜ ହାକିମ ଦେଶରେ, ବଚନ ବଡ଼ ମଧୁର
ଉପର ତାହାର ଚହଟ ଚକ୍‌କଣ—ହୃଦୟେ ତା' ବିଷ - ଝର

ହୁକୁମ୍ କରିବା, ଜୁଲୁମ୍ କରିବା, ତୁମ୍ଭ ଶାସନର ମୂଳ
ଶାସନ ନୁହଇ, ବେପାର ବଣିକେ - ଲଗାଇଛ ଯାହା ଗୋଳ
ପବିତ୍ର ଆସନ, ସିଂହାସନ ଆଉ ମୁକୁଟେ, କଲ ବଣିକ
ବେପାର ଲଭରୁ ଆଉ ଖଜଣାରୁ—ଚଳାଅ ଶାସନ-ରାଜ । ]

ଅଧିକନ୍ତୁ ଇକ୍‌ବାଲ୍ କହନ୍ତି ଯେ, ଇଂରେଜମାନେ ଅତ୍ୟନ୍ତ ଚତୁର ଓ କୌଶଳୀ । ଆମ ଦେଶରୁ କଞ୍ଚାମାଲ୍ ନେଇ ନିଜ କାରଖାନାରେ ଉତ୍କୃଷ୍ଟ ଦ୍ରବ୍ୟ ପ୍ରସ୍ତୁତ କରି ଆମକୁ ପୁଣି ବିକ୍ରୀ କରନ୍ତି । ଆମର ଅର୍ଥନୈତିକ ବିକାଶ ପାଇଁ ଆମ୍ଭେମାନେ ବିଦେଶୀ-ଜିନିଷର ବ୍ୟବହାର ପରିତ୍ୟାଗ ପୂର୍ବକ ସ୍ୱଦେଶୀ-ସାମଗ୍ରୀରେ ଆଦର କରିବା ବିଧେୟ । ଏଠାରେ ସେ ମହାତ୍ମାଗାନ୍ଧୀଙ୍କ ସ୍ୱଦେଶୀ ଆନ୍ଦୋଳନକୁ ପୂର୍ଣ୍ଣ ପ୍ରାଣରେ ସମର୍ଥନ ଜଣାଇଛନ୍ତି । ଏହାଦ୍ୱାରା ହିଁ କେବଳ ପ୍ରାଚ୍ୟ-ରାଷ୍ଟ୍ରସମୂହର ଉନ୍ନତି ସମ୍ଭବ । ଏହି ପରିପ୍ରେକ୍ଷୀରେ ଇକ୍‌ବାଲ୍‌ଙ୍କ ଲେଖନୀ ଉକ୍ତିସ୍ଥଳ :—

ଗର୍ ତୁ ମି ଦାନି ହେସାବେ୍ ରା ଦୁରୁସ୍ତ୍
ଅଜ୍ ହରିରେ୍ ନରମ୍ ତର୍ କର୍ ପାସେ ତୁସ୍ତ୍
ବେ ନୟାଜ୍ ଅଜ୍ କାର୍‌ଗାହେ ଉ ଗୁଜର୍
ଦର୍ ଜମିସ୍ତାଁ ପୋସ୍ତିନେ ଉ ମଖର୍
କୁଶ୍ତନେ ବେ ହରବ୍ ଓ ଜରବ୍ ଆଇନେ ଉସ୍ତ୍
ମର୍‌ଗହା ଦର୍ ଗର୍ଦ୍ଦିଶେ ମାଶିନେ ଉସ୍ତ୍
ବୋରିଆଏ ଖୁଦ୍ ବକାଲିନେ୍ ମଦେହ୍
ବୈଜକେ ଖୁଦ୍‌ରା ବଫର୍‌ଜିନେ୍ ମଦେହ୍ ❊

❊ ଚେସ୍ ଖେଳର ମନ୍ତ୍ରୀ ଓ ସୈନିକ

ଗୌହରଶ୍ ତଫ୍‌ଦାର୍ ଓ ଦର୍ ଲାଲଶ୍ ରଗ୍ ଅସ୍ତ୍
ମୁଶ୍‌କେ ଈଁ ସୌଦାଗର୍ ଅଜ୍ ନାଫେ ସଗ୍ ଅସ୍ତ୍

ଓ୍ବକ୍‌ତେ ସୌଦା ଖନ୍ଦ୍ ଖନ୍ଦ୍ ଓ କମ୍ ଖରୋଶ୍
ମା ଚୁ ତଫ୍ଲନେମ୍ ଓ ଊ ଶକ୍‌କର୍ ଫରୋଶ୍

ଆଁ ଚେ ଅଜ୍ ଖାକେ ତୁ ରୁସ୍ତ୍ ଅଏ ମର୍ଦେ ହୁର୍
ଆଁ ଫରୋଶ୍ ଓ ଆଁ ବପୋଶ୍ ଓ ଆଁ ବଖୁର୍

ଆଁ ନେକୋ ବନାଁ କେ ଝୁଦ୍‌ରା ଦିଦା ଅନ୍ଦ୍
ଖୁଦ୍ ଗଲିମେ ଝେଶ୍‌ରା ବାଫିଦା ଅନ୍ଦ୍

ଅଏ ଜ କାରେ ଅସ୍‌ରେ ହାଜର୍ ବେ ଖବର୍
ଚର୍ବ୍ ଦସ୍ତି ହାଏ ୟୁରୋପ୍ ରା ନଗର୍

କାଲି ଅଜ୍ ଅବ୍‌ରେଶମେ ତୁ ସାଖ୍‌ତନ୍ଦ୍
ବାଜ୍ ଊ ରା ପେଶେ ତୁ ଅନ୍‌ଦାଖ୍‌ତନ୍ଦ୍

[ ଗ ଣିତକ ସୂତେ ତୁମେ ହୋଇଲେ ପୋଖତ
ରେଶମଠୁ ଟେଦଡ଼ ନରମ—ଏ ଜ୍ଞାନକୁ କରିବ ଆୟତ୍ତ

ଅସ୍ତ୍ର କରି ମନ ତୁମ, ଅଢଙ୍ଗମ ତାଙ୍କ କାରଖାନା
ଶୀତ ଦିନେ କଂପି ମରପନ୍ତେ, କାର୍ପାସ ପୋଷାକ ତାଙ୍କ କେବେ ବି କିଣନା

ଷଡ଼ଯନ୍ତ୍ର କରି ମାରିବେ ତୁମ୍ଭଙ୍କୁ-ବିନା ରକ୍ତପାତେ ହତ୍ୟା
ଯନ୍ତ୍ର, କାରଖାନା ଘୂର୍ଣ୍ଣିନେ ନିହତ, ଗୁପ୍ତେ ମୃତ୍ୟୁ ଦୂତ—ହଜାଇ ଦେବଟି ସତ୍ତା

ନରମ ଗାଲିଚ୍ଛ ଲୋଭ କରି ଯାଇ, ନିଜ କନ୍ଥା ଛାଡ଼ ନାହିଁ
ମନ୍ତ୍ରୀ ବଦଳେ ସୈନିକ ପଠାଇ, ହୁଅ ନାହିଁ ହାଇଁ ପାଇଁ

ଆଖି ଝଲସାଏ ମଣି ମୁକ୍ତା ତାଙ୍କ, ସବୁ ଅଟଇ ନକଲି
ଶ୍ୱାନ, ଶ୍ୱାପଦଙ୍କ ନାଭିର "କସ୍ତୁରୀ"—ନୁହଁଇ କେବେ ଅସଲି

ଶ୍ରେଷ୍ଠ ପିଲ୍ଲ ଦେଖି ମିଠେଇ-ବିକାଳି ଯେଭଳି ଭୁଲାଇ ବିକେ
କିଣା ବିକା ବେଳେ ହସ ହସ ମୁଖ—ଅଳି ନ କରନ୍ତି ଟିକେ

ଖଟି ଖାଅ ଯାଇ, କାଟି ପିନ୍ଧ ତୁମେ—ଆମେ ଯେ ସ୍ୱାଧୀନ ଚେତା !
ଆପଣା ଭିତରେ କିଣାବିକା କର—ନିଜ ଯାଇ ହେଉ ନେତା

ସାଧୁ ସନ୍ଥ ଜନେ ଆପଣାକୁ ଚର୍ନ୍ତି—ଆତ୍ମାଭିମାନେ ବଞ୍ଚନ୍ତି
ନିଜର ପିନ୍ଧିଲା ବସନ ଗୋଟାକ,କନ୍ଥା ଘନ୍ତେ ନେଇ, ନିଜ ହାତେ ବୁଣିଥାନ୍ତି

ନ ଜାଣିଛ ଯଦି ବସ୍ତ୍ର ମନ୍ତ୍ରଟି, ନିଶ୍ଚିନ୍ତେ ନ ପଡ଼ ଶୋଇ
ଚତୁର, କୌଶଳୀ ବିଳାସୀ ଗାତରେ, ହାତ ଯିବ ତୁମ ଖାଇ

ତୁମ ବଗିଚାର, ତୁମ ଶ୍ରମ-ଫଳ, ରେଶମ ସବୁକୁ ତୁମ ଦେଶୁ କିଣିନେଇ
ଗାଳିଚା ରୂପରେ ମଖମଲ ଶୋଭା, କରୁଛନ୍ତି ଏଠି ଭାଇ ।]

ଶେଷରେ ଇକ୍‌ବାଲ୍‌ ପ୍ରାଚ୍ୟ ଜାତିଗୁଡ଼ିକର ଜାଗରଣ ଓ ସ୍ୱାଧୀନତାର ପୂର୍ବାଭାସ ଉପରେ ଆଶାବାଦୀ ମନର ଭାବନାକୁ ଲୁହନ୍ତି :—

"ପସ୍ ଚେ ବାୟଦ୍ କର୍ଦ ଅଏ ଅକ୍‌ଓ୍ୱାମେ ଶରକ୍
ବାଜ୍ ରୌଶନ୍ ମି ଶଓ୍ୱଦ୍ ଅଇୟାମେ ଶରକ୍

ଦର୍ ଜମିରଶ୍ ଇନ୍‌କଲାବ୍ ଆମଦ୍ ପଦିଦ୍
ଶବ୍ ଗୁଜସ୍ତ୍ ଓ ଆଫ୍‌ତାବ୍ ଆମଦ୍ ପଦିଦ୍"

[ପ୍ରାଚ୍ୟର ଜନତା ଏବେ କଳନିଅ ନିଜ ଲକ୍ଷପଥ—ଆସନ୍ତାକାଲିକୁ
ପୂରୁବ କରନ୍ତି ଗାଥା, ସଧା ହେବା ଆଗୁ—ଫେରିଇବା ଆପଣା ଘରକୁ

ବିପ୍ଳବର ତୂର୍ଯ୍ୟନାଦ ଶୁଭେ, ପ୍ରାଚ୍ୟ ଖଣ୍ଡେ ବିପ୍ଳବ ଜେଜାଛି
କାଳରାତି ପାହିଲାଣି, ବିଜୟ ରଥରେ ସୂର୍ଯ୍ୟ, ପୂର୍ବାକାଶ ରକ୍ତିମ ଦିଶୁଛି ।]

## ଅହଂର ଧାରଣା

ଭାରତରେ ଇଂରେଜ ଶାସନ ବିରୁଦ୍ଧରେ ଇକ୍‌ବାଲ୍‌ଙ୍କ ବ୍ୟବହୃତ ଦ୍ୱିତୀୟ ଗୁରୁତ୍ୱଟି ହେଉଛି ଅହଂ ବା ଖୁଦୀ ବା ଆତ୍ମାଭିମାନର ଧାରଣା । ନିଜ ଶକ୍ତିର ବୃଦ୍ଧି ପାଇଁ ଇକ୍‌ବାଲ୍‌ ଭାରତୀୟମାନଙ୍କୁ ବ୍ୟକ୍ତିଗତ ଓ ଗୋଷ୍ଠୀଗତ ଭାବରେ ନିଜର ଅହଂର ପ୍ରକାଶ ପାଇଁ ଉଦ୍‌ବୋଧନ ଦେଲେ । ଇକ୍‌ବାଲ୍‌ଙ୍କ "ଅହଂବୋଧର ଧାରଣା"କୁ ବିଭିନ୍ନ ପଣ୍ଡିତ, ସମୀକ୍ଷକ ଓ ଇକ୍‌ବାଲ୍‌ଙ୍କ ଉପରେ ଗବେଷଣାରତ ଗ୍ରନ୍ଥମାନେ ବିଭିନ୍ନ ଦୃଷ୍ଟିକୋଣରୁ ବିଚାର କରିଛନ୍ତି । କିନ୍ତୁ ମୋ ମତରେ ତତ୍କାଳୀନ ସାମାଜିକ, ରାଜନୈତିକ, ଅର୍ଥନୈତିକ ଓ ପାରିପାର୍ଶ୍ୱିକ ଅବସ୍ଥାର ପ୍ରଭାବ ଯୋଗୁ ଇକ୍‌ବାଲଙ୍କ ମନରେ ଏହି ଅହଂବୋଧର ଧାରଣା (Concept of Ego) ସୃଷ୍ଟି ହୋଇଥିଲା । ଗୋଟିଏ ପରାଧୀନ ଜାତିପାଇଁ ଆତ୍ମ ବିଶ୍ୱାସ, ଆତ୍ମ ନିରୀକ୍ଷଣ ଏବଂ ଆତ୍ମୋନ୍ନତିର ଆହ୍ୱାନ ବ୍ୟତୀତ ଅନ୍ୟ କୌଣସି ଆହ୍ୱାନ ବେଶୀ ଉପଯୋଗୀ ହୋଇ ନ ଥାନ୍ତା । ଏହି ପରାଧୀନ

ଜାତିର ବ୍ୟକ୍ତି ବିଶେଷଙ୍କ ପାଇଁ ନିଜ ଅସ୍ତିତ୍ୱ-ପ୍ରତିପାଦନ, ଆତ୍ମସମ୍ମାନ ଓ ଆତ୍ମ ସଂରକ୍ଷଣର ଆହ୍ୱାନ ବ୍ୟତୀତ ଅନ୍ୟ କୌଣସି ଆହ୍ୱାନ ଏତେ ଫଳପ୍ରଦ ବା ପ୍ରଭାବଶାଳୀ ହୋଇ ନ ଥାନ୍ତା । ମୋ ମତରେ ଇକ୍‌ବାଲ୍‌ଙ୍କ "ଅହଂବୋଧର ଧାରଣା" ହେଉଛି ଦେଶର ପରାଧୀନତା ପାଇଁ ତାଙ୍କ ଅଭିମାନୀ-କବି-ପ୍ରାଣର ନରମ ପ୍ରତିକ୍ରିୟା ।

ଅନ୍ୟ ପରିପ୍ରେକ୍ଷୀରେ ଇକ୍‌ବାଲ୍ କହିଛନ୍ତି "ନିଜମନର ସମ୍ପୂର୍ଣ୍ଣ ପରିବର୍ତ୍ତନ ବ୍ୟତୀତ ଜଣେ ଗୃହିଁଲେ ବି ପ୍ରତିକୂଳ ଅବସ୍ଥାର ପରିବର୍ତ୍ତନ କରି ପାରିବ ନାହିଁ ।...... ନିଜର ସ୍ୱାଧୀନଚେତା ହୃଦୟରେ ଦୃଢ଼ ବିଶ୍ୱାସ ବ୍ୟତୀତ ଲକ୍ଷ୍ୟ ହାସଲ ଅସମ୍ଭବ...... ସ୍ୱପ୍ନର ସଫଳ ରୂପାୟନ ନିମନ୍ତେ ଅହଂବୋଧକୁ ନିଜ ଉପରେ କେନ୍ଦ୍ରୀଭୂତ କର...... ଜୀବନ-ଜ୍ୟୋତି ଧାର ସୂତ୍ରରେ ନୁହେଁ, ହୃଦୟ ମନ୍ଦିରରେ ପ୍ରଜ୍ୱଳିତ କର ।"

"ଜୋବୁରେ ଅଜମ୍" (ତାଙ୍କ କବିତା ସଙ୍କଳନ) ର ଏକ ପଂକ୍ତି ଅନୁବାଦ କରି ନିଜେ ଇକ୍‌ବାଲ୍ କହିଛନ୍ତି—"ଅହଂକାର-ସୁରା ଅବଶ୍ୟ ତିକ୍ତ, କିନ୍ତୁ ନିଜ ସ୍ୱାସ୍ଥ୍ୟର ଉନ୍ନତି ପାଇଁ, ରୋଗ ନିରାକରଣ ପାଇଁ, ମାତ୍ରାନୁସାରେ ମୋ'ଠାରୁ ବିଷ ଗ୍ରହଣ କର ।"

[ ଗିରଫତମ୍ ଉଁ କେ ଶରାବେ ଖୁଦ୍ ବସେ ତଲଖ୍ ଅସ୍ତ୍
ବଅନ୍ଦାଜେ ରେଖ୍ ନିଗର୍, ଜହରେ ମା ବଦରମା କଶ୍ ]

ଏହି ପରିପ୍ରେକ୍ଷୀରେ ନିଜ କବିତାରେ ଇକ୍‌ବାଲ୍ ବ୍ୟକ୍ତ କରନ୍ତି :—

ଖୁଦି କି ମୌତ୍ ସେ ହିନ୍ଦୀ ଶିକସ୍ତା ବାଲୋଁ ପର୍
କଫସ୍ ହୁଆ ହୈ ହଲାଲ୍ ଅଭର୍ ଆଶିୟାନା ହରାମ୍

ସୁନା ହୈ ମୈ ନେ ଗୋଲାମୀ ସେ ଉମ୍ମତୋ କି ନିଜାତ୍
ଖୁଦି କି ପର୍‌ୱରିଶ୍ ଓ ଲଜ୍ଜତେ ନମୁଦ୍ ମେ ହୈ

ଯେ ମୌଜେ ନଫସ୍ କ୍ୟା ହୈ ? ତଲ୍‌ୱାର୍ ହୈ
ଖୁଦି କ୍ୟା ହୈ ? ତଲ୍‌ୱାର କି ଧାର୍ ହୈ

ଖୁଦି କ୍ୟା ହୈ ? ରାଜେ ଦରୁନେ ହୟାତ୍
ଖୁଦି କ୍ୟା ହୈ ? ବେଦାରିଏ କାଏନାତ୍

ଖୁଦି ଓହ୍ ବହର୍ ହୈ ଜିସ୍‌କା କୋଇ କିନାରା ନହିଁ
ତୁ ଆବ୍‌ଯୁ ଇସେ ସମ୍‌ଝା ଅଗର୍ ତୋ ଚାରା ନହିଁ

ଖୁଦ ମେ ଗୁମ୍ ହୈ ଖୁଦାଇ ତଲଶ୍ କର୍ ଗାଫିଲ୍
ସୁବ୍ହ ହେ ତେରେ ଲିଏ ଅବ୍ ସଲାହେ କାର୍ କ ସବ୍

[ ଛିନ୍ନ-ପକ୍ଷ ଭାରତୀୟ ଆଜି-ଅହଂକାର ଯକ୍ଷେ ତାଙ୍କ ଆହୁତି ସରିଛି
ବନ୍ଧନଟା ଆଜି ଶୁଭଙ୍କର, ଶୃଙ୍ଖଳଟା ବେଶ୍ ସୁହାଇଛି

ଜ୍ଞାନୀ, ଗୁଣୀ ଜନଠାରୁ ମୁଁ ପାଇଛି ମୁକ୍ତିର ବାରତା
ଆତ୍ମ-ଅହଂ ପ୍ରଜ୍ୱଳିତ ହେଲେ—ବିରାଜିବେ ମୁକ୍ତିର ସବିତା

ଅସ୍ତ୍ର ଅଟେ ବିଶ୍ୱାସ, ପ୍ରଶ୍ୱାସ—ବହେ ଯାର ଜୀବନ ସରିତ
ଶାଣିତ ସେ ତରବାରୀ—ଅହଂବୋଧେ ଯିଏ ମଦମତ୍ତ

ନିଗୂଢ଼ ଜୀବନ ସତ୍ୟ, ଅହଂକାରେ ନିର୍ଲିପ୍ତ ଏକକ
ଅହଂ ବିନା ସମଗ୍ର ମେଦିନୀ, ନ ହୋଇବ କେବେ ଜାଗରୁକ

ତଟିନୀ ତୁ କ୍ଷୁଦ୍ର ଅତି, ଭ୍ରାନ୍ତିଟାଇ ସ୍ୱାଭାବିକ ତୋରେ
ଅହଂ ବୋଧ ଉନ୍ନତ ସମୁଦ୍ର—ବହିଯା ତୁ, ବହିଯା ସାଗରେ

ଅହଂ ବୋଧେ ଚିର ଆଚ୍ଛାଦିତ, ଦେବୋତ୍ତର ସତ୍ତା
ତାହାହିଁ ଏକକ ସତ୍ୟ, ତୋ' ଭାଗ୍ୟ ନିୟନ୍ତା ]

୧୯୩୭ ମସିହାର ଗ୍ରୀଷ୍ମ କାଳରେ ଇକ୍‌ବାଲ୍ ନଜର୍ ନିଆଜିଙ୍କୁ ନିତ୍‌ଶେ *ଙ୍କ ବିଷୟରେ ଯେଉଁ ଟିପ୍‌ପଣୀ ଡ଼ାକିଥିଲେ, ସେଥିରେ ସେ ଅହଂର ବ୍ୟାଖ୍ୟା କରିଛନ୍ତି ।

ନୈତିକତା ଦୃଷ୍ଟିକୋଣରୁ ଅହଂର ଅର୍ଥ ହେଉଛି (ଯାହାକୁ ମୁଁ ବର୍ଣ୍ଣନା କରିଛି) ଆତ୍ମବିଶ୍ୱାସ, ଆତ୍ମ-ସମ୍ମାନ, ଆତ୍ମନିର୍ଭରଶୀଳତା ଆତ୍ମ-ସଂରକ୍ଷଣ ଏବଂ ସତ୍ୟ, ନ୍ୟାୟ ଓ କର୍ତ୍ତବ୍ୟ ଆହ୍ୱାନରେ ମୃତ୍ୟୁ ମୁଖରେ ପଡ଼ି ସୁଦ୍ଧା ନିଜସ୍ୱ ପ୍ରକଟନ ଏବଂ ନିଜକୁ ଦୃଢ଼ କରି ରଖିବା ।**

---

* Nietzsche (1844-1900) ଜଣେ ପ୍ରସିଦ୍ଧ ଜର୍ମାନ ଦାର୍ଶନିକ । ତାଙ୍କର ପ୍ରସିଦ୍ଧ ପୁସ୍ତକ ହେଉଛି "Thus Spake Zarathustra," ଇକ୍‌ବାଲ୍, 'ନିତ୍‌ଶେ'ଙ୍କ ଦର୍ଶନର ଗମ୍ଭୀର ଅଧ୍ୟୟନ କରିଥିଲେ ।

** Thoughts and Reflections of Iqbal : Syed Abdul Wahid, Page 244.

ଆମ ଜାତି ପ୍ରତି ତାଙ୍କର ଏହି ଆହ୍ୱାନ ଥିଲା । ଇଂରେଜ ସାମ୍ରାଜ୍ୟବାଦର ଶୋଷଣ-ନୀତି ବିରୁଦ୍ଧରେ, ଉଦ୍‌ବୋଳିତ ତାଙ୍କର ଅାହ୍ୱାନ ବେଶ୍ ଯୁଗୋପଯୋଗୀ । ଇକ୍‌ବାଲ୍‌ଙ୍କ ଆହ୍ୱାନ, ଗାନ୍ଧିଜୀଙ୍କ ସତ୍ୟାଗ୍ରହ—ଉଭୟେ ରାଜନୈତିକ ଅହଂବୋଧ କ୍ଷେତ୍ରରେ ଏକୀଭୂତ ହୋଇଯାଇଥିଲେ । ଇକ୍‌ବାଲ୍ ମାନସିକ ସ୍ତରରେ ଅହଂ ଉପରେ ଗୁରୁତ୍ୱ ଆରୋପ କରିବା ହିଁ, ସାମ୍ରାଜ୍ୟବାଦୀ ଶକ୍ତି ବିରୁଦ୍ଧରେ ସତ୍ୟାଗ୍ରହ ସ୍ୱରୂପ ।

ଏ ବିଷୟଟିକୁ ମୁଁ ପରେ ବିଶଦ ଭାବରେ ବର୍ଣ୍ଣନା କରିବି । ଏଠାରେ ଗୋଟିଏ କଥା ଉପରେ ଗୁରୁତ୍ୱ ଦେବାକୁ ଚାହେଁ ଯେ, ଇକ୍‌ବାଲ୍‌ଙ୍କ ସମୟକୁ ବ୍ୟକ୍ତିଗତ ଓ ସାମୂହିକ ସ୍ତରରେ ଆତ୍ମ ବିଶ୍ୱାସ ଓ ଆତ୍ମୋନ୍ନତିର ଯେତିକି ଆବଶ୍ୟକତା ଥିଲା, ବର୍ତ୍ତମାନ ସୁଦ୍ଧା ସେତିକି ଆବଶ୍ୟକତା ଅଛି । ଏହା ହିଁ ହେଉଛି ଆଜି ପାଇଁ ଜାତୀୟ-ସହତିର ଏକ ବିଶିଷ୍ଟ ଉପାଦାନ ।

**ଆଧୁନିକ-ମଣିଷର ସଂଜ୍ଞା**

ଇକ୍‌ବାଲ୍‌ଙ୍କ "ଅହଂ ଧାରଣା" ମଧ୍ୟରେ ଆଧୁନିକ ମଣିଷର ଜୀବନ-ସତ୍ୟ ନିହିତ । ମନୁଷ୍ୟର ଭାଗ୍ୟ ଉପରେ ତାଙ୍କର ପ୍ରଗାଢ଼ ବିଶ୍ୱାସ ଥିଲା । ତାଙ୍କ ମତରେ :—

ଆଦ୍‌ମିୟତ୍ ଏହ୍‌ତରାମେ ଆଦ୍‌ମି
ବା ଖବର୍ ଶୋ ଅଜ୍ ମୁକାମେ ଆଦ୍‌ମି

ଓରୁଜେ ଆଦମେ ଖାକ ସେ ଅନ୍‌ଜୁମ୍ ସହମେ ଯାତେ ହେଁ
କେ ୟେ ଟୁଟା ହୁଆ ତାରା ମହେ-କାମିଲ୍ ନ ବନ୍ ଯାଏ

ଉରୁଜେ ଆଦ୍‌ମେ ଖାକ କେ ମୁନତଜର ହେଁ ତମାମ୍
ୟେ କହକଶାଁ, ୟେ ସିତାରେ, ୟେ ନିଲଗୁଁ ଆଫ୍‌ଲାକ୍

ହେ ଗରମିଏ ଆଦମ୍ ସେ ହଙ୍ଗାମଏ ଆଲମ୍ ଗର୍‌ମ୍
ସୁରଜ୍ ଭି ତମାଶାଇ ତାରେ ଭି ତମାଶାଇ

ବର୍‌ତର୍ ଅଜ୍ ଗର୍‌ଦୁଁ ମୁକାମେ ଆଦମ୍ ଅସ୍ତ୍
ଅସଲ୍ ତହଜିବ୍ ଏହ୍‌ତରାମେ ଆଦମ୍ ଅସ୍ତ୍

ଚଶ୍‌ମ୍ ବକ୍‌ଶାଏ ଅଗର୍ ଚର୍‌ମେ ତୁ ସାହବେ ନଜର୍ ଅସ୍ତ୍
ଜିନ୍ଦଗୀ ଦର୍ ପଏ ତାମିରେ ଜହାନେ ଦିଗର୍ ଅସ୍ତ୍

ତେରେ ଇଲ୍‌ମ୍ ଓ ମୋହବତ୍ କି ନହିଁ ହେ ଇନ୍ତିହା କୋଇ
ନହିଁ ହେ ତୁଝ୍‌ସେ ବଢ୍ କର୍ ସାଜେ ଫିତ୍‌ରତ ମେ ନଓ୍ୱା କୋଇ

ଅତା ହୁଇ ହୈ ତୁଝେ ରୋଜ୍ ଓ ଶବ୍ କ ବେତାବ
ଖବର୍ ନହିଁ କେ ତୁ ଖାକ ହୈ ୟା କେ ସିମାବ

ଶୁନା ହୈ ଖାକ୍ ସେ ତେର ନମୁଦ୍ ହୈ ଲେକନ୍
ତେର ସରଶ୍ତ୍ ମେଁ ହୈ କୌକବ ଓ ମେହ୍ ତାବ

ତେର ନଓ୍ୱା ସେ ହୈ ବେପର୍ଦା ଜିନ୍ଦଗୀ କା ଜମିର୍
କେ ତେରେ ସାଜ୍ କ ଫିତ୍ରତ୍ ନେ କ ହୈ ମିଜ୍‌ରାବ

[ ମଣିଷର ପ୍ରକୃତ ସ୍ୱରୂପ—ଅଟଇତ ମଣିଷ ପଣିଆ
ମଣିଷକୁ ହେସ୍ତ ମଣନାହିଁ, ତା' ପରଶେ ହସଇ ଦୁନିଆ

ଉନ୍ମେଷ, ବିକାଶ ଅଛୁ ମାତ୍ର ମନୁଷ୍ୟର—ସେ ପାଇଁ ତ ମଣିଷ-ବଡ଼ିମା
କକ୍ଷଚ୍ୟୁତ ମଣିଷର ଗତିରେ କମ୍ପିତ ତାରକା—ମଣିଷ କ ହୋଇବ ଚନ୍ଦ୍ରମା

ମଣିଷର ଉନ୍ନତିରେ ଶ୍ୱାନ ବୃଷ୍ଟି, ଆଚମ୍ବିତ ସବେ ହୃଦାକାଶ
ଗୁସ୍ତାପଥ ଅବା ତାରା, ଅବା କହ ନୀଳିମ ଆକାଶ

ମଣିଷର ମୃଷ୍ଟି ପରେ, ସମଗ୍ର ବିଶ୍ୱ ଆକାଶେ ଜ୍ୟୋତିର ଉନ୍ମେଷ
ଆକାଶର ସୂର୍ଯ୍ୟ, ତାରା, ଚନ୍ଦ୍ର—ଧରଛନ୍ତି ମୂକ ସାକ୍ଷୀ ବେଶ

ମନୁଷ୍ୟର ସ୍ଥିତି ଅଟେ ସଗରଠୁ ବଡ଼—ଏ ମଣିଷ ମହା ଗର୍ବସ୍ଥାନ
ସଭ୍ୟତା, ସଂସ୍କୃତି ସବୁ ମଣିଷ-ବିଧାନ—ନରହାତେ ଏ ବିଶ୍ୱ ମହାନ

ଏଠି ଆଉ ଲଗେ ନାହିଁ ମନ, ଗଢ଼ିବ ସେ ନୂତନ ଆଲୟ ସାହା ତାର
ଏକା ଭଗବାନ

ଅନ୍ତର ଚକ୍ଷୁରେ ଦେଖ, ମଣିଷର ଗତି, ଅନ୍ୱେଷଣେ କେଡ଼େ ନିଷ୍ଠାବାନ

ତୁମ ଜ୍ଞାନ, ତୁମ ପ୍ରେମ ଅଟଇ ଅସୀମ—ଆମ ଏଇ ସସୀମ ବିଶ୍ୱରେ
ମଧୁ-ସଙ୍ଗୀତ-ମୂର୍ଚ୍ଛନା ଲେଖାଅଛୁ ଖାଲି ନର-ଜୀବନ-ବୀଣାରେ

ଦିନରାତି କଟଇ ତୋ, ରୋଗ, ଶୋକ, ଅସ୍ଥିର ମତିରେ
କ ଦରବେ ଗଢ଼ିଛୁ ଦଇବ, ଅସୂରନ୍ତ ଶକ୍ତି ଭରି ତୋ' ମର ଶରୀରେ

ମାଟି, ପାଣି, କାଦୁଅରେ ଗଢ଼ାସିନା ଅଟେ ତୋ ଆକୃତି
ଆଲୋକ ଚନ୍ଦ୍ରରେ ଅଛୁ, ତାରା ବି ତ ଆଲୋକ ଭରଇ, ତୋ' ଗତି ପ୍ରକୃତି

ତୋ' ସଙ୍ଗୀତେ ଜୀବନ ମୂର୍ଚ୍ଛନା, କେତେ ରଂଗେ ତୋ' ସୁର ଝଙ୍କାରେ
ତୋ' ବୀଣାରେ ସ୍ୱତଃ ରାଗ-ଫଲ୍‌ଗୁ—ମୁଗ୍‌ଧ କରେ ଜଗତ ଅନ୍ତରେ । ]

## ୧୯୩୮ରେ ନବବର୍ଷର ସ୍ୱାଗତ : ଇକ୍‌ବାଲ୍

ମୃତ୍ୟୁର କଛି ମାସ ପୂର୍ବରୁ ୧ ଜାନୁୟାରୀ, ୧୯୩୮ରେ ଆକାଶବାଣୀ ଲାହୋର କେନ୍ଦ୍ରରୁ ପ୍ରସାରିତ ଇକ୍‌ବାଲ୍‌ଙ୍କ ନବବର୍ଷର ସ୍ୱାଗତକାର କିୟଦଂଶ ଏଠାରେ ପ୍ରଣିଧାନ-ଯୋଗ୍ୟ :—

ଆଧୁନିକ ଯୁଗ ନିଜର ଜ୍ଞାନର ଉନ୍ନତି ଓ ବୈଜ୍ଞାନିକ ଅଗ୍ରଗତି ପାଇଁ ଗର୍ବିତ। ଏହି ଗର୍ବ ନିଃସନ୍ଦେହରେ ଯୁକ୍ତିଯୁକ୍ତ। ଆଜିକାଲି ସମୟ ଓ ସ୍ଥାନର ବ୍ୟବଧାନ ଦୂରୀଭୂତ ହୋଇଛି। ପ୍ରକୃତିର ରହସ୍ୟ ଉଦ୍‌ଘାଟନ କରି ଏବଂ ପ୍ରକୃତିକୁ ନିଜ କାର୍ଯ୍ୟରେ ନିୟୋଜିତ କରି ମନୁଷ୍ୟ ଆଶ୍ଚର୍ଯ୍ୟ ସାଧନ କରିଛି.........କିନ୍ତୁ ମନେ ରଖନ୍ତୁ, କେବଳ ମନୁଷ୍ୟ ଜାତିକୁ ସମ୍ମାନ ଦେଲେ ହିଁ ମନୁଷ୍ୟ ପୃଥିବୀରେ ତିଷ୍ଠି ରହିପାରିବ। ମାନବ ଜାତିକୁ ସମ୍ମାନ ପ୍ରଦର୍ଶନ କରିବାର କୌଶଳ ଶିକ୍ଷା ପଦ୍ଧତିରେ ଯୋଗ କରି, ପୃଥିବୀର ଶିକ୍ଷା ବ୍ୟବସ୍ଥାରେ ଆମୂଳ ପରିବର୍ତ୍ତନ ନକଲେ, ପୃଥିବୀ ହିଂସ୍ର ଓ ଶିକାରୀ ପଶୁମାନଙ୍କର ଏକ ଯୁଦ୍ଧଭୂମିରେ ପରିଣତ ହେବ। ତେଣୁ ଆସନ୍ତୁ, ନୂତନ ବର୍ଷକୁ ଏହି ପ୍ରାର୍ଥନା ଦ୍ୱାରା ସ୍ୱାଗତ କରିବା ଯେ, ଯେଉଁମାନେ କ୍ଷମତା ଓ ସରକାରରେ ଅଛନ୍ତି— ଭଗବାନ ସେମାନଙ୍କୁ ମାନବିକତା ପ୍ରଦାନ କରନ୍ତୁ ଏବଂ ମାନବିକତାକୁ ସମ୍ମାନ କରିବାର ସଦ୍‌ବୁଦ୍ଧି ଦିଅନ୍ତୁ।

ସଂକ୍ଷେପରେ କହିବାକୁ ଗଲେ, ଇକ୍‌ବାଲ୍‌ଙ୍କ ଆହ୍ୱାନ ହେଉଛି—ଅନବରତ କର୍ମ-ପ୍ରବଣତା। ସେ ପ୍ରଚଳିତ ସାମାଜିକ ବ୍ୟବସ୍ଥାକୁ ପରିବର୍ତ୍ତନ କରିବାର ଇଚ୍ଛା ପ୍ରକାଶ କରିବା ସହିତ ଏ ଜାତିର ବ୍ୟକ୍ତି ବିଶେଷଙ୍କୁ କର୍ମତତ୍ପର ହେବାପାଇଁ ଉପଦେଶ ଦେଇଛନ୍ତି। ମନୁଷ୍ୟ ସମ୍ପର୍କରେ ତାଙ୍କର ନୂତନ ଧାରଣା ଅର୍ଥାତ୍ ସୃଷ୍ଟି କ୍ରିୟାରେ ମନୁଷ୍ୟ ମଧ୍ୟ ଭଗବାନଙ୍କ ସହକର୍ମୀ। ଏହାର ପ୍ରାସଙ୍ଗିକ ଅର୍ଥ ହେଉଛି ଯେ, ତତ୍‌କାଳୀନ ଦଳିତ ଓ ନିଷ୍ପେଷିତ ଭାରତୀୟଙ୍କ ମନରେ ଏକ ନୂତନ ଶିହରଣ ସଞ୍ଚାର କରିବା। କହିବା ବାହୁଲ୍ୟ, ଗାନ୍ଧିଜୀଙ୍କର ସ୍ୱାଧୀନତା ଆନ୍ଦୋଳନ, ଭାରତବାସୀଙ୍କ ମନରେ ଏକ ନବ-ଜାଗରଣ ସୃଷ୍ଟି କଲା ଏବଂ ସେମାନେ ଆଳସ୍ୟ-ନିଦ୍ରା ପରିହାର କଲେ। ଆନ୍ଦୋଳନର ଐତିହାସିକ ପୃଷ୍ଠ ଭୂମିରେ ଇକ୍‌ବାଲ୍‌ଙ୍କ ଦୃଢ଼ ବିଶ୍ୱାସ, ଅନବରତ କର୍ମ ପ୍ରବଣତା, ଅହଂ-ବୋଧ ଆଦି ଚିନ୍ତା-ଚେତନାର ମଧ୍ୟ ନୂତନତ୍ୱ ଓ ଗୁରୁତ୍ୱ ରହିଛି।

ଏବେ ମଧ୍ୟ ସମୟର ଆହ୍ୱାନ ହେଉଛି ଆତ୍ମ ବିଶ୍ୱାସ, ଆତ୍ମ-ସମ୍ମାନ ଏବଂ ଆତ୍ମୋନ୍ନତିର ପୁନରୁତ୍‌ଥାନ। ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ଯଦି ଏ ଦେଶର ଲୋକେ ସଙ୍କୀର୍ଣ୍ଣତା ତ୍ୟାଗ କରି ଏକତା ସୂତ୍ରରେ ଆବଦ୍ଧ ହେବେ, ତେବେ ଯାଇ ଆମର ଦୂରନ୍ତ ଲକ୍ଷ୍ୟ ହାସଲ ହୋଇ ପାରିବ।

## ବ୍ୟକ୍ତିଗତ ଜୀବନରେ ପ୍ରତିଫଳିତ ଜାତୀୟ ସଂହତି

ତାଙ୍କର ବ୍ୟକ୍ତିଗତ ଜୀବନ ଜାତୀୟ ସଂହତିର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ । ବିଭିନ୍ନ ଜାତି ଓ ସମ୍ପ୍ରଦାୟ ମଧ୍ୟରେ ଥିବା ତାଙ୍କର ଅନେକ ବନ୍ଧୁ ଓ ପ୍ରଶଂସକ ଦେଶର ବିଭିନ୍ନ ପ୍ରାନ୍ତରରେ ରହିଥିଲେ । ତତ୍କାଳୀନ ଲାହୋର ହାଇକୋର୍ଟର ମୁଖ୍ୟ ବିଚାରପତି ସାର୍ ଶାଦିଲାଲ୍, ଇକ୍‌ବାଲ୍‌ଙ୍କ ବେଞ୍ଚରେ ଅନ୍ତର୍ଭୁକ୍ତ କରି ପଥରେ ଅନ୍ତରାୟ ହେବା ଏବଂ ତାଙ୍କର ବଡ଼ଭାଇଙ୍କୁ ଏକ ସାଂପ୍ରଦାୟିକ ଚକ୍ରାନ୍ତରେ ଅଭିଯୁକ୍ତ କରାଯିବାର ଦୁଃଖଦାୟକ ଘଟଣା ସତ୍ତ୍ୱେ ହିନ୍ଦୁ ଓ ଶିଖ ସମ୍ପ୍ରଦାୟର ଅନେକ ସମ୍ମାନୀୟ ଓ ଉଚ୍ଚପଦସ୍ଥ ବ୍ୟକ୍ତିଙ୍କ ସହ ଇକ୍‌ବାଲ୍‌ଙ୍କର ବନ୍ଧୁତା ଥିଲା ।

### ମହାରାଜା ସାର୍ କିଶନ୍ ପ୍ରସାଦ

ଚିଠି ପତ୍ରର ଆଦାନ ପ୍ରଦାନରୁ ଜଣାଯାଏ ଯେ, ମହାରାଜା କିଶନ୍ ପ୍ରସାଦଙ୍କ ସହିତ ଇକ୍‌ବାଲ୍‌ଙ୍କ ଘନିଷ୍ଠ ବନ୍ଧୁତା ରହିଥିଲା । ପଞ୍ଜାବରେ ତାଙ୍କର ଗୋଟିଏ କନ୍ୟାର ବୈବାହିକ ସମ୍ବନ୍ଧ ସ୍ଥିର କରିବା ପାଇଁ ଇକ୍‌ବାଲ୍ ପ୍ରତିଶ୍ରୁତି ଦେଇଥିଲେ ।

### ସାର୍ ଯୋଗୀନ୍ଦର ସିଂହ

ଜୁଲ୍‌ଫିକାର୍ ଅଲ୍ଲି ଖାଁଙ୍କ ମଟର ବିଷୟରେ ସାର୍ ଯୋଗୀନ୍ଦର ସିଂ ଯେଉଁ ମନ୍ତବ୍ୟ ଦେଇଥିଲେ ତାକୁ କବିତାରେ ପ୍ରକାଶ କରି ଇକ୍‌ବାଲ୍ ଯୋଗୀନ୍ଦର ସିଂଙ୍କୁ ଅମର କରି ଦେଇଛନ୍ତି । ଏହି କବିତାରେ ଇକ୍‌ବାଲ୍ ଅବିରାମ-କର୍ମର ପ୍ରେରଣା ଦେଇଛନ୍ତି:—

କୈସି ପତେ କି ବାତ୍ ଯୋଗୀନ୍ଦର ନେ କଲ୍ କହି ※
ମୋଟର ହୈ ଜୁଲ୍‌ଫିକାର୍ ଅଲ୍ଲି ଖାଁ କା କ୍ୟା ଖମୋଶ୍
ମୈ ନେ କହା ନହିଁ ହୈ ଯେ ମୋଟର୍ ପେ ମୁନ୍‌ହସର୍
ହେ ଯାଦଏ ହୟାତ୍ କା ହର୍ ତେଜ୍ ପା ଖମୋଶ୍

[ ଯୋଗୀନ୍ଦର ସିଂହ, ଚମତ୍କାର ଭାବେ ମନ୍ତବ୍ୟ କଲେ ପ୍ରଦାନ
"ଜୁଲ୍‌ଫିକର୍ ଅଲ୍ଲି, ତୁମ ମୋଟରଟି ସତେ କେଡ଼େ ଶବ୍ଦହୀନ"

---

※ Yogindar—Younder brother of Nawab of Maler-kotla who wrote the fivst English Book on Iqbal "A Voice of the East."

ମୁଁ କହୁଛି, "ଲୁହ କଣ୍, କେବଳ ମଟର ! —ଏଇ କ୍ଷୁଦ୍ର ଯାନ
ଜୀବନର ଯେତେ ଦ୍ରୁତଗାମୀ ଚଳ—ସବୁ ଅଟେ ଶବସ୍ଥାନ ।" ]

## ସର୍ଦ୍ଦାର ଉମ୍‌ରାଓ ସିଂହ

ଇକ୍‌ବାଲ୍‌ଙ୍କ ଅନ୍ୟ ଜଣେ ଘନିଷ୍ଠ ବନ୍ଧୁ ଥିଲେ ସର୍ଦ୍ଦାର ଉମ୍‌ରାଓ ସିଂହ । ୧୯୩୨ରେ ଗୋଲ୍ ଟେବୁଲ୍ ବୈଠକରୁ ଫେରିବା ପରେ ଇକ୍‌ବାଲ୍ ତାଙ୍କ ସହିତ ପ୍ୟାରିସ୍‌ରେ ଅବସ୍ଥାନ କରିଥିଲେ । ନଓ୍ୱାବ ଜୁଲ୍‌ଫିକାର୍ ଅଲ୍ଲି ଖାଁ ଙ୍କ ଦ୍ୱାରା ଇକ୍‌ବାଲ୍‌ଙ୍କ ଉପରେ ଇଂରାଜୀରେ ଲିଖିତ ପୁସ୍ତକ "A Voice from the East" (ପ୍ରାଚ୍ୟର ଏକ ସ୍ୱର) ର ମୁଖବନ୍ଧ ସର୍ଦ୍ଦାର ଉମ୍‌ରାଓ ସିଂହଙ୍କ ଦ୍ୱାରା ଲେଖା-ଯାଇଥିଲା । ଏହି ପୁସ୍ତକରେ ସନ୍ନିବେଶିତ ଇକ୍‌ବାଲ୍‌ଙ୍କ ସମସ୍ତ ଉର୍ଦ୍ଦୁ କବିତାର ଇଂରେଜୀ ଅନୁବାଦ ସର୍ଦ୍ଦାର ଉମ୍‌ରାଓ ସିଂହ ହିଁ କରିଥିଲେ । ସର୍ଦ୍ଦାର ଉମ୍‌ରାଓ ସିଂହ ଆଧୁନିକ ଯୁଗର ଶ୍ରେଷ୍ଠ କଳାକାର ଅମୃତା ଶେର୍ ଗିଲ୍‌ଙ୍କ ପିତା ହୋଇଥିବାରୁ ସ୍ମରଣୀୟ ।

## ରାଜକୁମାରୀ ବମ୍ବା ଦଲିପ୍ ସିଂହ

ମହାରାଜା ରଣଜିତ୍ ସିଂହଙ୍କ ପ୍ରପୌତ୍ରୀ ରାଜକୁମାରୀ ବମ୍ବାଙ୍କ ସହିତ ଘନିଷ୍ଠ ସମ୍ପର୍କ ଥିଲା । ୧୯୧୧ରେ ସାର୍ * ଯୋଗୀନ୍ଦର ସିଂହ ରାଜକୁମାରୀ ବମ୍ବାଙ୍କ ସହିତ ଇକ୍‌ବାଲ୍‌ଙ୍କୁ ପରିଚିତ କରାଇ ଦେଇଥିଲେ । ରାଜକୁମାରୀ ବମ୍ବା ଇକ୍‌ବାଲ୍‌ଙ୍କ ସହିତ ସାକ୍ଷାତ ପାଇଁ ଅତ୍ୟନ୍ତ ବ୍ୟାକୁଳ ଥିଲେ । ରାଜକୁମାରୀ ବମ୍ବାଙ୍କ ପ୍ରାସାଦରେ ଉଭୟଙ୍କର ସାକ୍ଷାତ ହୋଇଥିଲା । ରାଜକୁମାରୀଙ୍କ ଅନୁରୋଧ କ୍ରମେ ଇକ୍‌ବାଲ୍ ଏକ କବିତା ପାଠ କରିଥିଲେ । ସେତେବେଳେ ମିର୍ଜା ଜଲାଲୁଦ୍ଦିନ୍ ଓ ସାର୍ ଯୋଗୀନ୍ଦର ସିଂହ ମଧ୍ୟ ଉପସ୍ଥିତ ଥିଲେ ।

ଏହି ପରିପ୍ରେକ୍ଷୀରେ ରାଜକୁମାରୀ ବମ୍ବାଙ୍କ ସହିତ ଇକ୍‌ବାଲ୍‌ଙ୍କ ଦ୍ୱିତୀୟ ସାକ୍ଷାତକାର କଥା ବର୍ଣ୍ଣନା କରିବା ଅସମୀଚୀନ ହେବ ନାହିଁ । ସେତେବେଳେ ସାର୍ ଯୋଗୀନ୍ଦର୍ ସିଂହ ଲାହୋରରୁ ବାହାରକୁ ଯାଉଥାନ୍ତି । ରାଜକୁମାରୀଙ୍କ ଆମନ୍ତ୍ରଣ କ୍ରମେ ଇକ୍‌ବାଲ୍ ନିଜର ବନ୍ଧୁ ମିର୍ଜା ଜଲାଲ୍‌ଉଦ୍ଦିନ୍‌ଙ୍କ ସହିତ ତାଙ୍କର ସାକ୍ଷାତ ପାଇଁ ଗଲେ । ରାଜକୁମାରୀଙ୍କ ଏକ ଅଷ୍ଟ୍ରିଆବାସୀ ବାନ୍ଧବୀ ଇକ୍‌ବାଲ୍‌ଙ୍କୁ ସାକ୍ଷାତ କରିବାର ପ୍ରବଳ ଇଚ୍ଛା ପ୍ରକାଶ କଲେ । ଅନ୍ୟ ଜଣେ ଇଂରେଜ ମହିଳା ମଧ୍ୟ ସେଠାରେ

* "Zikr-i-Iqbal",: Abdul Majid Salik, Page-18 *Ibid*, Page 81

ଉପସ୍ଥିତ ଥିଲେ । ତାଙ୍କ ମଧ୍ୟରୁ ଜଣେ ଇକ୍‌ବାଲ୍‌ଙ୍କୁ ଗୋଟିଏ ପୁଷ୍ପ ଉପହାର ଦେଲେ ଅନ୍ୟ ଜଣକ ନିଜ କୋଳରେ ଗୋଟିଏ ବାଘୁଡ଼ି ନେଇ ବସିଥିଲେ । ଇକ୍‌ବାଲ୍‌ଙ୍କ ଦୁଇଟି ପ୍ରସିଦ୍ଧ କବିତା ।

"ଫୁଲ୍‌କା ତୋହଫା ଅତା ହୋନେପର୍" (ପୁଷ୍ପର ଉପହାର ପାଇଁ) ଏବଂ "......କି ଗୋଦ୍ ମେଁ ବିଲ୍ଲି ଦେଖ୍ କର୍" (......ଙ୍କ କୋଳରେ ବିରାଡ଼ି ଦେଖି) ।

ଉକ୍ତ ସାକ୍ଷାତକାରର ସ୍ମାରକୀ ।

ଇକ୍‌ବାଲ୍‌ଙ୍କ ଉକ୍ତ ରୋମାଣ୍ଟିକ୍ କବିତା ଦ୍ୱୟ ନିମ୍ନରେ ପ୍ରଦତ୍ତ :—

## ଫୁଲ୍ କା ତୋହଫା ଅତା ହୋନେ ପର୍

ଓହ୍ ମସ୍ତେ ନାଜ୍ ଯୋ ଗୁଲ୍‌ଶନ୍ ମେଁ ଯା ନିକଲ୍‌ତି ହୈ
କଲି କଲି କି ଜୁବାଁ ସେ ଦୋଆ ନିକଲ୍‌ତି ହୈ

"ଏଲାହି ଫୁଲୋଁ ମେଁ ଓ ଇନ୍‌ତେଖାବ୍ ମୁଝ୍‌କୋ କରେ
କଲି ସେ ରଶ୍‌କ ଗୁଲେ ଆଫ୍‌ତାବ୍ ମୁଝ୍ କୋ କରେ

ତୁଝେ ଓହ୍ ଶାଖ୍ ସେ ତୋଡ଼େ ? ଯହ୍ନେ ନସିବ୍ ତେରେ
ତଡ଼୍‌ପତେ ରହଗଏ ଗୁଲ୍‌ଜାର୍ ମେଁ ରକିବ୍ ତେରେ

ଉଠାକେ ସଦ୍‌ମାଏ ଫୁର୍‌କତ୍ ୱେସାଲ୍ ତକ୍ ପହୁଞ୍ଚା
ତେରା ହୟାତ୍ କା ଯୌହର୍ କମାଲ୍ ତକ୍ ପହୁଞ୍ଚା

ମେରା କଁୱଲ୍ କେହି ତସଦ୍‌ଦୁକ ହେଁ ଜିସ୍ ପେ ଅହଲେ ନଜର୍
ମେରେ ଶବାବ୍ କେ ଗୁଲ୍‌ଶନ୍ କୋ ନାଜ୍ ହୈ ଯିସ୍ ପର୍

କଭି ମେ ଫୁଲ୍ ହମ୍ ଆଗୋଶେ ମଦ୍‌ଦୋଆ ନ ହୁଆ
କିସି କେ ଦାମନେ ରଙ୍ଗୀ ସେ ଆଶ୍‌ନା ନହୁଆ

ଶଗୁଫ୍‌ତା କର୍ ନ ସକେଗି କଭି ବହାର୍ ଇସେ
ଫସୁର୍‌ଦା ରଖ୍‌ତା ହୈ ଗୁଲ୍‌ଚିଁ କା ଇନ୍‌ତେଜାର୍ ଇସେ ।

[ ଯେ ସମସ୍ତେ ବାମା, ଅନନ୍ୟ ସୁନ୍ଦରୀ ପାଦ ଆପେ ଉଦ୍ୟାନ ଅଙ୍ଗନେ
ହଠାତ୍ ଲହଡ଼ି ଖେଳେ ପ୍ରତିଯୋଗୀତାର, ବ୍ୟାକୁଳିତ ସକଳ ସୁମନେ

ହେ କଳିକା ଅତି ଭାଗ୍ୟବାନ ! ଲଭିଅଛୁ ପରଶ ତୁ-ଚମ୍ପକ ଅଙ୍ଗୁଳି
ଈର୍ଷାରେ ମାଆଳି ଜଳ ଉଦ୍ୟାନର ଆଉ ଯେତେ ଫୁଲ-ତୁ' ହୋଇଲେ

ନାୟିକା ସଖୀଳି

ତା’ ହାତର କନକ ପରଶେ, ତୋ’ ଯନ୍ତ୍ରଣା-ବିଚ୍ଛେଦ’ର ହୋଇଯିବ ଦୂର
ଧନ୍ୟ ହେଲୁ  କଳିକା ତୁ, ସେ ସୁନ୍ଦରୀ ଯେବେ ତୋରେ କରିଛି ନଜର

ମୋ’ ଯୌବନ  କମଳ କଳିକା-ଙ୍କାମୀ  ଜନେ  ଈର୍ଷାରେ  ଜଳନ୍ତି
ଆକାଂକ୍ଷା ମୋ’ ଅପୂର୍ଣ୍ଣ ଏବେବି-ଦଣ ମଲ୍ଲୀ ବଣେ ଝଡ଼ିଯାନ୍ତି

ଜାଣିଛି ମୁଁ  ବୃଥା ମୋ’ ପ୍ରତୀକ୍ଷା, କେବେ ସେହି ବସନ୍ତ ଆସିବ
ଯତେ କ ଫୁଟି ବାସିବ, ମୋ ହୃଦ କଳିକା—ସେ  ନାୟିକା ହସ୍ତ ପ୍ରସରିବ  ! ]

……କ ଗୋଦ୍ ମେଁ ବଲ୍ଲି ଦେଖ୍ କର୍

ତୁଝ୍‌କୋ  ଦୁଜ୍‌ଦିଡା ନଗାହ୍ନ ଯେ  ସିଖାହ କସ୍  ନେ ?
ରମ୍‌ଜ୍ ଆଗାଜେ ମୁହବ୍‌ବତ୍  କ ବତା ଦ  କସ୍  ନେ ?

ହର୍ ଅଦା ସେ ତେରୀ ପୈଦା  ହେ  ମୁହବ୍‌ବତ୍  କୈସି
ନଲ ଆଁଖୋଁ ସେ ଝପକ୍‌ତି  ହେ  ଜବାଓ୍ୱତ୍  କୈସି

ଦେଖ୍‌ତି ହୈ କଭି ଉନ୍‌କୋ  କଭି  ଶର୍‌ମାତି  ହୈ
କଭି  ଉଠ୍‌ତି ହୈ  କଭି ଲେଟ୍ କେ ସୋ ଯାତି ହୈ

ଆଁଖ୍ ତେରୀ  ସିଫତେ  ଆଇନା ହୈ କ୍ୟା ?
ନୂରେ   ଆଗାହ୍ନ   ସେ  ରୌଶନ୍  ତେରୀ ପହ୍‌ଲୁନ୍  ହୈ  କ୍ୟା ?

ମାରତି ହେ  ଇନ୍‌ହେ  ପୁଁଛୋଁ  ସେ ଅଜବ୍ ନାଜ୍ ହୈ ସ୍ନେହ୍
ଚଢ଼୍  ହୈ  ୟା  ଗୁସ୍‌ସା   ହୈ  ?  ୟା ପ୍ୟାର୍‌କା  ଅନ୍ଦାଜ୍   ହୈ  ସ୍ନେହ୍

ଶୋଖ୍  ତୁ  ହୋଗି,  ତୋ ଗୋଦ ସେ ଉତାରେଁ  ଗେଁ  ତୁଝେ
ଗିର୍  ଗୟୀ  ଫୁଲ୍ ଯୋ  ସିନେ କା  ତୋ  ମାରେଁ ଗେ ତୁଝେ

କ୍ୟା ତଜସ୍‌ସୁସ୍   ହୈ ନୁଝେ  ?  କସ୍‌କ  ତମନ୍‌ନାଇ  ହୈ
ଆହ୍ ! କ୍ୟା  ତୁ  ଭି  ଇସି  ଚଜ୍ କ  ସୌଦାଇ   ହୈ

ଖାସ୍   ଇନ୍‌ସାନ୍  ସେ କୁଛ୍  ହୁସନ୍  କା  ଅହେସାସ୍  ନହିଁ
ସୁରତେ ଦଲ୍ ହୈ  ଯେ  ହର୍  ଚଜ୍ କେ ବାତନ୍ ମେ ମକାଁ

ଶିଶଏ ଦହର୍  ମେ  ମାନନ୍ଦେ ମଏ ନାବ୍  ହୈ  ଇଶ୍‌କ
ରୁହେ ଖୁରଶିଦ୍ ହୈ,  ଖୁନେ ରଗେ  ମହେତାବ୍ ହୈ ଇଶ୍‌କ ।

ଢଲେ ହର୍ ଜର୍ରା ମେଁ ପୋଶିଦା ଜଣକ୍ ହୈ ଇସ୍କ
ନୁର୍ ସେ ଓହ୍ ହୈ କେ ହର୍ ଶୋ ମେଁ ଝଲକ୍ ହୈ ଇସ୍କ

କହୁଁ ସାମାନେ ମୋସର୍ରତ୍, କହିଁ ସାକେ ଗମ୍ ହୈ
କହିଁ ଗୌହର୍ ହୈ, କହିଁ ଅଶ୍କ୍' କହିଁ ଶବ୍‌ନମ୍ ହୈ

[ ······କୋଳରେ ବଗଡ଼ ଦେଖି ]

[ ହେ ବଗଡ଼ ! ଆଖିରେ ଯେବ ରହାଣୀ—କିଏ ତୋତେ ଶିଖାଇଲା କହ ?
ପ୍ରେମର ପ୍ରଥମ ମନ୍ତ୍ର, ତୋ' କଣ୍ଠରେ ଭରି - ପ୍ରେମ କିଏ ଶିଖାଇଛି କହ ?

ବଗୁଲିଆ ରହାଣୀ ତୋ, ପ୍ରେମର ଇସାର ହିଏ ସତେ ଅବା ପ୍ରେମ-ବନ୍ଦୀ-କାର
ମୁଁ ରହିଲେ ତାଙ୍କ ଆଡ଼େ, ପ୍ରେମରସ୍ତେ ଜୁଡ଼ୁବୁଡ଼ୁ ହୁଏ ତୋର ନୟନର ତାର

କେବେ କେବେ ଉଠିପଡୁ, ଶୋଇପଡୁ—ଶୋଇ ପୁଣି ଉଠିପଡୁ କେବେ
ତୋ' ଆଖିକ ପ୍ରେମର ଆଇନା !—ପ୍ରେମସ୍ତେଲେ ରହିଥାଉ ଯେବେ

ଜନମ କ ତୋର କହ !-ସୌନ୍ଦର୍ଯ୍ୟ-ଶାଶ୍ୱତ ସୌନ୍ଦର୍ଯ୍ୟ ସବୁ ଉପଭୋଗ ପାଇଁ
କେତେ ରଙ୍ଗେ ଛଇକାଛୁ, କୋଳେ ଶୋଉ—ପକ୍ଷାମାରୁ, ସତେ କଣ ପ୍ରେମେ ହେଉ
ବାଇ !

ଏ କ ତୋର ରାଗରୁଷା, ଅବା ପ୍ରେମ ସ୍ୱାଗତକା ଜାଣିବ କେମିତ
ଅଛୁ ତ କୋଳେ ତାଙ୍କର, ଫିଙ୍ଗି ଦେବେ ଦୂରେ ପୁଣି, ବଗଡ଼ ତୁ ନହୁଅ
ଏମିତ

ତାଙ୍କ ବକ୍ଷ କୁସୁମ ଲତକା, ଫିଙ୍ଗିଦେଲେ ଅକାରଣେ ପାଇବୁ ଯେ ଦଣ୍ଡ
କହନା ତୋ ଇଚ୍ଛା କଣ, ରହୁଁ କି ବା କସ—ପ୍ରେମେ କବା ହେଉଛୁ ଉଦ୍ଦଣ୍ଡ !

କେବଳ ମଣିଷ ପାଇଁ ପ୍ରେମ ଲେଖା ନୁହେଁ
ପଶୁ କହ ପତଙ୍ଗ ବ କହ—ପ୍ରେମ ପାଇଁ ବାଇଆ କେ ନୁହେଁ !

ଏ ପୃଥିବୀ ମତର ପିଆଲା — ପ୍ରେମ ସୁରା ଭରା ଅବରତ
ଚନ୍ଦ୍ରର ଶୀତଳ କାନ୍ତ୍ୱା, ସୂର୍ଯ୍ୟର ପ୍ରଚଣ୍ଡହୁଆ — ହୃଦୟରେ ବହେ ପ୍ରେମ ସ୍ରୋତ

ସବୁରେ ଆଲୋକ ଭରେ, ଅଣ୍ତୁରେ ଜୀବନ ଭରେ, ଏକା ସେହ ପ୍ରେମ
କେବେ ସୁଖ, କେବେ ଦୁଃଖ, ଅଶ୍ରୁ ଅବା ହାସ କେବେ, ସଂବୃତାର କାମ

କା ହୃଦୟେ ମୁକ୍ତାସମ ପ୍ରେମଧାର ଝଲମଲ କରେ
କା' ପାଇଁ କାକର ବନ୍ଧୁ ଝୁର ଝୁର ଆନ କେହ ମରେ । ]

ଅବ୍ଦୁଲ୍ ମଜିଦ୍ ସାଲିକଙ୍କ ମତରେ, ରାଜକୁମାରୀ ଅମ୍ମାଙ୍କ ସହିତ ଇକ୍‌ବାଲଙ୍କ ସାକ୍ଷାତ ୧୯୧୧ ମସିହାରେ ହୋଇଥିଲା । କିନ୍ତୁ "ବାଙ୍ଗେ ଦରା"ରେ କବିତା "ଫୁଲ୍‌କା ତୋହ୍‌ଫା ଅତା ହୋନେ ପର୍" ୨ୟ ଭାଗ (୧୯୦୫ରୁ ୧୯୦୮)ର କବିତାରେ ସ୍ଥାନ ପାଇଛି । ଇଂରେଜ ମହିଳାମାନଙ୍କ ସହିତ ସାକ୍ଷାତକାର ଘଟଣାଟି ସତ୍ୟ, କିନ୍ତୁ ସାକ୍ଷାତକାଳରେ କିଛି ପାର୍ଥକ୍ୟ ହୋଇପାରେ । ଦ୍ୱିତୀୟ କବିତା "...... ...କି ଗୋଦ୍ ମେଁ ବିଲ୍ଲି ଦେଖ୍ କର୍" ତୃତୀୟ ଭାଗରେ ସ୍ଥାନ ପାଇଛି । ଏହା ୨ୟ, ଭାଗରେ ସ୍ଥାନ ପାଇବା ଉଚିତ ଥିଲା ।

**ସରୋଜିନୀ ନାଇଡୁ**

ସରୋଜିନୀ ନାଇଡୁ ଇକ୍‌ବାଲ୍‌ଙ୍କୁ ଗଭୀର ଭକ୍ତି କରୁଥିଲେ । ଏକଦା ସେ ଇକ୍‌ବାଲ୍‌ଙ୍କ କବିତା ଦ୍ୱାରା ଏତେ ପ୍ରଭାବିତ ହୋଇଥିଲେ ଯେ, ୧୫ ଅକ୍ଟୋବର, ୧୯୨୭ରେ ପଣ୍ଡିତ ଜବାହରଲାଲଙ୍କୁ ବମ୍ବେରୁ ଲିଖିତ ଏକ ପତ୍ରରେ ଇକ୍‌ବାଲ୍‌ଙ୍କ କବିତାର ଏକ ପଂକ୍ତି ଲେଖି ପକାଇଥିଲେ ‚-

"ତରତରରେ ଲେଖି ପକାଉଥିବା ମୋର ଅକ୍ଷର ସବୁକୁ ଆପଣ ପଢ଼ି ପାରିବେ କି ନାହିଁ—ମୋର ସନ୍ଦେହ ହୁଏ । ମୋର ମଣି ବନ୍ଧରେ ଭୀଷଣ ଯନ୍ତ୍ରଣା ହେଉଛି । ଇକ୍‌ବାଲଙ୍କ ଭାଷାରେ କହିବାକୁ ଗଲେ—

"ମୈଁ ସରାପା ଦର୍ଦ ହୁଁ"

ଏହା "ବାଙ୍ଗେ ଦରା" ର ସକ୍‌ଲିଆ (ସିସିଲି ଦ୍ୱୀପ) ନାମକ କବିତାର ନିମ୍ନୋକ୍ତ ପଂକ୍ତିରୁ ଉଦ୍ଧୃତ—

ଦର୍ଦ ଅପ୍‌ନା ମୁଝ୍‌ସେ କହ୍ ମୈ ଭି ସରାପା ଦର୍ଦ ହୁଁ
ଜିସ୍‌କି ତୁ ମନ୍‌ଜିଲ୍ ଥା ମୈ ଇସ୍ କାରୱାଁ କି ଗର୍ଦ ହୁଁ"

[ ଯନ୍ତ୍ରଣା ତୋ' କହ ମୋତେ, ମୁଁ ଯେ ଅଟେ 'ସର୍ବାଙ୍ଗ ଯନ୍ତ୍ରଣା'
ତୁ' ଯାହାର ଲକ୍ଷ୍ୟ ଥିଲୁ, ସେ ଯାତ୍ରୀଦଳର, ମୁଁ ଅଟଇ କ୍ଷୁଦ୍ର ଧୂଳିକଣା ]

---

※ "I wonder if you can read my scrawl. My wrist is stiff with pain. "Main sarapa-dard -hun" to puote Iqbal literally. A Bunch of old letters : Jawahar Lal Nehru page-49.

## ଡକ୍‌ଟର ମୁଲ୍‌କରାଜ ଆନନ୍ଦ

ଇଂରାଜୀର ପ୍ରସିଦ୍ଧ ଔପନ୍ୟାସିକ ଡଃ ମୁଲକ୍‌ରାଜ ଆନନ୍ଦ ଗୋଟିଏ ଘଟଣା ବର୍ଣ୍ଣନା କରିଛନ୍ତି । ଏହି ଘଟଣାଟି ଇକ୍‌ବାଲଙ୍କ ଚରିତ୍ରର ଏକ ଅଜଣା ଦିଗ ଉପରେ ଆଲୋକପାତ କରେ । କବି ହେବାର ଆଶାୟୀ ତରୁଣ ଛାତ୍ର ମୁଲକ୍‌ରାଜ ଆନନ୍ଦ ୧୯୨୨ରେ ଇକ୍‌ବାଲ୍‌ଙ୍କୁ ସାକ୍ଷାତ କଲେ । ସେ କହିଲେ ଯେ, ତାଙ୍କର ଜଣେ ବନ୍ଧୁ ଓ ସାଥିଜ ବାହାରେ ଅପେକ୍ଷାରତ ଅଛନ୍ତି । ଇକ୍‌ବଲ୍ ନିଜେ ଉଠି ସେମାନଙ୍କୁ ପାଛୋଟି ଆଣିଲେ । ତାଙ୍କର ଏତାଦୃଶ ବ୍ୟବହାରରେ ଉତ୍ସାହିତ ହୋଇ ମୁଲକରାଜ ଆନନ୍ଦ କହିଲେ—"ମୁଁ କିଛି କବିତା, କୈଶୋର-ପ୍ରେମ କବିତା (calf-love-poem) ଆଣିଛି" ଏକଥା କହି ସେ ନିଜର ବାନ୍ଧବୀ ୟାସିନ୍ ଆଡ଼େ ଦୃଷ୍ଟିଫେଇ କହିଲେ,"ଯଦି ସେହି ସୁନ୍ଦରୀ ବାଳକାଟି ବନ୍ଧ୍ୟା ହୁଅନ୍ତି ତେବେ ତୁମ ଦୁହିଁଙ୍କୁ ଧନ୍ୟବାଦ ।" ମୁଲକ୍‌ରାଜ ଆନନ୍ଦ କହିଲେ—"ମୁଁ ହିନ୍ଦୁ କିନ୍ତୁ ସେ ମୁସଲମାନ ।"ଇକ୍‌ବାଲ୍ କହିଲେ—"ମୁଁ ଏହି ପ୍ରକାରର ମିଳନ ହିଁ ଚାହେଁ ।" ୟାସ୍‌ମିନ୍ ଗୋଟିଏ ରେଲୱେ ଗାର୍ଡ଼ର ତୃତୀୟ ପକ୍ଷ୍ୟ ସ୍ତ୍ରୀ ହେବା ପରେ ସର୍ବଶେଷରେ ତାଙ୍କୁ ହତ୍ୟା କଲା । ଇକ୍‌ବାଲ୍ ମୁଲକ୍‌ରାଜ୍ ଆନନ୍ଦଙ୍କୁ ଲଣ୍ଡନରେ ଦର୍ଶନରେ ଉଚ୍ଚଶିକ୍ଷା ପାଇଁ ଯିବା ସକାଶେ କିଛି ରାହାଖର୍ଚ୍ଚ ମଧ୍ୟ ଦେଲେ ।

ଏକଥାରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ, ଇକ୍‌ବାଲ୍ କିପରି ଦୟାଳୁ ଥିଲେ ଏବଂ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କ ସହିତ ତାଙ୍କର କିପରି ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ବଜାୟ ରହିଥିଲା । ଏ ସନ୍ଦର୍ଭରେ ଆଉ ଦୁଇଟି ଘଟଣା ଉଲ୍ଲେଖ ଯୋଗ୍ୟ :—

## ଦୁଇଟି ପିତୃମାତୃହୀନ ହିନ୍ଦୁ ପିଲାଙ୍କୁ ସାହାଯ୍ୟ

ପ୍ରଥମ ଘଟଣାଟି ସମ୍ବନ୍ଧରେ ଅବ୍‌ଦୁଲ୍ ତାରିକ୍ * କହନ୍ତି ଯେ ଇକ୍‌ବାଲ୍‌ଙ୍କ ଗୃହ ନିକଟରେ ଗୋଟିଏ ସିନେମା ହଲ୍ ଥିଲା । ଥରେ ତାରିକ୍ ଇକ୍‌ବାଲ୍‌ଙ୍କୁ ପଚାରିଲେ ଯେ, ସିନେମା ଗୃହର ଗଣ୍ଡଗୋଳ ତାଙ୍କ ଚିନ୍ତା ଓ କବିତା ରଚନାରେ ବାଧା ସୃଷ୍ଟି କରୁଛି କି ନାହିଁ ? ଉତ୍ତରରେ ଇକ୍‌ବାଲ୍ କହିଲେ, ସେ ଏଥିରେ ଅଭ୍ୟସ୍ତ ହୋଇ ସାରିଛନ୍ତି । ଭଡ଼ାରେ ଅନ୍ୟ ଏକ ଗୃହ ନେବାପାଇଁ ତାରିକ୍ ତାଙ୍କୁ ପରାମର୍ଶ ଦେବାରୁ ଇକ୍‌ବାଲ୍ ତାହା ଟାଳି ଦେଇ କହିଲେ, 'ଏ ଗୃହଟି ହେଉଛି ଦୁଇଟି ପିତୃମାତୃହୀନ ହିନ୍ଦୁ ପିଲାଙ୍କର, ଯାହାଙ୍କୁ ମୁଁ ମାସିକ ୧୩୦ ଟଙ୍କା ଭଡ଼ା ସ୍ୱରୂପ ଦେଉଛି । ମୋର ଭୟ ହେଉଛି, ମୁଁ ଯଦି ଏ ଘରଟି ଛାଡ଼ିଦିଏ, ହୁଏତ ପିଲା ଦୁଇଟି ଏତକ ଭଡ଼ାରୁ ବଂଚିତ ହେବେ ।"

---

*"Maiy Shabana" by Abdul Rashid Tariq, cotained in "Malfoozat" Compiled by Mahmood Nizami (Page-208)

ଡ଼ଃ ହୀରାଲାଲ ଚୋପ୍ରା

ନିମ୍ନୋକ୍ତ ଘଟଣାଟି ଜାଲାଲୁଦ୍ଦିନ ଅକବର୍ *ବର୍ଣ୍ଣନା କରିଛନ୍ତି । ଏହା ଥିଲା ରାଜ୍ୟ ସ୍ତରୀୟ ବୃତ୍ତିର ଏକ ଘଟଣା । ପାର୍ସି ଏମ୍. ଏରେ ପ୍ରଥମ ହେଉଥିବା ଛାତ୍ରଟି ଏହି ବୃତ୍ତି ଲାଭ କରି ଉଚ୍ଚଶିକ୍ଷା ପାଇଁ ବିଲାତ ଯାତ୍ରା କରିବାକୁ କ୍ଷମ ନଥିଲା । ୧୯୨୯ରେ ଇକ୍‌ବାଲ୍ ପାର୍ସି ଏମ୍.ଏ ରେ ପ୍ରଶ୍ନକର୍ତ୍ତା ଓ ମୁଖ୍ୟ ପରୀକ୍ଷକ ଥିଲେ । ଅକ୍‌ବର୍ ଏହି ପରୀକ୍ଷା ଦେଇଥିଲେ କିନ୍ତୁ ଏଥିରେ ଭଲ କରି ନଥିଲେ । ତେଣୁ ହାଫିଜ୍ ମହମ୍ମଦ୍ ଶିରାନି ଓ ସାର୍ ଅବ୍‌ଦୁଲ୍ କାଦିର୍, ଅକ୍‌ବରଙ୍କ ପାଇଁ ସୁପାରିଶ୍ କରି ଇକ୍‌ବାଲଙ୍କୁ କହିଲେ ଯେ, ଯଦି ଅକ୍‌ବର୍ ଫେଲ୍ ହୋଇଯାନ୍ତି, ତେବେ ରାଜ୍ୟସ୍ତରୀୟ ବୃତ୍ତିଟି ଗୋଟିଏ ହିନ୍ଦୁଛାତ୍ର ପାଇଯିବ । ଇକ୍‌ବାଲ୍ ଉତ୍ତର ଦେଲେ—"ମୁଁ ଜାଣିଥିଲି ଯେ ଏହି ଯୁବକ ପାର୍ସିରେ ପ୍ରବୀଣ, ଜଣେ ସୁନ୍ଦର କବି ଓ ଆଶାପ୍ରଦ ଛାତ୍ର । କିନ୍ତୁ ଯେ ପ୍ରକୃତରେ ହକ୍‌ଦାର୍, ତାକୁ ଏ ବୃତ୍ତିଟି ମିଳିବା ଉଚିତ ।" ଫଳସ୍ୱରୂପ ସେ ବର୍ଷର ପାର୍ସି ବୃତ୍ତି ଅକ୍‌ବରଙ୍କ ଠାରୁ ୨ନମ୍ବର ଅଧିକ ରଖି ଗୋଟିଏ ହିନ୍ଦୁ ଛାତ୍ରଙ୍କୁ ହିଁ ମିଳିଲା । ଏହି ଛାତ୍ରଟି ହେଉଛନ୍ତି । ଡ଼ଃ ହୀରାଲାଲ ଚୋପ୍ରା—ପାର୍ସି ଭାଷାର ପ୍ରସିଦ୍ଧ କବି ଓ ଲେଖକ ଏବଂ ଏକଦା କଲିକତା ବିଶ୍ୱବିଦ୍ୟାଳୟର ପାର୍ସି ବିଭାଗର ମୁଖ୍ୟ ଅଧ୍ୟାପକ । ଡ଼ଃ ଚୋପ୍ରା ନିଜେ ଏ ଘଟଣାଟି ମୋତେ କହିଲେ ।

ଇକ୍‌ବାଲ୍‌ଙ୍କ ବିରୁଦ୍ଧରେ କାଫିର୍ (ବିଧର୍ମୀ) ହେବାର ଅଭିଯୋଗ

ବିଭିନ୍ନ ସମ୍ପ୍ରଦାୟର ଲୋକମାନଙ୍କ ସହିତ ଘନିଷ୍ଠ ସମ୍ପର୍କ ରଖିଥିବାରୁ ଅନେକ ସମୟରେ ଇକ୍‌ବାଲଙ୍କୁ ଭୁଲ ବୁଝାଯାଉଥିଲା । ନିଜର କବିତା "ଆଫ୍‌ତାବ୍" ଏବଂ ବିଶେଷ କରି କବିତା "ରାମ୍"ରେ ସେ ରାମଙ୍କୁ ଜଣେ "ଭଗବାନଙ୍କ ଦୂତ" ଓ "ନୀତି ଶିକ୍ଷାର ଆଲୋକ" ରୂପେ ବର୍ଣ୍ଣନା କରିଥିବାରୁ ତାଙ୍କର ସମଧର୍ମୀମାନେ ଇକ୍‌ବାଲଙ୍କୁ କାଫିର୍ (ବିଧର୍ମୀ) ବୋଲି ଅଭିଯୁକ୍ତ କରିଥିଲେ । ଏହା ହେଉଛି ଆଇନ ଅମାନ୍ୟ ଆନ୍ଦୋଳନର ପରବର୍ତ୍ତୀ ଘଟଣା । ସେତେବେଳେ "ଶୁଦ୍ଧି", (ମୁସଲମାନମାନଙ୍କୁ ହିନ୍ଦୁ ଧର୍ମରେ ଦୀକ୍ଷିତ କରିବା)ର ପ୍ରଥା, "ସଂଗଠନ" ଓ "ତବ୍‌ଲିଗ୍" (ହିନ୍ଦୁମାନଙ୍କୁ ଇସ୍‌ଲାମ ଧର୍ମରେ ଦୀକ୍ଷିତ କରିବାର) ପ୍ରଥା ଯୋରସୋରରେ ଚାଲୁଥିଲା । ପରିହାସ ଛଳରେ ଜଣେ ସଦାନନ୍ଦ ପ୍ରକୃତିର ମୁସଲମାନ 'ପୀରଜାଦା ମହମ୍ମଦ ସିଦ୍ଦିକ୍

---

* Article entitled "Iqbal Ba Hasiat-i-Mumtahin" by Mohammed Hanif Shahid in Iqbal Number of the Journal "Naqoosh" issue No. 121, Sept. 1977 (Page 455-456)

ଶାହାରନ୍‌ପୁରୀ''ଙ୍କ ବଦନାମରେ ମୌଲାନା ସୈୟଦ ହାଲଦାର ଅଲି ଶାହାଙ୍କୁ (ସେ କି ଲାହୋରର "ଓଜୀରଖାଁ ମସ୍‌ଜିଦ୍''ର ପୁରୋହିତ ଥିଲେ ଏବଂ କଥା କଥାକେ ମୁସଲମାନମାନଙ୍କୁ କାଫେର୍ ରୂପେ ଅଭିଯୁକ୍ତ କରୁଥିଲେ) ପାଖକୁ ଏକ ପତ୍ର ଲେଖିଲେ । ସେହି ପତ୍ରରେ ସେ ନିମ୍ନଲିଖିତ ପ୍ରଶ୍ନଟି ପଚାରିଥିଲେ :—

"ଯେଉଁ ମୁସଲମାନ ନିଜ କବିତାରେ ସୂର୍ଯ୍ୟଙ୍କୁ ଭଗବାନଙ୍କ ନାମ ମଧ୍ୟରୁ କେତୋଟି ନାମ ଦ୍ୱାରା ନାମିତ କରେ ଏବଂ ସୂର୍ଯ୍ୟଙ୍କୁ ପୂଜାକରେ, ବିଚାର-ଦିବସକୁ ବିଶ୍ୱାସ କରେ ନାହିଁ, ମୁସା ଅଲେହି ସଲାମ (Moses) ଙ୍କ ପରି ଶକ୍ତିଶାଳୀ ଦେବଦୂତଙ୍କୁ ପରିହାସ କରେ, ସେମାନଙ୍କୁ ତିରସ୍କାର କରେ, ପୀର୍ ଓ ପଣ୍ଡିତମାନଙ୍କୁ ବିଦ୍ରୁପ କରେ, ହିନ୍ଦୁମାନେ ଯେଉଁ ଧର୍ମାତ୍ମାମାନଙ୍କୁ ଅବତାର ରୂପେ ମାନନ୍ତି, ସେମାନଙ୍କୁ ପୈଗମ୍ବର ଏବଂ ଜଗ-ଦର୍ଶନ କାରୀ ଆଲୋକର ଆଖ୍ୟା ଦିଏ, ସେହି ବ୍ୟକ୍ତି ସମ୍ପର୍କରେ ଇସଲାମ୍ ଓ ମୁସଲମାନ ପଣ୍ଡିତଙ୍କ ଧାରଣା କଣ ? ସେ ପ୍ରକାର ବ୍ୟକ୍ତି କଣ ପ୍ରକୃତରେ ମୁସଲମାନ ନା ବିଧର୍ମୀ ? ଅନ୍ୟ ମୁସଲମାନର ସେ ପ୍ରକାର ବ୍ୟକ୍ତିସହ କଥୋପକଥନ, ଉଠା ବସା, ଆଚାର ବ୍ୟବହାର, ବାଣିଜ୍ୟିକ ଓ ଯେ କୌଣସି ପ୍ରକାର ବ୍ୟବହାର ସମ୍ପର୍କରେ ଆପଣଙ୍କ ମତାମତ କଣ ?"

ମୌଲାନା ତତ୍‌କ୍ଷଣାତ୍ ଉତ୍ତର ଦେଲେ ଯେ, ସେ ପ୍ରକାର ବ୍ୟକ୍ତି ମୁସଲମାନ ହୋଇ ନପାରେ । ପୁନଶ୍ଚ କହିଲେ ଯେ, ସହସ୍ରନାମ ଏବଂ ଗୁଣାବଳୀ କେବଳ ଭଗବାନଙ୍କ ପାଇଁ ଉଦ୍ଦିଷ୍ଟ । ହିନ୍ଦୁମତରେ ଅବତାର ହେଉଛନ୍ତି ଭଗବାନଙ୍କ ନୂତନ ଜନ୍ମ । ଏହି ପରିପ୍ରେକ୍ଷୀରେ ସୂର୍ଯ୍ୟଙ୍କୁ ସ୍ରଷ୍ଟା ବୋଲି କହିବା ବା ଈଶ୍ୱରୀୟ ଗୁଣାବଳୀ ଦ୍ୱାରା ସୂର୍ଯ୍ୟଙ୍କୁ ନାମିତ କରିବା କଥା, ମୁସା ଅଲେହିସଲାମ (Moses)ଙ୍କ ପ୍ରତି ବିଦ୍ରୁପ ଏବଂ ଇସ୍‌ଲାମ୍ ଧର୍ମାତ୍ମାମାନଙ୍କ ପ୍ରତି ବିଦ୍ରୁପ, ବିଧର୍ମ ଅଟେ । ଏହି କବି ଉକ୍ତ ବିଧର୍ମ ଗୁଡ଼ିକ ବର୍ଜନୀୟ ପାଇଁ ଅନୁତାପ ନକଲେ ତାଙ୍କ ସହିତ ଅନ୍ୟ ମୁସଲମାନମାନଙ୍କର ମିଳାମିଶା ସର୍ବାଦୌ ଅନ୍ୟଥା ସେମାନେ ମଧ୍ୟ ପାପରେ ଭାଗୀଦାର ହେବେ ।

ଅବଶ୍ୟ ଏକଥା ଭିନ୍ନ ଯେ, ମୌଲାନାଙ୍କ ଏହି ମୂର୍ଖ ନିର୍ଦ୍ଦେଶ ପାଇଁ ସେ ବିଶିଷ୍ଟ ଧାର୍ମିକ ପଣ୍ଡିତ ସୟଦ ସୁଲେମାନ ନଦ୍‌ଭି ଏବଂ ଅନ୍ୟାନ୍ୟ ପଣ୍ଡିତମାନଙ୍କ ଦ୍ୱାରା ତିରସ୍କୃତ ହୋଇଥିଲେ । ସେମାନେ ଏକଥା ସୁଦ୍ଧା କହିଲେ ଯେ, ଯଦି ଇକ୍‌ବାଲ୍‌ଙ୍କ ପରି ଜଣେ ନୈଷ୍ଠିକ ମୁସଲମାନ ଓ ମହମ୍ମଦଙ୍କ ଭକ୍ତକୁ କାଫେର୍ କୁହାଯାଇପାରେ, ତେବେ ପ୍ରକୃତ ମୁସଲମାନ୍ କିଏ ହେବ ?

ଇକ୍‌ବାଲ୍‌ଙ୍କ ପ୍ରତି ଉପରୋକ୍ତ ମନ୍ତବ୍ୟ ଦେଉଥିବା ନିଜର ଏକ ପ୍ରତିବେଶୀ ମୌଲବୀଙ୍କ ବିଷୟରେ ଇକ୍‌ବାଲ୍ ନିଜର ଏକ ପ୍ରସିଦ୍ଧ ଆତ୍ମବିଶ୍ଳେଷଣାତ୍ମକ କବିତା "ଜ୍ୱୋହଦ୍ ଓ ରିନ୍ଦ" ରେ ବର୍ଣ୍ଣନା କରିଛନ୍ତି :—

ସୁନ୍‌ତା ହୁଁ କେ କାଫିର୍ ନହିଁ ହୃନ୍ଦୁ କୋ ମମଟ୍‌ତା
ହୈ ଶୀସା ଅକନ୍ଧା ଅସରେ ଫଲ୍‌ସଫା ଦାନୀ

[ ହୃନ୍ଦୁ ସେ କାଫେର୍ କହେ ନାହିଁ ବୋଲି, ମୁଁ ଇତ ଶୁଣିଛୁ
ଦର୍ଶନର ଜ୍ଞାନ ତାକୁ, ସତକଥା ଏ ବୁଦ୍ଧି ଦେଇଛୁ । ]

ଏହି ପରପ୍ରେକ୍ଷୀରେ ଇକ୍‌ବାଲ୍‌ଙ୍କୁ କହିବାକୁ ପଡ଼ିଥିଲା :—

ଯାହେଦେ ତଙ୍ଗ୍ ନଜର୍ ନେ ମୁଝେ କାଫିର୍ ଜାନା
ଅଓର୍ କାଫିର୍ ଏ ସମଝ୍‌ତା ହୈ ମୁସଲମାଁ ହୁଁ ମେଁ

[ ସ୍ଥୂଳ-ବୁଦ୍ଧି ଥିବା ପଣ୍ଡିତ ମୋତେ, କାଫେର୍ କହଇ
ଆଉ ବି ତ କାଫେର୍ ମୋତେ ମୁସଲମାନ୍ କହଇ ]

## ବ୍ରାହ୍ମଣ ବଂଶଜ ଯୋଗୁଁ ଗର୍ବ

ଏହି ପରପ୍ରେକ୍ଷୀରେ ମୁଁ ଏକଥା ସ୍ପଷ୍ଟ କରିଦେବାକୁ ଚାହେଁ ଯେ ଇକ୍‌ବାଲ୍‌ଙ୍କ ପୂର୍ବ ପୁରୁଷ ବ୍ରାହ୍ମଣ ଥିବା ଯୋଗୁ ସେ ଗର୍ବ ଅନୁଭବ କରୁଥିଲେ । ଅନୁସନ୍ଧାନ ଦ୍ୱାରା ସେ ଜାଣି ପାରିଥିଲେ ଯେ, ତାଙ୍କର ଗୋତ୍ର ଥିଲା ସପ୍ରୁ । ତାଙ୍କ ପୁତ୍ର ଜାଓ୍ୱେଦ୍ ଇକ୍‌ବାଲ୍ ମଧ୍ୟ ଇକ୍‌ବଲ୍‌ଙ୍କ ଜୀବନୀ "ଜିନ୍ଦାରୁଦ୍" ରେ ଏକଥା ସ୍ପଷ୍ଟ କରି ଦେଇଛନ୍ତି । କଥିତ ଅଛି ଯେ, "ସପ୍ରୁ" ଗୋତ୍ରୀ ବ୍ରାହ୍ମଣ ମିଶରରୁ ଭାରତକୁ ଆସିଥିଲେ, ମୁଁ ଇକ୍‌ବାଲ୍‌ଙ୍କ ଜୀବନୀର ଏକ ଆକର୍ଷଣୀୟ ଉଦ୍ଧୃତାଂଶ ଏଠାରେ ଉଲ୍ଲେଖ କରୁଛି ।*

"ଅଦବୀ ଦୁନିଆ"ର ମଇ, ୧୯୬୫ ସଂଖ୍ୟାରେ ଖାଜା ହାସନ ନିଜାମିଙ୍କ ସହିତ ଦିଲ୍ଲୀରେ ମିଶରର ରାଷ୍ଟ୍ରଦୂତଙ୍କ ସହିତ ନିଜର ସାକ୍ଷାତକାର କଥା ପ୍ରକାଶିତ ହୋଇଛି । ମିଶରର ରାଷ୍ଟ୍ରଦୂତ ନିଜ ଭାଷଣରେ ଏକଥା ପ୍ରମାଣିତ କରିବାର ଚେଷ୍ଟା କରିଥିଲେ ଯେ, କାଶ୍ମିରୀ ବ୍ରାହ୍ମଣ ମିଶରରୁ ଆସିଥିଲେ । କାଶ୍ମୀରରେ ସୂର୍ଯ୍ୟ ଦେବତାଙ୍କ ମୁଖ୍ୟ ପୂଜାରୀଙ୍କୁ "ହରିହର" କୁହାଯାଉଥିଲା । ପ୍ରାଚୀନ କାଶ୍ମୀର ଭାଷାରେ "ର" ର ଅର୍ଥ ହେଉଛି ସୂର୍ଯ୍ୟ । ପବିତ୍ର କୋରାନ୍‌ରେ ମଧ୍ୟ "ସୁସୁଫ୍ ଶ୍ଳୋକ"ର ପ୍ରାରମ୍ଭ, "ଅଲିଫ୍, ଲମ୍, ର ମଧ୍ୟରୁ" ହୋଇଛି । ପକ୍ଷାନ୍ତରେ ଏକଥା କୁହାଯାଇପାରେ ଯେ, ପବିତ୍ର କୋରାନ୍‌ରେ ମଧ୍ୟ ଭଗବାନ "ର" ଶବ୍ଦ ବ୍ୟବହାର କରିଛନ୍ତି । ଏହିପରି ହିନ୍ଦୁ-ଧର୍ମରେ ରାମ ହେଉଛନ୍ତି ଏକ ପୂଜ୍ୟ ବ୍ୟକ୍ତିତ୍ୱ । ଅଧିକନ୍ତୁ ମିଶରୀୟ ରାଷ୍ଟ୍ରଦୂତ କହିଲେ ଯେ,

---

* ଜିନ୍ଦାରୁଦ୍ (ପ୍ରଥମ ଭାଗ) 'ହୟାତେ ଇକ୍‌ବାଲ୍ କା ତଶ୍‌କିଲି ଦୌର୍ ; ଯାଓ୍ୱେଦ୍ ଇକ୍‌ବଲ୍ ପୃ. ୪

ମୁଖ୍ୟ ପୂଜାରୀ ହରହର କୋଲ୍ତା ଫାରୋହଙ୍କ କନ୍ୟାକୁ ବିବାହ କରିଥିଲେ । ଅପୁତ୍ରିକ ଫାରୋହଙ୍କ ମୃତ୍ୟୁ ପରେ ହରହର ତାଙ୍କ ଶ୍ୱଶୁରଙ୍କ ସିଂହାସନ ଆରୋହଣ କରିଥିଲେ । ତାଙ୍କର ବଂଶଧରମାନେ ୪୦୦ ବର୍ଷ ପର୍ଯ୍ୟନ୍ତ ମିଶରକୁ ଶାସନ କଲେ । ତତ୍ପରେ ଏକ ବିଦ୍ରୋହ ଫଳରେ ଅନ୍ୟ ଏକ ରାଜବଂଶ କ୍ଷମତାସୀନ ହେଲା ଏବଂ ହରିହରର ବଂଶଧର ମୁସା (Moses) ଏବଂ ତାଙ୍କର ଅନୁଗାମୀ ଇହୁଦୀ (Jews) ମିଶରରୁ ବିତାଡ଼ିତ ହେଲେ । ହଜରତ୍ ମୁସା ନିଜ ଅନୁଗାମୀମାନଙ୍କ ସହିତ ପାଲେଷ୍ଟାଇନ୍ ଅଭିମୁଖେ ଗମନ କଲେ ଏବଂ ହରହରଙ୍କ ବଂଶଧର ଆଫଗାନିସ୍ଥାନ ଅଭିମୁଖେ ଯାତ୍ରା କଲେ । ସେଠାରେ ସେମାନେ 'ହରି' ନାମକ ଏକ ସହର ସ୍ଥାପନ କଲେ । ଯାହାପରେ "ହେରାତ୍" ନାମରେ ପରିଚିତ ହେଲା । କିଛି କାଳ ପରେ ଏମାନେ କାଶ୍ମୀର ପ୍ରତ୍ୟାଗମନ କଲେ । ପରିଶେଷରେ ଏମାନେ ସମତଳଭୂମି ଆଡ଼େ ଗମନ କରି ନିଜ ପୂର୍ବ ପୁରୁଷଙ୍କ ନାମରେ "ହରି ଦ୍ୱାର" ନାମରେ ଏକ ମନ୍ଦିର ଗଢ଼ିଲେ । ଏହି ଅନୁସନ୍ଧାନ ଦୃଷ୍ଟିରୁ କାଶ୍ମିରୀ ବ୍ରାହ୍ମଣ ହେଉଛନ୍ତି ପ୍ରକୃତରେ ମିଶରୀୟ । ଜବାହରଲାଲ୍ ନେହେରୁଙ୍କ ପରି ଇକ୍‌ବାଲ୍ ମଧ୍ୟ କାଶ୍ମିରୀ ବ୍ରାହ୍ମଣ ହୋଇଥିବାରୁ ମିଶର ବଂଶଜ ।"

ଏହି ନୂତନ ଅନୁସନ୍ଧାନଟି ସପକ୍ଷରେ କୌଣସି ଐତିହାସିକ ପ୍ରମାଣ ନଥିବାରୁ ଏ ବିଷୟରେ ବିଶଦ ସମୀକ୍ଷା କରିବା ସମ୍ଭବ ନୁହେଁ । କିନ୍ତୁ ଏକଥା ନିଶ୍ଚିତ ଯେ, ଇକ୍‌ବାଲଙ୍କ ପୂର୍ବ ପୁରୁଷ କାଶ୍ମୀରୀ ବ୍ରାହ୍ମଣ ହୋଇଥିବାରୁ ସେ ଗର୍ବିତ । ଏହି ପରିପ୍ରେକ୍ଷୀରେ ତାଙ୍କର ନିମ୍ନଲିଖିତ ପଂକ୍ତି ଉଲ୍ଲେଖଯୋଗ୍ୟ :

ମୋରା ବିନଗର କେଦର୍ ହିନ୍ଦୁସ୍ତାଁ ଦିଗର୍ ନମି ବିନି  
ବରହମନ୍ ଜାଦାଏରମଜ୍ ଆଶ୍‌ନାଏ ରୋମ୍ ଓ ତବ୍‌ରେଜ୍ ଅସ୍ତ୍ *

ମିର୍ ଓ ମିର୍ଜା ବସିୟାସତ୍ ଦିଲ୍ ଓ ଦିଁ ବାଖତାଅନ୍ଦ୍  
ଜୁଜ ବିରହମନ୍ ପେସରେ ମୁହରମେ ଅସ୍‌ରାର୍ କୁଜାସ୍ତ୍

[ ମୋତେ ଦେଖ, ଆଉ ଜଣେ କେହି ନାହିଁ, ଭାରତେ ସନ୍ତାନ  
ତତ୍ତ୍ୱେ ଯିଏ ରୁମି ଆଉ ତବ୍‌ରିଜ୍—ମୁଁ ସେହି ବ୍ରାହ୍ମଣ ସନ୍ତାନ

ମିର୍, ମିର୍ଜା—ମସ୍‌ରୁଲ୍ ଏବେ ପ୍ରତ୍ୟକ୍ଷ ରାଜନୀତିରେ  
ବ୍ରାହ୍ମଣ ସନ୍ତାନ ବିନା ରହସ୍ୟଟା—ଜାଣିବ କିଏରେ ?

* ଶମସ୍ ତବ୍‌ରିଜ—ରୁମିଙ୍କ ଗୁରୁଙ୍କ ନାମ

## ଇକବଲ୍ ଓ ପାକସ୍ଥାନ

ଵଵାଦାସ୍ପ ଅଭିଯୋଗ—"ପାକସ୍ଥାନର ପ୍ରବକ୍ତାମାନଙ୍କ ମଧ୍ୟରେ ଇକ୍‌ବାଲ୍ ଅନ୍ୟତମ", ଉପରେ ଆଲୋକପାତ କଲେ ଇକ୍‌ବାଲ୍‌ଙ୍କ ପ୍ରତି ଅଵଚାର ହେବ । ନକଟରେ ପ୍ରାପ୍ତ ଇକ୍‌ବାଲ୍‌ଙ୍କ କେତୋଟି ପତ୍ରରୁ ଜଣାଯାଏ ଯେ, ପଞ୍ଜାବ, ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶ, ସିନ୍ଧୁ ପ୍ରଦେଶ ଓ ବେଲୁଚସ୍ଥାନକୁ ନେଇ ଭାରତ ବର୍ଷ ମଧ୍ୟରେ ଏକ ସ୍ୱୟଂ ଶାସିତ ରାଷ୍ଟ୍ର ଗଠନର ଇକ୍‌ବାଲ୍ ପକ୍ଷପାତୀ ଥିଲେ । ଏକଥା ସେ ୨୯ ଡିସେମ୍ବର ୧୯୩୦ରେ ଏଲ୍ଲାହାବାଦଠାରେ ଅନୁଷ୍ଠିତ ମୁସ୍‌ଲିମ୍ ଲିଗ୍‌ର ବାର୍ଷିକ ଅଧିବେଶନରେ ସଭାପତିତ୍ୱ କର ପ୍ରକାଶ କରଥିଲେ । ସେତେବେଳେ ଲଣ୍ଡନରୁ ପ୍ରକାଶିତ Observer ରେ Edward Thomson ଇକ୍‌ବାଲ୍‌ଙ୍କ ଭାଷଣ "ଇସ୍‌ଲାମ୍‌ର ଧାର୍ମିକ ଚନ୍ତାର ପୁନର୍ଗଠନ"କୁ ଭୁଲ ଭାବରେ ବଶ୍ଳେଷଣ କର ଏହାକୁ "ପାକସ୍ଥାନ-ପ୍ରସ୍ତାବ" ରୂପରେ ଆଖ୍ୟା ଦେଇଥିଲେ । ଏକଥା ଜାଣି ଇକ୍‌ବାଲ୍ Edward Thomson ଙ୍କ ନକଟକୁ ଲେଖିଥିଲେ :—

"ଆପଣ ମୋତେ ପାକସ୍ଥାନ ଗଠନର ପ୍ରସ୍ତାବକ ହସାବରେ ଦୋଷାରୋପ କରୁଛନ୍ତି । କନ୍ତୁ ପାକସ୍ଥାନ ଗଠନ ମୋର ଯୋଜନା ନୁହେଁ । ମୁଁ ମୋର ସଭାପତି ଅଭିଭାଷଣରେ ଯେଉଁ ପ୍ରସ୍ତାବ ଦେଇଥିଲି, ତାହା ହେଉଛି ଏକ ମୁସଲମାନ ପ୍ରଦେଶ, ଅର୍ଥାତ୍ ଭାରତର ଉତ୍ତର ପଶ୍ଚିମାଞ୍ଚଳରେ ଏକ ମୁସଲମାନ ବହୁଳ ପ୍ରଦେଶ ଗଠନ । ମୋ ପ୍ରସ୍ତାବ ଅନୁସାରେ ଏହି (ନୂତନ) ପ୍ରଦେଶଟି ଭାରତୀୟ ରାଷ୍ଟ୍ରସଂଘର ଏକ ଅଂଶ ହୋଇ ରହିଥାନ୍ତା । କନ୍ତୁ ପାକସ୍ଥାନ ପ୍ରସ୍ତାବ ଏକ ଭିନ୍ନ କଥା । ଏଥିରେ ମୁସଲମାନ-ମାନଙ୍କର ଏକ ସ୍ୱତନ୍ତ୍ର ରାଷ୍ଟ୍ରସଂଘ ହେବ, ଯାହା ସ୍ୱତନ୍ତ୍ର ଭାବରେ ବ୍ରିଟିଶ ସହିତ ସଂଯୁକ୍ତ ହୋଇ ରହିବ । କେମ୍ବ୍ରିଜ୍‌ରେ ଏହି ପ୍ରସ୍ତାବ ଜନ୍ମ ନେଇଥିଲା । ଏହି ପ୍ରସ୍ତାବର ପ୍ରବକ୍ତାମାନେ ଭାବନ୍ତି ଯେ, ଗୋଲ୍ ଟେବୁଲ୍ ବୈଠକରେ ଅଂଶ ଗ୍ରହଣ କରଥିବା ଆମପର ମୁସଲମାନମାନେ ହିନ୍ଦୁ ବେଦୀରେ ବା ତଥାକଥିତ ଜାତୀୟତା ବେଦୀରେ ଇସ୍‌ଲାମ୍ ଜାତିକୁ ବଳି ପକାଇ ଦେଇଛନ୍ତି ।"

### ଚୌଧୁରୀ ରହେମତ୍ ଅଲ୍ଲିଙ୍କ ପ୍ରସ୍ତାବ

ଏକଥା ପ୍ରାଞ୍ଜଳ ଯେ ଇକ୍‌ବାଲ୍ ଏଠାରେ ଚୌଧୁରୀ ରହେମତ୍ ଅଲ୍ଲୀଙ୍କୁ ନର୍ଦ୍ଦେଶିତ କରୁଛନ୍ତି ଯେ, ୧୯୩୫ରେ "ପାକସ୍ଥାନ—ପବିତ୍ର ଜାତିର ଭୂମି" (Pakistan : The fatherland of the Pak Nation) ନାମକ ବହି ଲେଖିଥିଲେ । ଏହା ବାସ୍ତବରେ ଥିଲା ରାଜନୈତିକ ଉଚ୍ଛୃଙ୍ଖଳତା ପ୍ରସୂତ ଏକ ଉଦ୍‌ଭଟ କଳ୍ପନା । ଏଥିରେ ପାକସ୍ଥାନ, ବଙ୍ଗିସ୍ଥାନ, ଉସ୍‌ମାନସ୍ଥାନ, ସିଦ୍ଦିକସ୍ଥାନ, ଫାରୁକସ୍ଥାନ,

ହାଏଦରସ୍ଥାନ, ବେଲୁଚସ୍ଥାନ, ସଫିସ୍ଥାନ ଏବଂ ନସରସ୍ଥାନ ଗଠନ ପ୍ରସଙ୍ଗ ଉଲ୍ଲେଖ କରାଯାଇଥିଲା । ଭାରତ ବର୍ଷର ନିକଟବର୍ତ୍ତୀ ଅନେକ ସାଗର ଓ ଦ୍ୱୀପର ମଧ୍ୟ ସେ ନୂଆ ନାମକରଣ କରି ଦେଇଥିଲେ । ଯଥା :—ହସ୍ମାନିଆ ସାଗର, ସଫିଆନ୍ ସାଗର, ମପ୍ଲିଆ ସାଗର, ଆଲମ୍ ଦ୍ୱୀପ ଓ ଅମିନ୍ ଦ୍ୱୀପ ଇତ୍ୟାଦି । ସେତେବେଳେ ମହମ୍ମଦ ଅଲ୍ଲି ଜିନ୍ନାହ ମଧ୍ୟ ରହେମତ୍ ଅଲ୍ଲିଙ୍କ ଏହି ପାକିସ୍ଥାନ ପ୍ରସ୍ତାବକୁ Walt Disney ଙ୍କ Dream Land ଓ H. G. Wellsଙ୍କ ଦୁଃସ୍ୱପ୍ନ କହି କଟୁ ସମାଲୋଚନା କରିଥିଲେ ।

**ଡଃ ଜାଭେଦ୍ ଇକ୍‌ବାଲ୍‌ଙ୍କ ସହ ପତ୍ରାଳାପ**

ଏହି ବକ୍ତୃତାର ପ୍ରଥମ ସଂସ୍କରଣ ପଞ୍ଜାବ ମୁଖ୍ୟ ବିଶ୍ୱବିଦ୍ୟାଳୟ, ଲାହୋରର ମୁଖ୍ୟ ବିଚାରପତି ତଥା ଡ଼ଃ ଇକ୍‌ବାଲ୍‌ଙ୍କ ପୁତ୍ର ଡଃ ଜାଭେଦ୍ ଇକ୍‌ବାଲ୍‌ଙ୍କ ପାଖକୁ ପ୍ରେରିତ କରାଯାଇଥିଲା । ଏ ବିଷୟରେ ସେ ଏକ ସ୍ପଷ୍ଟୀକରଣ ଦେଇଥିଲେ । ଯାହାର ଉତ୍ତର ମଧ୍ୟ ତାଙ୍କୁ ପ୍ରେରିତ କରାଯାଇଥିଲା । ଏହି ଦୁହିଁର ବିଶ୍ଳେଷଣ ପାଇଁ ତାଙ୍କର ପତ୍ର ଓ ମୋର ଉତ୍ତର ବେଶ୍ ଗୁରୁତ୍ୱପୂର୍ଣ୍ଣ ହୋଇଥିବାରୁ ମୁଁ ସେ ଦୁଇଟି ପତ୍ର ନିମ୍ନରେ ପ୍ରଦାନ କରୁଛି ।

ଡ଼ଃ ଯାଭେଦ୍ ଇକ୍‌ବାଲ୍ — ମୁଖ୍ୟ ବିଶ୍ୱବିଦ୍ୟାଳୟ ।
ମୁଖ୍ୟ ବିଚାରପତି, ପଞ୍ଜାବ — ଲାହୋର
୧୯ ଫେବୃୟାରୀ ୧୯୮୫

ପ୍ରିୟ ସୟଦ ମୁଜଫର୍ ହୋସେନ୍ ବର୍ଣ୍ଣି ସାହେବ,

ଆପଣ ନିଜ ବକ୍ତୃତା,"ଇକ୍‌ବାଲ୍ ଓ ଜାତୀୟ ସଂହତିର ଏକ କିତା ନକଲ" ପ୍ରେରଣ କରିଥିବାରୁ ମୁଁ ଆପଣଙ୍କୁ ଧନ୍ୟବାଦ ଜଣାଉଅଛି । ମମ୍‌ନୁନ୍ ହସନ୍ ଖାଁ ସାହେବଙ୍କ ପତ୍ର ସହ ଆପଣଙ୍କ ବକ୍ତୃତାଟି ମୋର ହସ୍ତଗତ ହୋଇଛି । ଗତକାଲି ମୋତେ ସାକ୍ଷାତ କରିବା ପାଇଁ ଆସିଥିବା ଅଲ୍ ସର୍ଦ୍ଦାର ଜାଫରୀ ସାହେବ ମୋ ହସ୍ତରେ ସେଗୁଡ଼ିକ ଅର୍ପଣ କରିଥିଲେ । ଆମ୍ବାଲରେ ପ୍ରତିବର୍ଷ ଇଣ୍ଡୋ-ପାକ୍ କବି-ସମ୍ମିଳନୀ (ମୁଶାଏରା)ର ଆୟୋଜନ କରୁଥିବା ମିଃ ମାଲ୍‌ହୋତ୍ରା ଏଥି ପୂର୍ବରୁ ଏହି ବକ୍ତୃତାର ଏକ କିତା ନକଲ ଓ ଏହାର ଉର୍ଦ୍ଦୁ ଅନୁବାଦ ମୋତେ ଦେଇଥିଲେ । ମୁଁ ଗଭୀର ଆଗ୍ରହର ସହିତ ଆପଣଙ୍କ ବକ୍ତୃତାଟି ପାଠ କଲି । ପୃ ୪୬ରେ ଆପଣ ଲେଖିଛନ୍ତି ଯେ, ମହମ୍ମଦ ଅଲ୍ଲି ଜିନ୍ନା ମଧ୍ୟ ରହେମତ୍ ଅଲ୍ଲିଙ୍କ ପାକିସ୍ଥାନ ଗଠନ କଳ୍ପନାକୁ Walt Disneyଙ୍କ Dream Land· Wellsଙ୍କ Nightmare କହି ଓଡ଼ି

ସମାଲୋଚନା କରିଥିଲେ । ରହେମତ୍ ଅଲ୍ଲିଙ୍କ କଳ୍ପନା ଥିଲା ଭାରତକୁ ୯ଣ୍ଡ ବିଖଣ୍ଡିତ କରିବା । ମୁସଲମାନ ବହୁଳ ରାଷ୍ଟ୍ରଗୁଡ଼ିକୁ ଏକତ୍ର କରି ଏକ ସ୍ୱତନ୍ତ୍ର ମୁସଲମାନ ରାଷ୍ଟ୍ରସଂଘ ଗଢ଼ିବାର ତାଙ୍କ ଉଦ୍ଦେଶ୍ୟ ନ ଥିଲା । ତେଣୁ ଅନେକ ମୁସଲମାନ ନେତାମଧ୍ୟ ତାଙ୍କ ପାକିସ୍ଥାନ ଗଠନ କଳ୍ପନାର ତୀବ୍ରବିରୋଧ କରିଥିଲେ । ଏଥିରେ ଡଃ ଇକ୍‌ବାଲ୍ ମଧ୍ୟ ସମ୍ପୃକ୍ତ ଥିଲେ । କେଉଁଠାରେ ମହମ୍ମଦ ଅଲି ଜିନ୍ନା, ରହେମତ୍ ଅଲ୍ଲିଙ୍କ ପାକିସ୍ଥାନ କଳ୍ପନାର ବିରୋଧ କରିଛନ୍ତି । ତାର ଦୃଷ୍ଟାନ୍ତ ଆପଣ ଦେଇ ନାହାନ୍ତି । ଆଲୋଚ୍ୟ ପୁସ୍ତକର କେଉଁ ସ୍ଥାନରେ ଜିନ୍ନା ରହେମତ୍ ଅଲ୍ଲିଙ୍କ ପାକିସ୍ଥାନ କଳ୍ପନାକୁ Walt Disneyଙ୍କ Dream Land ବା Wellsଙ୍କ Nightmare ବୋଲି କହିଛନ୍ତି ତାର ପ୍ରସଙ୍ଗଟି ମୋତେ ପ୍ରେରିତ କଲେ ଆହ୍ଲାଦିତ ହେବି । ରହେମତ୍ ଅଲ୍ଲିଙ୍କ ପାକିସ୍ଥାନ କଳ୍ପନା ବିରୁଦ୍ଧରେ ଜିନ୍ନାଙ୍କ ଦ୍ୱାରା ବ୍ୟବହୃତ ଏହି ଶବ୍ଦାବଳୀ ଅବଶ୍ୟ ମୋର ଦୃଷ୍ଟି ଗୋଚର ହୋଇନାହିଁ ।

ଆଶାକରେ ଆପଣ କୁଶଳରେ ଥିବେ । ଆପଣଙ୍କ ଉତ୍ତର ପ୍ରତୀକ୍ଷାରେ—

ସମ୍ମାନ ସହ,

ଆପଣଙ୍କର

ସ୍ୱାକ୍ଷର—ଜାଭେ଼ଦ୍ ଇକ୍‌ବଲ୍

ପ୍ରାପ୍ତେଷୁ :—

ମାନ୍ୟବର ସୟଦ ମୁଜଫଫ୍‌ର ହୋସେନ୍ ବର୍ଣ୍ଣି,

ହରିଆନା ରାଜ୍ୟପାଳ,

ହରିଆନା ରାଜଭବନ,

ଚଣ୍ଡୀଗଡ,

ଭାରତ ।

ସୟଦ ମୁଜଫଫ୍‌ର ହୋସେନ୍ ବର୍ଣ୍ଣିଙ୍କ ପତ୍ର ନିମ୍ନରେ ପ୍ରଦତ୍ତ ।

ଏସ୍. ଏମ୍. ଏଚ୍. ବର୍ଣ୍ଣି — ୨୫ ମାର୍ଚ୍ଚ, ୧୯୮୫

ରାଜ୍ୟପାଳ, ହରିଆନା

ଚଣ୍ଡୀଗଡ

ପ୍ରିୟ ଡଃ ଜାଭେ଼ଦ୍ ଇକ୍‌ବାଲ,

ଆପଣଙ୍କ ୧୯ ଫେବ୍ରୁଆରୀ ୧୯୮୫ର ପତ୍ରପାଇଁ ଧନ୍ୟବାଦ । ମୁଁ ଏକଥା ଜାଣି ଖୁସି ହେଲି ଯେ, ଆପଣ ମୋର 'ଇକ୍‌ବାଲ ଓ ଜାତୀୟ ସଂହତି" ନାମକ ବକ୍ତୃତାଟି ଆଗ୍ରହର ସହ ପାଠ କରିଛନ୍ତି ।

ଆପଣଙ୍କ ପତ୍ରରେଥିବା, ରହେମତ୍ ଅଲ୍ଲିଙ୍କ ପାକିସ୍ଥାନ ପରିକଳ୍ପନାକୁ ମହମ୍ମଦ ଅଲ୍ଲି ଜିନ୍ନାଙ୍କ ସମାଲୋଚନାର ପ୍ରଭାବ ସମ୍ପର୍କରେ ମୁଁ "Witness to an Era" by Frank Moraes (Published by Vikas Publishing House, Bombay and printed in Great Britain in the year 1973) ପୁସ୍ତକର ପୃ ୮୦ ପ୍ରତି ଆପଣଙ୍କ ଦୃଷ୍ଟି ଆକର୍ଷଣ କରୁଛି । ପ୍ରସଙ୍ଗଟି ନିମ୍ନରେ ଲିପିବଦ୍ଧ କରୁଛି :—

"ମୁଁ ଯେତେବେଳେ ରହେମତ୍ ଅଲ୍ଲିଙ୍କ କଥା ଉତ୍ଥାପନ କରୁଥିଲି, ସେତେବେଳେ ଜିନ୍ନାଙ୍କ ଭ୍ରୂକୁଞ୍ଚନ ହେଉଥିଲା । ସେ ରହେମତ୍ ଅଲ୍ଲିଙ୍କ ପାକିସ୍ଥାନ କଳ୍ପନାକୁ Wells ଙ୍କ Nightmare ନହେଲେ ବି Walt Disney ଙ୍କ Dream Land ବୋଲି ଭାବୁଥିଲେ । ମୋ ମତରେ, Trump କାର୍ଡ ନଥାଇ ଗୋଟିଏ ଅନଭ୍ୟସ୍ତ ଖେଳାଳୀ show କରିଦେଲେ, ପୋଖତ ଖେଳାଳୀ ଯେପରି ବିରକ୍ତ ହୁଏ, ରହେମତ୍ ଅଲ୍ଲିଙ୍କ ପ୍ରତି ଜିନ୍ନାଙ୍କ ବିରକ୍ତି ସେହିପରି ଥିଲା ।"

ଏହି ବହିଟି ହାସଲ କରିବା ଆପଣଙ୍କ ପକ୍ଷରେ ଅସୁବିଧା ହୋଇପାରେ ଭାବି ୭୯-୮୦ ପୃଷ୍ଠାର ଉଦ୍ଧୃତାଂଶ ମୋ ଚିଠି ସହିତ ସଂଶ୍ଳିଷ୍ଟ କଲି । କହିବା ବାହୁଲ୍ୟ Frank Moraes ଅବସରକୁ ଭାରତର ଏକ ମୁଖ୍ୟ ଇଂରାଜୀ ଦୈନିକର ସମ୍ପାଦକ ଓ ଏକ ପ୍ରଖ୍ୟାତ ସାମ୍ବାଦିକ ଥିଲେ । ନିଜ ବୃତ୍ତି ପ୍ରତି ଗଭୀର ନିଷ୍ଠା ଓ ଦାୟିତ୍ୱବୋଧ ପାଇଁ ସେ ସମ୍ମାନିତ । ତେଣୁ ତାଙ୍କର ଉକ୍ତି ଅବିଶ୍ୱାସର ଊର୍ଦ୍ଧ୍ୱରେ ।

ଆପଣଙ୍କ ଇଙ୍ଗିତ ପାଇଁ ମୁଁ ଆପଣଙ୍କୁ ଧନ୍ୟବାଦ ଜଣାଉଛି । ଟୀକାରେ ପ୍ରଭବ ବିଷୟଟି ଲିପିବଦ୍ଧ କରିବା ମୋ ପକ୍ଷରେ ଉଚିତ ହୋଇଥାନ୍ତା । ନିକଟ ଭବିଷ୍ୟତରେ ପ୍ରକାଶ ପାଉଥିବା ନୂତନ ସଂସ୍କରଣରେ ମୁଁ ଉପଯୁକ୍ତ ପ୍ରସଙ୍ଗଟି ଲିପିବଦ୍ଧ କରିଦେବି ।

ଆଶା, ଆପଣ କୁଶଳରେ ଥିବେ ।

ସମ୍ମାନ ସହ,

ସ୍ୱାକ୍ଷର—ସୟଦ୍ ମୁଜଫଫ୍‌ର ହୋସେନ୍ ବର୍ମି

ପ୍ରେରକ:—

ଡ଼ଃ ଜାଓ୍ୱେଦ୍‌ ଇକ୍‌ବାଲ
ମୁଖ୍ୟ ବିଚାରପତି, ପଞ୍ଜାବ

ମୁଖ୍ୟ ବିଚାରାଳୟ,
ଲାହୋର
୭ ଏପ୍ରିଲ ୧୯୮୫

ପ୍ରିୟ ବର୍ମ୍ମି ସାହେବ,

ଆପଣଙ୍କ ପ୍ରେରିତ ୨୫ ମାର୍ଚ୍ଚ ୧୯୮୫ର ପତ୍ରପାଇଁ ଧନ୍ୟବାଦ । Frank Moraes ଙ୍କ ବହି "Witness to an Era"ର ଉଦ୍ଧୃତାଂଶ ପାଇଁ ମଧ୍ୟ ଧନ୍ୟବାଦ ।

ମୁଁ ନିକଟରେ ଇକ୍‌ବାଲ୍‌ଙ୍କ ଜୀବନୀ ଉର୍ଦ୍ଦୁରେ ତିନୋଟି ଗ୍ରନ୍ଥରେ ସମ୍ପୂର୍ଣ୍ଣ କରିଛି । ଆପଣ ଭାରତରେ ଏହାକୁ ଦେଖି ନଥିଲେ, ମୁଁ ଗ୍ରନ୍ଥ ତିନୋଟିର ଏକ ସେଟ୍‌ ଆପଣଙ୍କ ନିକଟକୁ ପ୍ରେରଣ କରିବି ।

ସମ୍ମାନ ସହ,
ଆପଣଙ୍କର,
ସ୍ୱାକ୍ଷର—ଜାଓ୍ୱେଦ୍‌ ଇକ୍‌ବାଲ୍‌

## ଜିନ୍ନା ଓ ପାକିସ୍ତାନ ସଂପର୍କରେ ନୂତନ ଗବେଷଣା

ଏହି ପରିପ୍ରେକ୍ଷୀରେ କ୍ୟାମ୍ବ୍ରିଜ୍‌ ବିଶ୍ୱବିଦ୍ୟାଳୟ ଅଧୀନସ୍ଥ ଟ୍ରିନିଟି କଲେଜର ସଦସ୍ୟା ପାକିସ୍ଥାନୀ ତରୁଣୀ ଆଏସା ଜଲାଲ୍‌ଙ୍କ ପୁସ୍ତକଟି ଉଲ୍ଲେଖଯୋଗ୍ୟ । ତାଙ୍କର ଏହି ପୁସ୍ତକ (*) "The Sole Spokesman" କ୍ୟାମ୍ବ୍ରିଜ୍‌ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ଦକ୍ଷିଣ ଏସିଆ ପାଠ୍ୟ ସିରିଜ୍‌ରେ ପ୍ରକାଶିତ । ଏଥିରେ ସେ ଉଲ୍ଲେଖ କରିଛନ୍ତି ଯେ, ଜିନ୍ନାଙ୍କ ନିଜ ଇଚ୍ଛା ବିରୋଧରେ ଯେତେବେଳେ କୀଟଦ୍ରଷ୍ଟା ଓ ବିକଳାଙ୍ଗ ଅବସ୍ଥାରେ ପାକିସ୍ଥାନ ଗଠିତ ହେଲା, ସେତେବେଳେ ସେ ଖୁବ୍‌ ବ୍ୟଥିତ ହୋଇଥିଲେ । କିନ୍ତୁ ସେତେବେଳେ ଜିନ୍ନା ଖୁବ୍‌ କିଛି ଅଗ୍ରସର ହୋଇ ଯାଇଥିଲେ ଏବଂ ତାଙ୍କର ସମର୍ଥକ ଓ ସହକାରୀ ସେନାନୀ ମଧ୍ୟ ତାଙ୍କର ପଶ୍ଚାଦ୍‌ଗମନକୁ ଅନୁମୋଦନ କରି ନ ଥାନ୍ତେ । ଏଥିରୁ ଅନୁମିତ ହୁଏ ଯେ, ସେ ଯେଉଁ ଗର୍ତ୍ତ ଖନନ କରୁଥିଲେ, ନିଜେ ସେଥିରେ ପତିତ ହେଲେ ।

---

* Dr. Rafiq Zakaria's article published in the Sunday Review of the Times of India of Sept. 22, 1985 under the column "Jinnah did not want Pakistan."

**କଲକତାର ରଗିବ୍ ଅହେସନ୍‌ଙ୍କ ସହ ପତ୍ରାଳାପ**

୭ ମାର୍ଚ୍ଚ ୧୯୩୪ରେ କଲିକତାର ରଗିବ୍ ଅହେସନ୍‌ଙ୍କ ପାଖକୁ ଏକ ପତ୍ରରେ ଇକ୍‌ବାଲ୍ ଲେଖିଥିଲେ :—

ଏହି ପତ୍ର ସହିତ ଇଂଲଣ୍ଡର ଏଡ୍‌ଓ୍ୱାର୍ଡ ଥମ୍ପସନ୍‌ଙ୍କର ମୋ ପୁସ୍ତକ ଉପରେ ସମୀକ୍ଷାର ଦୁଇକତା ନକଲ ପଠାଇଲି । ଏହି ସମୀକ୍ଷାଟି ବଡ଼ ଚମତ୍କାର । ହୁଏତ ଆପଣ ଏହାକୁ ନିଜ ପତ୍ରିକାର ପୃଷ୍ଠାରେ ପ୍ରକାଶ କରି ପାରନ୍ତି । ଦୟାକରି ୨ୟ ନକଲଟି କଲିକତାର "Star of India" ପତ୍ରିକାକୁ ପ୍ରେରଣ କରିଦେବେ ।

ଦୟାକରି ଲକ୍ଷ୍ୟ ରଖିବେ ଯେ, ଏହି ସମାଲୋଚକ ମୋର କଳ୍ପନାକୁ "ପାକିସ୍ଥାନ ଗଠନର କଳ୍ପନା" ସହିତ ମିଶାଇ ଦେଇଛନ୍ତି । ମୁଁ ଭାରତୀୟ ରାଷ୍ଟ୍ର-ସଂଘରେ ଏକ ମୁସ୍‌ଲିମ୍ ପ୍ରଦେଶ ଗଠନର ପକ୍ଷପାତୀ । କିନ୍ତୁ 'ପାକିସ୍ଥାନ କଳ୍ପନା'ରେ ଉତ୍ତର-ପଶ୍ଚିମ ଭାରତର ମୁସ୍‌ଲିମ୍ ପ୍ରଦେଶଗୁଡ଼ିକର ଏକ ସ୍ୱତନ୍ତ୍ର ରାଷ୍ଟ୍ରସଂଘ କଥା କୁହାଯାଇଛି । ଏହା ଭାରତରୁ ସ୍ୱତନ୍ତ୍ର ହେବ ଏବଂ ଏହାର ସଂପର୍କ ସ୍ୱାଧୀନ ଭାବରେ ଇଂଲଣ୍ଡ ସହ ରହିବ ।

ନିଜର ପ୍ରାରମ୍ଭିକ ସମୀକ୍ଷାରେ ଏକଥା ଉଲ୍ଲେଖ କରିବାକୁ ଭୁଲିବେ ନାହିଁ ଏବଂ Star of India ପତ୍ରିକାର ସମ୍ପାଦକଙ୍କ ଦୃଷ୍ଟି ଏ ଦିଗରେ ଆକର୍ଷଣ କରିବେ ।

ରଗିବ୍ ଆହେସନ୍ ସେ ସମୟରେ ଜଣେ ପ୍ରତିଷ୍ଠିତ ବ୍ୟକ୍ତି । ସେ "All India Muslim Youth League," "Calcutta Mulism League," ଏବଂ "The All India Jamiat a-Ulma-e Islam"ର ପ୍ରତିଷ୍ଠାତା ଥିଲେ । ଏହି ପତ୍ରଟି ପାକିସ୍ଥାନରୁ ସଦ୍ୟ ପ୍ରକାଶିତ ପୁସ୍ତକ "Iqbal-Jahan-e Digar"ରେ ସନ୍ନିବେଶିତ ।

**ଜବାହରଲାଲ ନେହରୁଙ୍କ ମନ୍ତବ୍ୟ :**

ଏଠାରେ ଏକଥା ଉଲ୍ଲେଖ କରିବା କୌତୁହଳପ୍ରଦ ହେବ ଯେ, ଜବାହରଲାଲ ନେହେରୁ ମଧ୍ୟ ଇକ୍‌ବାଲ୍‌ଙ୍କ ପାକିସ୍ଥାନ ଗଠନର ପ୍ରବର୍ତ୍ତକ ଥିବାର ସାଧାରଣ ଭୁଲ ଧାରଣାକୁ ପ୍ରତ୍ୟାଖ୍ୟାନ କରିଥିଲେ । ଏକଥା ତାଙ୍କର ❋ "Discovery of India"ରେ ଉଲ୍ଲିଖିତ । ସେ କହନ୍ତି ଯେ." ପ୍ରଥମେ ପ୍ରଥମେ ଇକ୍‌ବାଲ୍ ପାକିସ୍ଥାନ ଗଠନର ପକ୍ଷପାତୀମାନଙ୍କ ମଧ୍ୟରୁ ଅନ୍ୟତମ ଥିଲେ ତଥାପି ସେ. ଏଥିରେ

❋ 4th Edition, London, 1956 (Page 354-355)

ଥିବା ବିପଦ ଓ ଅସଂଗଗିକୁ ଉପଲବ୍ଧି କରିଥିଲେ । ଏଡ୍‌ଓ୍ୱାର୍ଡ ଥମ୍ପସନ୍ (Edward Thompson) ଲେଖିଛନ୍ତି ଯେ ଥରେ ଇକ୍‌ବାଲ୍ ତାଙ୍କୁ କହିଥିଲେ ଯେ, ମୁସ୍‌ଲିମ୍ ଲିଗ୍‌ର ସଭାପତି ଦାୟିତ୍ୱରେ ଥିବାରୁ ତାଙ୍କୁ ବାଧ୍ୟ ହୋଇ ପାକିସ୍ଥାନ ଗଠନ କଥା କହିବାକୁ ପଡୁଛି । କିନ୍ତୁ ସେ ଉପଲବ୍ଧି କରିଥିଲେ ଯେ, ଏହା ଭାରତ ପକ୍ଷରେ ବିଶେଷ କରି ମୁସଲମାନମାନଙ୍କ ପକ୍ଷରେ କ୍ଷତିକାରକ ହେବ । ବୋଧହୁଏ ସେ ନିଜର ଭାବନାକୁ ପରିବର୍ତ୍ତନ କରି ଦେଇଥିଲେ କିମ୍ବା ଏ ବିଷୟଟି ସେତେବେଳେ ସେତେ ଗୁରୁତ୍ୱପୂର୍ଣ୍ଣ ନ ଥିବାରୁ ଏଥି ପ୍ରତି ବିଶେଷ ଧ୍ୟାନ ଦେଇ ନ ଥିଲେ । ଭାରତ ବିଭାଜନ ବା ପରବର୍ତ୍ତୀ ଘଟଣାବଳୀ ସହିତ ତାଙ୍କର ସମଗ୍ର ଜୀବନ ଧାରଣର କୌଣସି ସାମଞ୍ଜସ୍ୟ ନାହିଁ । ମୃତ୍ୟୁର କିଛି ମାସ ପୂର୍ବରୁ ସେ ମୋତେ ତାଙ୍କ ନିକଟକୁ ଆମନ୍ତ୍ରଣ କରିଥିଲେ । ତାଙ୍କ ସହିତ ମୋର ଅନେକ ସମସ୍ୟା ବିଷୟରେ ଆଲୋଚନା ହେଲା । ଆଲୋଚନା ମାଧ୍ୟମରେ ମୁଁ ଜାଣି ପାରିଲି ଯେ, ପ୍ରଭେଦ ସତ୍ତ୍ୱେ ଆମର ଅନେକ ଭାବନା ଏକାକାର ଥିଲା, ଅନେକ ସମସ୍ୟାଗୁଡ଼ିକ ସମ୍ପର୍କରେ ତାଙ୍କ ସହିତ ଆଲୋଚନା କରିବା ସହଜ ଥିଲା । ସେ କିଛି ମନେ ପକାଇବା ପାଇଁ ଚେଷ୍ଟା କରୁଥିଲେ । ଗୋଟିଏ ପ୍ରସଙ୍ଗରୁ ଅନ୍ୟ ପ୍ରସଙ୍ଗ ଆଡ଼କୁ ସେ ଚାଲି ଯାଉଥିଲେ । ମୁଁ ଖୁବ୍ କମ୍ କହୁଥିଲି ଓ ତାଙ୍କ କଥା ବେଶୀ ଶୁଣୁଥିଲି । ମୁଁ ତାଙ୍କର ତଥା ତାଙ୍କ କବିତାର ପ୍ରଶଂସା ଗାନ କଲି । ଏକଥା ଜାଣି ମୁଁ ଖୁବ୍ ଖୁସି ହେଲି ଯେ, ସେ ମୋତେ ପସନ୍ଦ କରୁଥିଲେ ଏବଂ ମୋ ସମ୍ପର୍କରେ ତାଙ୍କର ଧାରଣା ଖୁବ୍ ଭଲ ଥିଲା । ମୋର ବିଦାୟ ନେବାର କିଛିକ୍ଷଣ ପୂର୍ବରୁ ସେ ମୋତେ କହିଲେ, "ଆପଣ ଓ ଜିନ୍ନାଙ୍କ ମଧ୍ୟରେ କେଉଁ କଥାଟି ସାଧାରଣ ହୋଇପାରେ ? ସେ ଜଣେ ରାଜନୀତିଜ୍ଞ ଓ ଆପଣ ଜଣେ ଦେଶପ୍ରେମୀ ।"

### ଡଃ ତାରାଚନ୍ଦଙ୍କ ମନ୍ତବ୍ୟ

ଏହି ପରିପ୍ରେକ୍ଷୀରେ ଡଃ ତାରାଚନ୍ଦଙ୍କ ମନ୍ତବ୍ୟ ମଧ୍ୟ ପ୍ରଣିଧାନ ଯୋଗ୍ୟ । "ଏହି ଆଶଙ୍କା ଓ ସନ୍ଦେହ ଦୂର କରିବା ପାଇଁ ସେ ତାଙ୍କ ଯୋଜନାକୁ ପରିଷ୍କାର ରୂପେ ବର୍ଣ୍ଣନା କରି ଦେଇଥିଲେ । ତାଙ୍କର ଯୋଜନାଟି ଭାରତକୁ ଦୁଇଟି ସ୍ୱତନ୍ତ୍ର ଦେଶରେ ବିଭକ୍ତ କରିବା ନ ଥିଲା । ସେ କେବଳ ରାଜ୍ୟଗୁଡ଼ିକର ଅର୍ଥାତ୍ ମୁସ୍‌ଲିମ୍ ବହୁଳ ଅଞ୍ଚଳର ପୁନର୍ବଣ୍ଟନ ଚାହୁଁଥିଲେ । ସେ ଭାବୁଥିଲେ ପଞ୍ଜାବ, ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶ, ସିନ୍ଧୁ ଏବଂ ବେଲୁଚିସ୍ଥାନକୁ ମିଶାଇ ଏକ ସ୍ୱତନ୍ତ୍ର ପ୍ରଦେଶ କରିଦେଲେ ଭାରତର ସମସ୍ୟା ଦୂରହେବ । ଏହା ମୁସଲମାନମାନଙ୍କର ଦାୟିତ୍ୱବୋଧ ଓ ଦେଶ-ପ୍ରେମକୁ ବୃଦ୍ଧିକରିବ । ଭାରତ ମଧ୍ୟରେ ଥାଇ ଉନ୍ନତିର ପୂର୍ଣ୍ଣ ସୁଯୋଗ ପାଇଲେ ଉତ୍ତର-ପଶ୍ଚିମର ଭାରତୀୟ ମୁସଲମ୍‌ମାନେ ବାହ୍ୟ ଶତ୍ରୁ ଆକ୍ରମଣର ପ୍ରକୃଷ୍ଟ ରକ୍ଷାକାରୀ ହେବେ ।" ଏହି ଆକ୍ରମଣ ରୁଷିଆର ହେଉ ବା ଫରାସୀର ହେଉ ସେଥିରେ କିଛି

ଯାଏ ଆସେ ନାହିଁ । ତାଙ୍କର ଉଦ୍ଦେଶ୍ୟ ଥିଲା "ଏକ-ଅବିଭେଦ୍ୟ ଜାତି" ବା "ଅବିଭାଜ୍ୟ ଜାତି" ଗଠନ କରିବା ।

ଦୁଇ-ଜାତି ଧାରଣା ବା ହିନ୍ଦୁ-ମୁସଲମାନ ସମ୍ପ୍ରୀତିର ଅସାମଞ୍ଜସ୍ୟ କଥା, କେଉଁଠାରେ ଉଲ୍ଲେଖ ନାହିଁ । ସେମାନଙ୍କ ମଧ୍ୟରେ ବିଭେଦ ସ୍ଥୂଳ ଓ ସାମ୍ପ୍ରଦାୟିକ କାରଣ ଯଥା: – ପରସ୍ପର ଉଦ୍ଦେଶ୍ୟ ବୁଝିବାରେ ଭୁଲ ବୁଝାମଣା, ଆଧିପତ୍ୟର ଭୟ ଏବଂ ଅଧିକାର ଓ ସୁବିଧା ପ୍ରତି ହିଂସା ଆଚରଣ ଉପରେ ପର୍ଯ୍ୟବେସିତ ।

କେ. କେ. ଅଜିଜ୍‌ଙ୍କ ପୁସ୍ତକ "The Making of Pakistan"ର ନିମ୍ନଲିଖିତ ଉଦ୍ଧୃତାଂଶରୁ ମଧ୍ୟ ଏ କଥାର ପ୍ରମାଣ ମିଳେ । ※

"ଏ କଥା ମନେ ରଖିବାକୁ ହେବ ଯେ, ଇକ୍‌ବାଲ୍ ଏକ ମୁସ୍‌ଲିମ୍ ରାଷ୍ଟ୍ର ପାଇଁ ତର୍କ କରୁ ନ ଥିଲେ । ସେ ଭାରତୀୟ ରାଷ୍ଟ୍ର ସଙ୍ଘ ମଧ୍ୟରେ ଏକ ମୁସ୍‌ଲିମ୍ ଅଞ୍ଚଳର ପକ୍ଷପାତୀ ଥିଲେ । ଅଧିକନ୍ତୁ ବଙ୍ଗଳା ଓ ଆସାମ (ପୂର୍ବ ପାକିସ୍ଥାନ) ତାଙ୍କ ଯୋଜନା ମଧ୍ୟରେ ନ ଥିଲା । ତାଙ୍କ ପରି କବିଙ୍କୁ ପାକିସ୍ଥାନ ଗଠନର ବା ଭାରତ ବିଭାଜନର ପ୍ରବର୍ତ୍ତକ ବୋଲି କହିବା ଏକ ବିରାଟ ଭ୍ରମ । ସେ କେବେହେଲେ ଭାରତ ବିଭାଜନ କଥା କହି ନାହାନ୍ତି । ପ୍ରକ୍ଷେପିତ ହିନ୍ଦୁ କେନ୍ଦ୍ରରୁ ଅଧିକ ସୁବିଧା ସୁଯୋଗ ପାଇବା ଆଶାରେ ଉତ୍ତର-ପଶ୍ଚିମାଞ୍ଚଳରେ ମୁସ୍‌ଲିମ୍ ପ୍ରଦେଶଗୁଡ଼ିକ ଏକତ୍ରିତ କରିବା ଥିଲା ତାଙ୍କ ମହତ୍ତ୍ୱ ଉଦ୍ଦେଶ୍ୟ । ଇକ୍‌ବାଲ୍‌ଙ୍କୁ ପାକିସ୍ଥାନର ଜନକ କହିବା ହେଉଛି ପାକିସ୍ଥାନୀ ଜାତୀୟତାର କଳ୍ପନା ମଧ୍ୟରୁ ଅନ୍ୟତମ ।

ମାର୍ଚ୍ଚ ୧୯୩୨ରେ ଲାହୋରଠାରେ ତାଙ୍କର ସଭାପତି ଅଭିଭାଷଣରେ ସେ ସ୍ୱୟଂ-ଶାସିତ ଉତ୍ତର-ପଶ୍ଚିମ ଅଞ୍ଚଳର ଯୋଜନା କଥା ମଧ୍ୟ କହି ନ ଥିଲେ । ସେ ପ୍ରକୃତରେ ଯାହା କହିଥିଲେ, ନିମ୍ନରେ ତାହା ପ୍ରଦତ୍ତ । ※ ※

"ଏ କଥା ପରିଷ୍କାର ଯେ, ମୌଳିକ ନୀତି ସ୍ୱରୂପ, ମୁସଲମାନ ସମ୍ପ୍ରଦାୟକୁ ସଂଖ୍ୟା ଗରିଷ୍ଠତାର ସ୍ୱୀକୃତି ନ ଦେଲେ, କୌଣସି ସ୍ଥାୟୀ ବା ଅସ୍ଥାୟୀ ସାମ୍ପ୍ରଦାୟିକ

---

※ 1. K. K. Aziz—The Making of Pakistan—A study in Nationalism, Chatto and Windus, London (1967) Page—54

※ ※ 2. The History of Freedom movement in India : Tarachand, Vol III, Page—252-253.

ବ୍ୟବସ୍ଥା ମୁସ୍‌ଲିମ୍‌ ସମ୍ପ୍ରଦାୟକୁ ସନ୍ତୁଷ୍ଟ କରି ପାରିବ ନାହିଁ । ପୃଥକ୍ ନିର୍ବାଚନ ମଣ୍ଡଳୀ ଏବଂ ସୀମାନ୍ତ ପ୍ରଦେଶର ମର୍ଯ୍ୟାଦା କଥା ନିର୍ଦ୍ଦିଷ୍ଟ କରି ସମ୍ପୂର୍ଣ୍ଣ ପ୍ରାଦେଶିକ ସ୍ୱତନ୍ତ୍ରତା, ପାର୍ଲିଆମେଣ୍ଟରୁ ଭାରତୀୟ ପ୍ରଦେଶ ହାତକୁ କ୍ଷମତା ହସ୍ତାନ୍ତର, ସଂଘୀୟ ଏକକ (Federal Units) ଗୁଡ଼ିକର ସମାନତା, ପ୍ରସଙ୍ଗର ଶ୍ରେଣୀ-ବିଭାଗ :—ସଂଘୀୟ, କେନ୍ଦ୍ରୀୟ ଏବଂ ପ୍ରାଦେଶିକ ଭିତ୍ତିରେ ନୁହେଁ ବରଂ କେବଳ ସଂଘୀୟ ଓ ପ୍ରାଦେଶିକ ଭିତ୍ତିରେ, ପଞ୍ଜାବ ଓ ବଙ୍ଗଳାରେ ମୁଖ୍ୟ ଅଧିକାର, ବିନା ସର୍ତ୍ତରେ ସିନ୍ଧୁ ବିଚ୍ଛେଦ ଏବଂ କେନ୍ଦ୍ରରେ ଏକ - ତୃତୀୟାଂଶ ଭାଗ ହେଉଛି ଆମ ଦାବୀର ମୁଖ୍ୟ ଉପାଦାନ ।

ଏହି ଦାବୀଗୁଡ଼ିକରେ ନିର୍ଦ୍ଦିଷ୍ଟ ରୂପେ ଦେଶକୁ ଦୁଇଭାଗ କରିବା କଥା ଉଲ୍ଲେଖ ନାହିଁ, ଇକ୍‌ବାଲ୍‌ଙ୍କ ମତରେ, ଦାବୀର ଯୁକ୍ତିଯୁକ୍ତତା ଧର୍ମଗତ ବିଭେଦ ନୁହେଁ, ବରଂ "ଭୟ ଓ ଘୃଣା" ଉପରେ ନିର୍ଭର କରୁଥିଲା ।

## ମହମ୍ମଦ ଅଲ୍ଲି ଜିନ୍ନାଙ୍କ ସହ ଇକ୍‌ବାଲ୍‌ଙ୍କ ପ୍ରତାଳାପ

ପ୍ରଫେସର ଆଲେ ଅହେମଦ୍ ସୋରୁର୍‌ଙ୍କ ମତରେ ୧୯୩୭ରେ ଇକ୍‌ବାଲ୍ ପାକିସ୍ଥାନ ବିଷୟରେ ତାଙ୍କର ମତ ପରିବର୍ତ୍ତନ କରି ଦେଇଥିଲେ । ୨୮ ମେ ୧୯୩୭ରେ ମହମ୍ମଦ ଅଲ୍ଲି ଜିନ୍ନାଙ୍କ ପାଖକୁ ଏକ ପତ୍ରରେ ସେ ଲେଖିଥିଲେ—ଭାରତରେ ମୁସଲମାନମାନଙ୍କ ସମସ୍ୟାର ସମାଧାନ ପାଇଁ ଦେଶରେ ପୁନର୍ବଣ୍ଟନ ଆବଶ୍ୟକ ଏବଂ ସମ୍ପୂର୍ଣ୍ଣ ସଂଖ୍ୟାଗରିଷ୍ଠତା ଭିତ୍ତିରେ ଗୋଟିଏ କିମ୍ବା ଦୁଇଟି ମୁସ୍‌ଲିମ୍ ପ୍ରଦେଶ ଗଠନ ଆବଶ୍ୟକ । ୨୧ ଜୁନ୍ ୧୯୩୭ରେ ଜିନ୍ନାଙ୍କୁ ଲିଖିତ ଏକ ପତ୍ରରେ ସେ ଆଉ ଏକ ପାଦ ଅଗ୍ରସର ହୋଇ ଲେଖିଛନ୍ତି, "ମୋର ଉପରୋକ୍ତ ପ୍ରସ୍ତାବ ଅନୁସାରେ ମୁସ୍‌ଲିମ୍ ପ୍ରଦେଶର ଏକ ସ୍ୱତନ୍ତ୍ର ରାଷ୍ଟ୍ରସଂଘ ଗଠନ ଦ୍ୱାରା ଭାରତରେ ଶାନ୍ତି ସମ୍ଭବ ହେବ ଏବଂ ଅଣମୁସଲିମ୍‌ମାନଙ୍କ ପ୍ରାଧାନ୍ୟରୁ ମୁସଲିମ୍‌ମାନେ ରକ୍ଷା ପାଇ ପାରିବେ । ଭାରତ ଓ ଭାରତ ବାହାରେ ଥିବା ଅନ୍ୟଜାତିମାନଙ୍କ ପରି ଉତ୍ତର-ପଶ୍ଚିମ ଭାରତ ଏବଂ ବଙ୍ଗଳାର ମୁସଲିମ୍‌ମାନଙ୍କୁ ସ୍ୱୟଂ ନିର୍ଦ୍ଧାରିତ ଜାତି ରୂପେ କାହିଁକି ଧରି ନ ଯିବ ? ପ୍ରଫେସର୍, ସୋରୁର୍ କହନ୍ତି ଯେ ପ୍ରଥମ ଥର ପାଇଁ ୧୯୩୭ରେ ତାଙ୍କ ମୃତ୍ୟୁର ଏକବର୍ଷ ପୂର୍ବରୁ ଇକ୍‌ବାଲ୍ ତାଙ୍କର ଏ ଚିଠିରେ ସ୍ୱତନ୍ତ୍ର ରାଷ୍ଟ୍ରସଂଘ କଥା କହିଛନ୍ତି ଏବଂ ଯଦିଓ ଇକ୍‌ବାଲ୍ ପାକିସ୍ଥାନ ଶବ୍ଦ ବ୍ୟବହାର କରିନାହାନ୍ତି, ସେ ଦୁଇଟି ସ୍ୱତନ୍ତ୍ର ମୁସଲିମ୍ ରାଜ୍ୟ ଗଠନ କଥା କହିଛନ୍ତି ! ଗୋଟିଏ ଉତ୍ତର-ପଶ୍ଚିମରେ ଏବଂ ଅନ୍ୟଟି ଉତ୍ତର-ପୂର୍ବରେ । ପ୍ରଫେସର୍ ଆଲେ ଅହେମଦ୍ ସୋରୁର୍ କହନ୍ତି ଯେ, ବୋଧହୁଏ Thompsonଙ୍କ ମନ୍ତବ୍ୟ ଶକ୍ତ ତାଙ୍କୁ ଠକାମିରେ ପକାଇଥିଲା ।

କିନ୍ତୁ ମୋ ମତରେ, ପ୍ରଫେସର୍ ସୋରୁର୍ଙ୍କର ଇକ୍‌ବାଲ୍‌ଙ୍କ ପତ୍ରର ବ୍ୟାଖ୍ୟା ଓ ପ୍ରସଙ୍ଗ ସହିତ ଇକ୍‌ବାଲ୍‌ଙ୍କ ଚିନ୍ତାଧାରା ଖାପ ଖାଉନାହିଁ । ଆମେ ଲକ୍ଷ୍ୟ କରୁଛୁ ଯେ ଇକ୍‌ବାଲ ଚୌଧୁରୀ ରହେମତ୍ ଅଲ୍ଲିଙ୍କ ପାକିସ୍ଥାନ ଗଠନ ଯୋଜନାକୁ ଭ୍ରୂକ୍ଷେପ କରି ନାହାନ୍ତି । ପାକିସ୍ଥାନର ପ୍ରବର୍ତ୍ତକ ବୋଲି କହି ଦେଇ ଥିବାରୁ ସେ Thompsonଙ୍କ ଭୁଲ୍ ଧାରଣାକୁ ପ୍ରତ୍ୟାଖ୍ୟାନ କରିଛନ୍ତି । ୨୧ ଜୁନ୍ ୧୯୩୭ରେ ଇକ୍‌ବାଲ୍ ଜିନ୍ନାଙ୍କୁ ଯେଉଁ ପତ୍ରଟି ଲେଖିଥିଲେ, ସେଇଟି ହିଁ ହେଉଛି ଅସଲ ଗୋଳିକ ଧନ୍ଦା । ଏଠାରେ ଲକ୍ଷ୍ୟ କରିବାର କଥା ଯେ, ଏ ପତ୍ରଟିରେ ମଧ୍ୟ ସେ ଭାରତୀୟ ରାଷ୍ଟ୍ରସଂଘ ମଧ୍ୟରେ ଉତ୍ତର-ପଶ୍ଚିମ ଭାରତ ଏବଂ ବଙ୍ଗଳାକୁ ସ୍ୱୟଂଶାସିତ ରାଜ୍ୟ ବା ରାଷ୍ଟ୍ରରୂପେ ଚିନ୍ତା କରିଛନ୍ତି । ନହେଲେ ସେ "ଭାରତରେ ଥିବା ଅନ୍ୟ ଜାତିଙ୍କ ପରି" କଥାଟି ବ୍ୟବହାର କରି ନ ଥାନ୍ତେ । ବର୍ତ୍ତମାନ ଲକ୍ଷ୍ୟ କରାଯାଉ, ଭାରତରେ ଅନ୍ୟ ଜାତି କହିଲେ କଣ ବୁଝାଏ ? ଆମ୍ଭ ମତରେ ସେ ଅନ୍ୟ ପ୍ରଦେଶକୁ "ଜାତି" ରୂପେ ବର୍ଣ୍ଣନା କରିଛନ୍ତି । ସଂକ୍ଷେପରେ କହିବାକୁ ଗଲେ, ଇକ୍‌ବାଲ୍ ତାହାହିଁ ଚାହୁଁଥିଲେ । ପରିଶେଷରେ କବିଙ୍କ ମୃତ୍ୟୁର ୨ ବର୍ଷପରେ ୧୯୪୦ରେ All-India Muslim League ଏକ ସ୍ୱତନ୍ତ୍ର ଦେଶ ପାକିସ୍ଥାନ ଗଠନ ପାଇଁ ଦାବୀ କରି ଏକ ସରକାରୀ ପ୍ରସ୍ତାବ ଗ୍ରହଣ କଲା । ଏହି କଥାଟିରୁ ସ୍ପଷ୍ଟ ଭାବରେ ପ୍ରମାଣିତ ହୁଏ ଯେ, ଇକ୍‌ବାଲ୍ ପାକିସ୍ଥାନ ଗଠନର ପ୍ରବର୍ତ୍ତକ ନ ଥିଲେ ।



# ଶେଷକଥା

ଯଦି Rudyard Kiplingଙ୍କ ମତ—"ପ୍ରାଚ୍ୟ—ପ୍ରାଚ୍ୟ ଅଟେ ଏବଂ ପାଶ୍ଚାତ୍ୟ—ପାଶ୍ଚାତ୍ୟ ଅଟେ, ଉଭୟେ କେବେହେଲେ ମିଳିତ ହୋଇ ନ ପାରନ୍ତି"—ଠିକ୍ ହୁଏ, ତା'ହେଲେ ଏ ତର୍କର କୌଣସି ଶେଷ ନିଷ୍ପତ୍ତି ହୋଇପାରିବ ନାହିଁ ଯେ ମାନବ ଜାତିର ଉନ୍ନତି ପାଇଁ ପ୍ରାଚ୍ୟର ଜାତୀୟତା ଏବଂ ଜାତୀୟ ସଂସ୍କୃତି ସମ୍ବନ୍ଧୀୟ ଧାରଣାଟି ବେଶୀ ଯୁକ୍ତିଯୁକ୍ତ ନା ଜାତିମାନଙ୍କର ଶାନ୍ତିପୂର୍ଣ୍ଣ ସହାବସ୍ଥାନ ଓ ଭୌତିକ ଉନ୍ନତି ପାଇଁ ପାଶ୍ଚାତ୍ୟ ଧାରଣାଟି ବେଶୀ ଫଳପ୍ରଦ ! ପ୍ରାଚ୍ୟରେ ମଧ୍ୟ ଭାରତୀୟ ସଭ୍ୟତାର ଏକ ସ୍ୱାତନ୍ତ୍ର୍ୟ ରହିଛି । ଭାରତବର୍ଷରେ ବିଭିନ୍ନ ସଭ୍ୟତା ଜନ୍ମ ନେଇଛି ଏବଂ ପାରସ୍ପରିକ କ୍ରିୟା, ପ୍ରତିକ୍ରିୟା ମାଧ୍ୟମରେ ଏପରି ଏକ ପରିବେଶ ସୃଷ୍ଟି ହୋଇଛି, ଯଦ୍ୱାରା କି ବିଭିନ୍ନତା ମଧ୍ୟରେ ଏକତା ସୃଷ୍ଟି ହୋଇଛି—ଏକଥା ସାରା ପୃଥିବୀରେ ଅଭୂତପୂର୍ବ । ଯେଉଁ ସଭ୍ୟତା, ଅନ୍ୟ ଚିନ୍ତାଧାରାକୁ ଉଚିତ ସମ୍ମାନ ଦେବା ସଙ୍ଗେ ସଙ୍ଗେ କୌଣସି ଗୋଟିଏ ସଭ୍ୟତାର ଅନ୍ୟ ସଭ୍ୟତା ଉପରେ ପ୍ରାଧାନ୍ୟକୁ ଅସ୍ୱୀକାର କରେ, ସେହି ସଭ୍ୟତା ହିଁ ହେଉଛି ଭାରତ ପାଇଁ ଉପଯୁକ୍ତ । ଆମର ସଭ୍ୟତା ପ୍ରାଧାନ୍ୟମୂଳକ ନୁହେଁ ବରଂ ଏହା ସହନଶୀଳତା, ସାଦୃଶ୍ୟ, ସମନ୍ୱୟ ଓ ଉନ୍ନତିର ପରିଚାୟକ । ତେଣୁ ଆମେ ଯେତେବେଳେ ଜାତୀୟ-ସଂହତି କଥା କହୁ, ତାହାର ଅର୍ଥ ନୁହେଁ ଯେ, ଆମେ ଭାରତର ଅନ୍ୟାନ୍ୟ ଜାତି ଓ ସଭ୍ୟତାକୁ ବାଦଦେଇ ତାକୁ ଗୋଟିଏ ଭାରତୀୟ ସଭ୍ୟତାରେ ସାମିଲ୍ କରିବୁ । ଏହା ଫଳରେ ଭାରତର ଜାତୀୟ ମୂଲ୍ୟବୋଧ ନଷ୍ଟ ହୋଇଯିବ ।

ଆମ ଦେଶର ବିଭିନ୍ନ ଅଞ୍ଚଳରେ ବିଭିନ୍ନ ସଂସ୍କୃତି ରହିଥିବା ସତ୍ତ୍ୱେ ବିଭିନ୍ନତା ମଧ୍ୟରେ ଏକତା ରହିଛି । ବିଭିନ୍ନ ଆଞ୍ଚଳିକ ସଂସ୍କୃତିର ସମନ୍ୱୟ ହିଁ ଭାରତକୁ ଏସିଆ ମହାଦେଶରେ ଏକ ଅନନ୍ୟ ଏବଂ ପ୍ରଧାନ ସ୍ଥାନ ପ୍ରଦାନ କରିଛି । ଆମର ଆଧ୍ୟାତ୍ମିକ ଉନ୍ନତି ଫଳରେ ଆମେ Welt Anschaung ଦର୍ଶନ ପ୍ରାପ୍ତ ହୋଇଛୁ । ସେଥିପାଇଁ ଭାରତର ଆଧ୍ୟାତ୍ମବାଦୀ ଓ ଗୁରୁ ଧର୍ମଗୁରୁମାନଙ୍କୁ ସମ୍ମାନ ପ୍ରଦର୍ଶନ କରିବା ତାଙ୍କର ବାଣୀ ଓ ଜୀବନଚରିତକୁ ହୃଦୟଙ୍ଗମ କରିବା ଆମ ପକ୍ଷରେ ଉଚିତ ହୋଇପଡ଼େ ।

ଓ୍ୱାଲି ଦକନୀଙ୍କ ପ୍ରାକ୍‌କାଳରୁ ଆରମ୍ଭ କରି ସାଂପ୍ରତିକ କାଳ ପର୍ଯ୍ୟନ୍ତ ଉର୍ଦ୍ଦୁ କବିତାରେ, ଇକ୍‌ବାଲଙ୍କ ବ୍ୟତୀତ ଅନ୍ୟ କେହି ଏହି ମୂଳନୀତି ପ୍ରତି ବିଶେଷ ଗୁରୁତ୍ୱ ଆରୋପ କରି ନାହାନ୍ତି । ଭାରତୀୟ ଜାତୀୟତାର ପରିବ୍ୟାପ୍ତ ଏକତାର ରହସ୍ୟ ସେ

ଉନ୍ମୋଚିତ କରିଛନ୍ତି । ତେଣୁ ସେ କେବଳ କାବ୍ୟିକ ସ୍ତରରେ ଭାରତୀୟ ସାଧୁ, ଧର୍ମ-ସଂସ୍କାରକ ଓ ଧର୍ମଗୁରୁଙ୍କ ପ୍ରତି ସମ୍ମାନ ପ୍ରଦର୍ଶନ କରନ୍ତି ନାହିଁ ବରଂ ଏଥିରେ ନିମ୍ନୋକ୍ତ-ମତେ ନିଗୂଢ଼ ତଥ୍ୟସମୂହ ଲୁକ୍‌କାୟିତ—

ସଭ୍ୟତାର ବିଭିନ୍ନ ମତବାଦ, ଏ ଦେଶରେ ପ୍ରସ୍ତାବିତ ହୋଇଛି, ଯଥା—(କ) ସାମାଜିକ ମତବାଦ, (ଖ) ଧର୍ମଗତ ମତବାଦ, (ଗ) ସ୍ୱଦେଶ ପ୍ରେମମୂଳକ ମତବାଦ, (ଘ) ଜାତୀୟତାମୂଳକ ମତବାଦ । ଏମାନଙ୍କ ମଧ୍ୟରୁ ପ୍ରତ୍ୟେକର ଗୁରୁତ୍ୱ ରହିଛି କିନ୍ତୁ ଲକ୍ଷ୍ୟ କରିବା କଥା, କେଉଁଟି ବେଶୀ ବାସ୍ତବ ଏବଂ ଐତିହାସିକ ଅଗ୍ରଗତି ଅନୁଯାୟୀ ଯୁକ୍ତିଯୁକ୍ତ । ଅନେକ କାଳ ଧରି ଭାରତବର୍ଷ ପାଶ୍ଚାତ୍ୟ ସାମ୍ରାଜ୍ୟବାଦୀ ଶକ୍ତିଦ୍ୱାରା ପରାଧୀନ ରହିଲା । ଭାରତୀୟମାନଙ୍କ ମଧ୍ୟରେ ଘୃଣା ଓ ବିଭେଦ ସୃଷ୍ଟି କରିବା ପାଇଁ ପାଶ୍ଚାତ୍ୟ ଶକ୍ତି ଜାତୀୟତାମୂଳକ ମତବାଦଟିକୁ ବେଶୀ ଅନୁକୂଳ ମନେକଲେ । ଏଥିରେ ଅନ୍ତର୍ନିହିତ ଆବିଳତାକୁ ଇକ୍‌ବାଲ୍ ଉତ୍ତମ ରୂପେ ହୃଦୟଙ୍ଗମ କରିଥିଲେ । ସେ କହିଥିଲେ ଯେ, ମାତୃଭୂମିକୁ ଏକ ପାଷାଣ ମୂର୍ତ୍ତିରେ ପରିଣତ କରି ଦିଆଯାଇଛି । ଏହାର ପରିଣାମ ଜାତୀୟତା ପାଇଁ ହଳାହଳ ସଦୃଶ ହେବ—

ଇନ୍‌ତାଜା ଖୁଦାଓଁ ମେଁ ବାଡ଼ା ସବ୍ ସେ ଓ୍ୱତନ୍ ହୈ
ଯୋ ପୈରହନ୍ ଇସ୍‌କା ହୈ ଓହ ମଜହବ୍ କା କଫନ୍ ହୈ

[ବିଭିନ୍ନ ମତବାଦରେ ମାତୃଭୂମି ପାଷାଣୀ ସାଜଇ—ମନେରଖ, ଦେଶ ଗରୀୟାନ୍
ଭିନ୍ନ ମତେ ଭିନ୍ନ ଖୋଳ, ବର୍ଣ୍ଣର ପୋଷାକ—ସେହି ହିଁ ତ ଧର୍ମର କଭନ]

ଇକ୍‌ବାଲ୍‌ଙ୍କ ଦେଶ ପ୍ରେମ ଓ ଜାତୀୟତାମୂଳକ ମତବାଦର ଭୁଲ ସମୀକ୍ଷା କରାଯାଇଛି । ଯାହା ଫଳରେ ତାଙ୍କର ଦେଶପ୍ରେମ ବିଷୟରେ ଭ୍ରମ ଧାରଣା ସୃଷ୍ଟି ହୋଇଛି । ଏକଥା ଏଠାରେ ପ୍ରଣିଧାନ ଯୋଗ୍ୟ ଯେ, "ଦେଶ ପ୍ରେମ" ଓ "ଦେଶପୂଜା"—ଦୁଇଟି ଭିନ୍ନ ଜିନିଷ । ଇକ୍‌ବାଲ୍ ମାତୃଭୂମିକୁ ଏକ ପାଷାଣମୂର୍ତ୍ତି ମନେ କରନ୍ତି ନାହିଁ । ଏହି ଦୃଷ୍ଟିରୁ ଦେଖିବାକୁ ଗଲେ, ସେ ତାଙ୍କ ଦେଶର ସେବକ ନ ହୋଇପାରନ୍ତି କିନ୍ତୁ ତାଙ୍କର ଦେଶଭକ୍ତି, ସମସ୍ତେ ସମାଲୋଚନାର ଊର୍ଦ୍ଧ୍ୱରେ । ପାଶ୍ଚାତ୍ୟ ଶକ୍ତି ନିଜର ଔପନିବେଶବାଦର ସ୍ୱାର୍ଥରକ୍ଷା ପାଇଁ ପୃଥିବୀର ବିଭିନ୍ନ ସ୍ଥାନରେ ବିଭିନ୍ନ କୌଶଳ ଅବଲମ୍ବନ କଲେ, କିନ୍ତୁ ଆରବୀୟମାନଙ୍କୁ ଇସ୍‌ଲାମ୍‌ର ପତାକା ତଳେ ଏକତ୍ରିତ ହେବାର ସୁଯୋଗ ଦେଲେ ନାହିଁ । ଫଳସ୍ୱରୂପ ଆଜି ମଧ୍ୟ ଆରବୀୟମାନେ ଆରବର ଜାତୀୟତା ପାଇଁ ସାମ୍ରାଜ୍ୟବାଦୀ ଶକ୍ତି ବିରୁଦ୍ଧରେ ଯୁଦ୍ଧରତ ଏବଂ ଏହାର ଫଳାଫଳ ଅତି ଭୟଙ୍କର । ମିଶର୍ ଏବଂ ଇରାନ୍ ନିଜର ପୁରାତନ ସଭ୍ୟତାକୁ ନିଜ ଜାତୀୟତାର ପରିଚୟ ପାଇଁ ଭିତ୍ତିସ୍ୱରୂପ ଗ୍ରହଣ କଲେ ଏବଂ ସେମାନେ ଇସ୍‌ଲାମିକ୍

ଚନ୍ତାଧାରାରୁ ଦୂରେଇ ଯିବାକୁ ଲାଗିଲେ । ଏପରିକି ସେମାନେ ମିଶରର ଶାସକ (Pharaoh)ଙ୍କୁ ତାଙ୍କର ଆର ରୂପେ ଗ୍ରହଣ କଲେ ଏବଂ ଇରାନୀମାନେ ତାଙ୍କର ଜୀବନଧାରାର ପ୍ରତ୍ୟେକ ସ୍ତରରୁ ଆରବୀୟମାନଙ୍କର ପ୍ରଭାବକୁ ଦୂର କରିବାକୁ ଚେଷ୍ଟା କଲେ ।

ମିଶର ଓ ଇରାନଠାରୁ ଭାରତୀୟ ସଭ୍ୟତା କଥା ପୃଥକ୍ ଥିଲା । ଏଠାରେ ଜାତୀୟ-ସଂହତି "ବିଭେଦରେ ଏକତା" ମାଧ୍ୟମରେ ଆଧାରିତ ଥିଲା । ତେଣୁ ଆମ ଦେଶକୁ ଚିରକାଳ ପାଇଁ ପରାଧୀନ ରଖିବାର ହୀନ ଉଦ୍ଦେଶ୍ୟରେ ପାଶ୍ଚାତ୍ୟ ସାମ୍ରାଜ୍ୟବାଦୀ ଶକ୍ତି ଏଠାରେ ସଙ୍କୀର୍ଣ୍ଣ ଜାତୀୟତା ମୂଳକ ମତବାଦ ପ୍ରଚାର କରୁଥିଲେ । ଇକ୍‌ବାଲ୍ ଏହାର ବିରୁଦ୍ଧାଚରଣ କରିଥିବାରୁ ତାଙ୍କୁ ଦେଶଭକ୍ତ ନୁହନ୍ତି ବୋଲି ଦୋଷାରୋପ କରିବା ଉଚିତ୍ ନୁହେଁ । ପାଶ୍ଚାତ୍ୟ ସାମ୍ରାଜ୍ୟବାଦୀ ଶକ୍ତିର ମାନବ-ଜାତିକୁ କ୍ଷୁଦ୍ର କ୍ଷୁଦ୍ର ଜାତି-ଭିତ୍ତିକ ରାଜ୍ୟରେ ବିଭକ୍ତ କରିଦେବାର କଳଙ୍କିତ ଉଦ୍ଦେଶ୍ୟ ଯୋଗୁ, ଇକ୍‌ବାଲ୍ ଏହି ନୀତିର ବିରୁଦ୍ଧାଚରଣ କରିଥିଲେ । ସେ ଜାତି ଓ ଦେଶ ଭିତ୍ତିରେ ପ୍ରାଚ୍ୟକୁ ଖଣ୍ଡ ଖଣ୍ଡ କରିଦେବା ପାଇଁ ପାଶ୍ଚାତ୍ୟ ଶକ୍ତିମାନଙ୍କର ଜାତି-ଭିତ୍ତିକ ସାମ୍ରାଜ୍ୟବାଦୀ କୌଶଳକୁ ଭର୍ତ୍ସନା କରିଥିଲେ । ସୁତରାଂ, ସେହି ବ୍ୟକ୍ତି କିପରି ଭାରତ ବିଭାଜନ ଓ ବିଭାଜନକାରୀ ଆନ୍ଦୋଳନର ସମର୍ଥକ ହୋଇ ପାରନ୍ତି ? ପ୍ରାଚ୍ୟର ପରଂପରା ଅନୁଯାୟୀ ସେ ଭାରତର ଜାତୀୟ-ସଂହତିକୁ ଗୋଟିଏ ଚିନ୍ତାଧାରାର ଅନୁଗାମୀ ରୂପେ ଦେଖିବାକୁ ପ୍ରୟାସୀ ଥିଲେ । ସେ ଉତ୍ତମ ରୂପେ ହୃଦୟଙ୍ଗମ କରିଥିଲେ ଯେ ଆଜିକାଲିର ଅଧିକାଂଶ ଯୁଦ୍ଧ ଜାତୀୟତା ନାମରେ ସଂଘଟିତ ହେଉଛି ଏବଂ ଏହା ଦ୍ୱାରା ବେଶୀ କ୍ଷତି ହେଉଛି ପ୍ରାଚ୍ୟ ଭୂଖଣ୍ଡର ।

ଏଠାରେ ଏକ ମୌଳିକ ପ୍ରଶ୍ନ ବେଶ୍ ପ୍ରଣିଧାନଯୋଗ୍ୟ : ସଭ୍ୟତା ସଂପର୍କରେ ଇସ୍‌ଲାମ୍‌ର କଣ କୌଣସି ନିଜସ୍ୱ ମତବାଦ ଅଛି ? ଯେ କୌଣସି ସଭ୍ୟତାକୁ ଆମେ ଇସ୍‌ଲାମିକ୍ ସଭ୍ୟତା ବୋଲି କହି ପାରିବା କି ? ଏ ବିଷୟରେ ଅନେକ ତର୍କ-ବିତର୍କ ହୋଇସାରିଛି । ସାଂପ୍ରତିକ ଚିନ୍ତାଧାରା ଅନୁଯାୟୀ ଇସ୍‌ଲାମ୍‌ର ପରିସର ହେଉଛି ସଂପୂର୍ଣ୍ଣ ରୂପେ ବୌଦ୍ଧିକ ଓ ଆଧ୍ୟାତ୍ମିକ । ଏହାର ବାଣୀ ଓ ଶିକ୍ଷା ସମଗ୍ର ମାନବ ଜାତି ପାଇଁ ଉଦ୍ଦିଷ୍ଟ । ତେଣୁ, କୌଣସି ସୀମିତ ଭୌଗୋଳିକ ସଭ୍ୟତାକୁ ଏହା ଇସ୍‌ଲାମିକ୍ ସଭ୍ୟତା ବୋଲି କୁହାଯାଇ ନପାରେ । ଏ କଥାଟି ନିମ୍ନମତେ ଆହୁରି ପ୍ରାଞ୍ଜଳ କରାଯାଇପାରେ ଯେ, ମରକ୍‌କୋଠାରୁ ଇଣ୍ଡୋନେସିଆ ପର୍ଯ୍ୟନ୍ତ ଦେଶ ଗୁଡ଼ିକର ଧର୍ମ, ଇସ୍‌ଲାମ୍ ହୋଇଥିବା ସତ୍ତ୍ୱେ, ପ୍ରତ୍ୟେକ ଦେଶର ସ୍ୱତନ୍ତ୍ର ଐତିହାସିକ, ଭୌଗୋଳିକ, ସାଂସ୍କୃତିକ ଏବଂ ସାମାଜିକ ବୈଶିଷ୍ଟ୍ୟ ରହିଛି । ଇସ୍‌ଲାମ୍ ଜଗତରେ କୌଣସି ଏକ ସାଧାରଣ ସାଂସ୍କୃତିକ ମୂଲ୍ୟ ନାହିଁ । କେବଳ ଇସ୍‌ଲାମ୍‌ର ମୌଳିକ ନୀତିଦ୍ୱୟ ଆଧ୍ୟାତ୍ମିକ ଓ ବୌଦ୍ଧିକ କ୍ଷେତ୍ରରେ ସାଧାରଣ ଭଗବାନ ଏକ ଓ ଅଦ୍ୱିତୀୟ । ଏହି ଦୃଷ୍ଟିରେ ସାରା ପୃଥିବୀର ମୁସଲମାନ ମାନଙ୍କୁ ଭାଇ-ଭାଇ ବୋଲି କୁହାଯାଇପାରେ କିନ୍ତୁ ତାଙ୍କର ଜାତୀୟ

ପରିଚୟ ତାଙ୍କର ଇତିହାସ ଓ ଭୂଗୋଳ ଉପରେ ନିର୍ଭର କରିବ । ଉଦାହରଣ ସ୍ୱରୂପ, ଭାରତୀୟ ମୁସଲମାନମାନେ ଇସ୍‌ଲାମ୍‌ର ମୌଳିକ ନୀତିକୁ ଅନୁସରଣ କରିବା ସତ୍ତ୍ୱେ ସେମାନେ ଭାରତୀୟ ସଭ୍ୟତା ଓ ଜାତୀୟତାର ଅଙ୍ଗ ବିଶିଷ୍ଟ । ମୋ ମତରେ ଏହାହିଁ ହେଉଛି ଇକ୍‌ବାଲ୍‌ଙ୍କ "ଜାତୀୟତା" ଓ 'ଦେଶପ୍ରେମ" ଧାରଣାର ପ୍ରକୃଷ୍ଟ ବିଶ୍ଳେଷଣ । ଏ ପରିପ୍ରେକ୍ଷୀରେ ଗଗିବ୍ ଅହେମଦ୍ କହନ୍ତି* "ଇକ୍‌ବାଲ୍ ଜାତୀୟତା ଏବଂ ଇସ୍‌ଲାମିକ୍ ସଂଗଠନର ଭୌଗୋଳିକ ବିଭାଜନର ବିରୋଧୀ ଥିଲେ । ······ସେ ଜାତୀୟତାର ତୀବ୍ର ବିରୋଧୀ ଥିଲେ କିନ୍ତୁ ତାଙ୍କୁ ଦେଶପ୍ରେମର ବିରୋଧୀ ବୋଲି କହିବା ଭୁଲ୍ ହେବ ।

ଇସ୍‌ଲାମ୍‌ର ଭୌଗୋଳିକ ବିଭାଜନର ବିରୋଧୀ କିପରି ପାକିସ୍ଥାନର ଜନ୍ମଦାତା ହୋଇ ପାରନ୍ତି ? ପୂର୍ବବର୍ତ୍ତୀ ପୃଷ୍ଠାମାନଙ୍କରେ ଆଲୋଚ୍ୟ ବିଷୟଟିର ଏହା ହେଉଛି ସିଦ୍ଧାନ୍ତ । ମୋଟ୍ ଉପରେ କହିବାକୁ ଗଲେ, ଇଂରେଜମାନେ ଯେଉଁ ଜାତୀୟତା ଭିତ୍ତିରେ ପ୍ରାଚ୍ୟଭୂଖଣ୍ଡକୁ ଭାଗ ଭାଗ କରି ଘୃଣା ଓ ବିଭେଦ ସୃଷ୍ଟି କରିବାକୁ ଚାହୁଁଥିଲେ; ଇକ୍‌ବାଲ୍ ସେହି ମତବାଦର ବିରୋଧୀ ଥିଲେ । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ, ଇକ୍‌ବାଲ୍ ଭାରତର ସାର୍ବଭୌମତ୍ୱ ଓ ଜାତୀୟ ସଂହତିକୁ ଏହାର ଅମୂଲ୍ୟ ସମ୍ପଦ ରୂପେ ବିବେଚିତ କରୁଥିଲେ ।

ପାଶ୍ଚାତ୍ୟ ମତବାଦ ଆହୁରି ଏକ ଭ୍ରମ ଧାରଣା ସୃଷ୍ଟି କରିଛି । ସେମାନେ ଆଧ୍ୟାତ୍ମିକ ସଂସ୍କୃତିକୁ ସାମାଜିକ ସଂସ୍କୃତିଠାରୁ ଭିନ୍ନ ଦୃଷ୍ଟିରେ ଦେଖନ୍ତି । ଆଧ୍ୟାତ୍ମିକ ସଂସ୍କୃତି ଓ ଭୌତିକ ସଂସ୍କୃତି ମଧ୍ୟରେ ପ୍ରଭେଦ ରହିଛି । ଏହା ହିଁ ପ୍ରାଚ୍ୟ ଓ ପାଶ୍ଚାତ୍ୟ ମଧ୍ୟରେ ଥିବା ମୌଳିକ ପ୍ରଭେଦ । ଭୌତିକ ସଂସ୍କୃତି ବିତର୍କୀୟ (Dialectical) ଅଟେ । ଆଧ୍ୟାତ୍ମିକ ସଂସ୍କୃତି ଯଦିଓ ଅପରିବର୍ତ୍ତନୀୟ ନୁହେଁ, ତଥାପି ଏଥିରେ ବିତର୍କୀୟ ପରିବର୍ତ୍ତନ ଲକ୍ଷ୍ୟ କରାଯାଏ ନାହିଁ, ଯାହା ଗୋଟିଏ ଅବସ୍ଥାକୁ ଆଗ୍ରାହ୍ୟ କରି ଅନ୍ୟ ଅବସ୍ଥା ନ ଗ୍ରହଣ କରିନଏ । ଏହି ଆଧ୍ୟାତ୍ମିକତା ହେଉଛି ଭାରତୀୟ ସଭ୍ୟତାର ସତ୍ତ୍ୱ-ଗୁଣ ସୂଚକ ଚିହ୍ନ, ଯାହାର ପ୍ରବକ୍ତା ଥିଲେ ବୁଦ୍ଧ, ରାମ, କୃଷ୍ଣ, ଋଷି, ନାନକ ଏବଂ ଅନ୍ୟାନ୍ୟ ଧର୍ମାବତାର ଓ ମୁସଲମାନ ଫକିର ।

ଇକ୍‌ବାଲ୍‌ଙ୍କ ଅହଂ ଦର୍ଶନକୁ ବୁଝିବାକୁ ହେଲେ ଉପରୋକ୍ତ କଥା ପ୍ରତି ଆମକୁ ଦୃଷ୍ଟି ଦେବାକୁ ପଡ଼ିବ, କାରଣ ଅହଂ ହେଉଛି ଆମର ଆଧ୍ୟାତ୍ମିକ ସଂସ୍କୃତିର ଅଂଗ ବିଶେଷ ଏବଂ ଉଭୟେ ପରସ୍ପରର ଅନୁପୂରକ ଓ ପରିପୂରକ । ଇକ୍‌ବାଲ୍‌ଙ୍କ "ଅହଂ"ର ପୂର୍ବେ ଯେପରି ଯୁକ୍ତିସଂଗତ ଥିଲା, ଆଜି ମଧ୍ୟ ସେତିକି ମୂଲ୍ୟବାନ । ଅଧିକନ୍ତୁ ମାନବିକତା ପାଇଁ ତାଙ୍କର ପ୍ରଶସ୍ତ-ଦୃଷ୍ଟିଭଂଗୀ ଆମ ମନରେ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ମାନବ ପାଇଁ ଏକ ମହାନ ମର୍ଯ୍ୟାଦାବୋଧ ସୃଷ୍ଟି କରେ ।

---

* "Iqbal Muasareen ki Nazer Men" Page-92

ଭାରତର ପରାଧୀନତା ପାଇଁ ଇକ୍‌ବାଲ୍ ଗଭୀର ଭାବେ ବ୍ୟଥିତ ହୋଇଥିଲେ । ସେ କେବଳ ଭାରତର ସ୍ୱାଧୀନତା ପାଇଁ ବ୍ୟାକୁଳ ନଥିଲେ —ସେ ଚାହୁଁଥିଲେ ଯେ ପ୍ରାଚ୍ୟ ଭୂଖଣ୍ଡ ବିଶେଷତଃ ଭାରତ ଏହାର ପୂର୍ବ ଗୌରବ କଥା ସ୍ମରଣ କରୁ ଏବଂ ଏହାର ଚିନ୍ତା ଓ ଦର୍ଶନର ଐଶ୍ୱର୍ଯ୍ୟ ବଳରେ ସମଗ୍ର ମାନବ ଜାତିକୁ ପଥପ୍ରଦର୍ଶନ ଦେଉ । ତାଙ୍କର ପ୍ରବଳ ଆକାଂକ୍ଷା ଥିଲା ଭାରତବାସୀ ହୃଦୟଙ୍ଗମ କରନ୍ତୁ ଯେ— ଇଂରେଜମାନେ କେବଳ ପ୍ରତାରଣାମୂଳକ ଧ୍ୱନି ଦେଇ ତାଙ୍କୁ ବୋକା ବନାଇଛନ୍ତି ।

ଯେହେତୁ ଆମ ଦେଶରେ ବିଭିନ୍ନ ଜାତି, ଧର୍ମ ଓ ଭାଷାର ଲୋକ ବସବାସ କରନ୍ତି ତେଣୁ ପ୍ରତ୍ୟେକ ଧର୍ମ ଓ ଜାତିର ମୌଳିକ ନୀତିକୁ ବୁଝିବା ପାଇଁ ଇକ୍‌ବାଲ୍‌ଙ୍କ ଲେଖା ଆମକୁ ଶିକ୍ଷା ଯୋଗାଇଥାଏ । ଅନ୍ୟ ଧର୍ମର ମହାପୁରୁଷ ଏବଂ ବୀରମାନଙ୍କୁ ସମ୍ମାନ ପ୍ରଦର୍ଶନ କରିବା ଏବଂ ସେମାନଙ୍କ ସମ୍ବନ୍ଧରେ ଅମର କାହାଣୀ ଆହରଣ କରିବା ମଧ୍ୟ ଉଚିତ । ଜଣେ ନୈଷ୍ଠିକ ମୁସଲମାନ ହେବା ସତ୍ତ୍ୱେ ଇକ୍‌ବାଲ୍ ଭାରତୀୟ ଚିନ୍ତନ ଓ ଦର୍ଶନର ଅଧ୍ୟୟନ କରିଥିଲେ ଏବଂ ତାହାର ସଦ୍‌ଗୁଣ ଦ୍ୱାରା ନିଜକୁ ପ୍ରଭାବିତ କରିଥିଲେ । ଅତ୍ୟନ୍ତ ପରିତାପର ବିଷୟ ଏହିକି ଯେ, ଆଜି ମଧ୍ୟ ଗୋଟିଏ ଧର୍ମର ଲୋକେ ଅନ୍ୟ ଧର୍ମର ମୂଳ ନୀତି ବିଷୟରେ ଅଜ୍ଞ । ସମ୍ପୂର୍ଣ୍ଣ ରୂପେ ଧର୍ମକୁ ତ୍ୟାଗ କରିବା ଧର୍ମ ନିରପେକ୍ଷତାର ପ୍ରକୃତ ଅର୍ଥ ନୁହେଁ । ଧର୍ମ ନିରପେକ୍ଷତାର ପ୍ରକୃତ ଉଦ୍ଦେଶ୍ୟ ହେଉଛି—ଧର୍ମର ଦେଶ ବ୍ୟାପାରରେ କୌଣସି ହସ୍ତକ୍ଷେପ ନକରିବା, ତେଣୁ ଏକ ଧର୍ମ ନିରପେକ୍ଷ ଦେଶରେ ଆମ ପିଲାମାନଙ୍କୁ ବିଭିନ୍ନ ଧର୍ମର ମୂଳନୀତି ଶିକ୍ଷା ଦେବା ଦୋଷାବହ ନୁହେଁ ।

ଆଜି ଆମ ଦେଶ ଏକ ସଙ୍କଟ-ସନ୍ଧି ମୁହୂର୍ତ୍ତର ସମ୍ମୁଖୀନ । ବିଭାଜନକାରୀ ଶକ୍ତି ମୁଣ୍ଡ ଟେକିବାରେ ଲାଗିଛନ୍ତି । ସାମ୍ପ୍ରଦାୟିକ ଗଣ୍ଡଗୋଳ ପ୍ରାୟ ଲାଗି ରହିଛି । ଦେଶର ବିଭିନ୍ନ ପ୍ରାନ୍ତରେ ଆଞ୍ଚଳିକତାର ବହ୍ନି ଦାଉଦାଉ ହୋଇ ଜଳୁଛି । ବର୍ଣ୍ଣ-ସଂଘର୍ଷ ଅତି ସାଧାରଣ ଘଟଣା । ଦେଶ ମଧ୍ୟରେ ଘୃଣା ଓ ବିଭେଦ ସୃଷ୍ଟି ପାଇଁ ବାରମ୍ବାର ଭାଷା-ସମସ୍ୟା ଉତ୍ଥାପିତ ହେଉଛି । ଜାତି-ଧର୍ମ ଓ ବର୍ଣ୍ଣ ଭିତରେ ମୁଣ୍ଡ ଟେକୁଥିବା ଘୃଣ୍ୟ ସମସ୍ୟା ଗୁଡିକ ସ୍ଥିର ଚିତ୍ତରେ ସମାଧାନ କରାଯାଇପାରୁନାହିଁ । ତେଣୁ ବର୍ତ୍ତମାନ ଦେଶର ବିଭିନ୍ନ ଶ୍ରେଣୀ ଓ ଧର୍ମର ଲୋକଙ୍କ ମଧ୍ୟରେ ଶାନ୍ତି, ପ୍ରୀତି ଓ ସହନଶୀଳତାର ବାତାବରଣ ସୃଷ୍ଟି ହେବା ଉଚିତ । ଏହି ପରିପ୍ରେକ୍ଷୀରେ ଦେଶର ଏକତା ଓ ଜାତୀୟ-ସଂହତି ପାଇଁ ଇକ୍‌ବାଲ୍‌ଙ୍କ ଆହ୍ୱାନ ବେଶ୍ ଗୁରୁତ୍ୱପୂର୍ଣ୍ଣ । ଇକ୍‌ବାଲ୍‌ଙ୍କ ଇସ୍‌ଲାମିକ୍ ଚିନ୍ତା-ଧାରା ଏବଂ "ଅହଂର ଧାରଣା" ବିଷୟରେ ପ୍ରାଞ୍ଜଳ ଭାବରେ ମୁଁ ଅନ୍ୟ ଏକ ଭାଷଣରେ କହିଛି । ଏହା ଅତି ନିକଟରେ ପ୍ରକାଶିତ ହେବ ।

●

# ସମୀକ୍ଷା

(ପ୍ରଥମ ସଂସ୍କରଣ ଉପରେ ବିଭିନ୍ନ ସାହିତ୍ୟିକ ପତ୍ରିକାର ସମୀକ୍ଷାର ଉଦ୍ଧୃତାଂଶ)

**ସାପ୍ତାହିକ "ହମାରି ଜୁବାନ", ନୂଆଦିଲ୍ଲୀ (୧୫ ଜାନୁୟାରୀ, ୧୯୮୫)**

ଈର୍ଷା ଓ ପରଶ୍ରୀକାତରତାରୁ ଉର୍ଦ୍ଦୁରେ ରହି ଇକ୍‌ବାଲ୍‌ଙ୍କ କୃତି ଓ ଦର୍ଶନର ସମୀକ୍ଷା କରୁଥିବା ସମାଲୋଚକଙ୍କ ସଂଖ୍ୟା ଖୁବ୍ କମ୍। ଏହି ପୁସ୍ତକଟି ପାଠକର ଖୁସି ହେଲ ଯେ, ସୟଦ୍ ମୁଜଫ୍‌ଫର ହୁସେନ୍ ବର୍ଣ୍ଣି ଇକ୍‌ବାଲ୍‌ଙ୍କୁ ତାଙ୍କର କଳା ଓ କଳ୍ପନାର ଦର୍ପଣରେ ଅବଲୋକନ କରିବାର ସମୁଚିତ ଚେଷ୍ଟା କରିଛନ୍ତି।

ଏହି ପରିପ୍ରେକ୍ଷୀରେ ମୁଁ ମଧ୍ୟ ଗୋଟିଏ କଥା କହିବାକୁ ଚାହେଁ, ଏଦେଶରେ ସମ୍ବେଦନଶୀଳ ଏବଂ ସଚ୍ଚୋଟ ଦେଶଭକ୍ତଙ୍କ ଦ୍ୱାରା ଏପରି ଅନେକ ଐତିହାସିକ ଓ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ସମ୍ପାଦିତ ହୋଇଛି ଯାହା ସମ୍ପର୍କରେ ସାଧାରଣ ଲୋକେ ଅଜ୍ଞ। ବିହାରରେ ଉର୍ଦ୍ଦୁକୁ ଦ୍ୱିତୀୟ ସରକାରୀ ଭାଷାରେ ସମ୍ମାନ ଦିଆଗଲା। ଏ ସଂପର୍କରେ ପ୍ରକୃତ ଘଟଣାଟି ଯାହା ନାଲି ଫିତା ତଳେ ଚପିଯାଇଛି, ତାହା କୌଣସି ଉର୍ଦ୍ଦୁ ଲୋକଙ୍କୁ ଗୋଚର ନୁହେଁ। କଥାଟି ହେଉଛି--ବର୍ଣ୍ଣି ସାହେବ ଗୃହ ବିଭାଗର ସଚିବ ଥିବା ବେଳେ ଦିନେ ମୋତେ ଡାକରା ଆସିଲା। ଉର୍ଦ୍ଦୁ ସଂପର୍କରେ ଆଲୋଚନା ମାଧ୍ୟମରେ ସେ ପ୍ରକାଶ କଲେ ଯେ, ପ୍ରଧାନମନ୍ତ୍ରୀ ଶ୍ରୀମତୀ ଇନ୍ଦିରା ଗାନ୍ଧୀ ଉତ୍ତର ଭାରତର କେତେକ ପ୍ରଦେଶରେ ଉର୍ଦ୍ଦୁକୁ ୨ୟ ସରକାରୀ ଭାଷା କରିବାକୁ ଚାହାନ୍ତି। ମୁଁ ତୁରନ୍ତ ଉତ୍ତର ଦେଲି—ଏ ପରୀକ୍ଷା ନିରୀକ୍ଷା ବିହାରରୁ ଆରମ୍ଭ କରାଯାଇପାରେ। ବର୍ଣ୍ଣି ସାହେବ କହିଲେ ଯେ, ତାଙ୍କର ମଧ୍ୟ ସେଇଆ ଇଚ୍ଛା ଥିଲା। ଆପଣଙ୍କ ପ୍ରସ୍ତାବଟି ମଧ୍ୟ ମୋ କଳ୍ପନାରେ ଆଗରୁ ଉଙ୍କି ମାରି ଥିଲା। ସେଦିନ ମୁଲ୍ଲା ସାହେବଙ୍କ ସହ ମୋର କଥାବାର୍ତ୍ତା ହେଲା। ଆମେ ଦୁଇଜଣ ଏହି ସିଦ୍ଧାନ୍ତରେ ଉପନୀତ ହେଲୁ ଯେ, ବିହାରରୁ ଏହି ପ୍ରସ୍ତାବଟି କାର୍ଯ୍ୟକାରୀ ହେବା ଉଚିତ। ପରଦିନ ମୁଲ୍ଲା ସାହେବଙ୍କ ପରାମର୍ଶ କଥା ମୁଁ ବର୍ଣ୍ଣି ସାହେବଙ୍କୁ ଜଣାଇ ଦେଲି। ତିନିଦିନ ପରେ ବିହାରର ମୁଖ୍ୟମନ୍ତ୍ରୀ ପଣ୍ଡିତ ଜଗନ୍ନାଥ ମିଶ୍ର ତାଙ୍କ ମନ୍ତ୍ରୀମଣ୍ଡଳରେ ଉର୍ଦ୍ଦୁକୁ ୨ୟ ସରକାରୀ ଭାଷାରୂପେ ଗ୍ରହଣ କରିବାର ପ୍ରସ୍ତାବ ଦେଲେ ଏବଂ ତାହା ତୁରନ୍ତ ଅନୁମୋଦନ ଲାଭ କଲା।

କ୍ଷମା କରିବେ କି, ମୋର ଏ ଆଲୋଚନାଟି ଟିକେ ଦୀର୍ଘ ହୋଇଗଲା। କିନ୍ତୁ ଏ କଥା ଏଠି ଉଲ୍ଲେଖ କରି ନଥିଲେ, ଉର୍ଦ୍ଦୁ ପ୍ରତି ବର୍ଣ୍ଣି ସାହେବଙ୍କ ଅନୁକମ୍ପା କଥା ଲୋକ ଲୋଚନକୁ ଆସିପାରି ନଥାନ୍ତା।

"ତସ୍‌ନା-ଏ-ହନ୍ଦୀ"ଠାରୁ ଆରମ୍ଭ କରି "ତସ୍‌ନୀ ଏମିଲ୍ଲି" ପର୍ଯ୍ୟନ୍ତ ଇକ୍‌ବାଲ୍‌ଙ୍କର ମାନସିକ-ଯାତ୍ରା ବେଶ୍ ଗୁରୁତ୍ୱପୂର୍ଣ୍ଣ ଓ ଜଟିଳ । ଏଦ୍ୱାରା ସମୀକ୍ଷା କଲାବେଳେ, ଆମର ସମାଲୋଚକମାନେ ଇକ୍‌ବାଲ୍‌ଙ୍କୁ ନିଜ ଦର୍ପଣରେ ଦେଖିବାର ହିଁ ଚେଷ୍ଟା କରନ୍ତି । ଇଉରୋପ ରହଣି କାଳରେ ଇକ୍‌ବାଲ୍ ଖୁବ୍ ନିକଟରୁ ପର୍ଯ୍ୟବେକ୍ଷଣ କରିଥିଲେ ଯେ ଦେଶପ୍ରେମ ତରଂଗ କପରି ବୃଦ୍ଧି ପାଇ, ଯୁଦ୍ଧଖୋର ମନୋବୃତ୍ତି ଓ ଅତ୍ୟାଗ୍ରହରେ ପରିଣତ ହେଲା ଏବଂ କିଭଳି ଭାବେ ସ୍ୱାଧୀନ ଓ ଶକ୍ତିଶାଳୀ ସାମରିକ ରାଷ୍ଟ୍ର ଇଉରୋପରେ ମୁଣ୍ଡ ଟେକିଲେ ଏବଂ କ୍ଷୁଦ୍ର ଓ ଦୁର୍ବଳ ରାଷ୍ଟ୍ର ଗୁଡ଼ିକୁ ପରାଧୀନ କରିବାର ଅଦମ୍ୟ ପ୍ରତିଯୋଗିତା ଆରମ୍ଭ ହୋଇଥିଲା । ଏହି ପରିପ୍ରେକ୍ଷୀରେ Dr. Johnson କହି ପାରିଥାନ୍ତେ ଯେ—"ଦେଶ ପ୍ରେମ ହେଉଛି ଜଣେ ପାଜିର ଶେଷ ସମ୍ବଳ ।" ଏ ପ୍ରସଙ୍ଗରେ ଇକ୍‌ବାଲ୍ ନିମ୍ନୋକ୍ତ ଧାରଣା ମଧ୍ୟ ଭୁଲ୍ ନଥିଲା—

"ଇନ୍ ତାଜା ଖୁଦାଓଁ ମେଁ ବଡ଼ା ସବ୍ ସେ ଓ୍ୱତନ୍ ହୈ
ଯୋ ପୈରହନ୍ ଇସ୍‌କା ହୈ ଓହ ମଜହବ୍ କା କଫନ୍ ହୈ ।"

[ବିଭିନ୍ନ ମତବାଦରେ ମାତୃଭୂମି ପାଷାଣୀ ସାଜଇ—ମନେରଖ ଦେଶ ଉପାସ୍ଥାନ ଭିନ୍ନମତେ ଭିନ୍ନ ଖୋଳ, ବର୍ଣ୍ଣର ପୋଷାକ—ସେହି ହିଁ ତ ଧର୍ମର କଫନ୍]

ବର୍ଣ୍ଣି ସାହେବଙ୍କ ଧାରଣା ଠିକ୍ ଯେ, ଇକ୍‌ବାଲ୍ ଜାତୀୟତାର ବିଶ୍ୱାସକୁ ତ୍ୟାଗ କରିଥିଲେ, କିନ୍ତୁ ନିଜ ମାତୃଭୂମି ପାଇଁ ତାଙ୍କର ପ୍ରେମ ଆଦୌ ଊଣା ହୋଇ ନଥିଲା । ସେ ସ୍ୱଦେଶ—ପ୍ରେମର ବିରୋଧୀ ନଥିଲେ, ଯେଉଁ ସଙ୍କୀର୍ଣ୍ଣତା ଓ ପାଗଳାମି, ମନୁଷ୍ୟକୁ ଧ୍ୱଂସ ମୁଖକୁ ଠେଲିଦିଏ,—ସେ ତାର ବିରୋଧ କରୁଥିଲେ ।

ଏହି ପୁସ୍ତକଟି ହେଉଛି ପ୍ରକୃତରେ ସେହି ବକ୍ତୃତା, ଯାହା ବର୍ଣ୍ଣି ସାହେବ, ଭୋପାଲ ବିଶ୍ୱବିଦ୍ୟାଳୟରେ ୧୪ ଜାନୁୟାରୀ ୧୯୮୪ ଦିନ ପାଠ କରିଥିଲେ । ଏ ବକ୍ତୃତାଟି ଇଂରାଜୀରେ ଥିଲା । ଏବଂ ବର୍ଣ୍ଣି ସାହେବ ଉର୍ଦ୍ଦୁର ପ୍ରସିଦ୍ଧ ଗବେଷକ ଓ ସମାଲୋଚକ ଡଃ ନିଶାର୍ ଅହେମଦ୍ ଫାରୁକଙ୍କ ଦ୍ୱାରା ଏଦ୍ୱାରା ଉର୍ଦ୍ଦୁ ଅନୁବାଦ କରାଇଛନ୍ତି । ହରିଆଣା ସାହିତ୍ୟ ଏକାଡ଼େମୀ ଇକ୍‌ବାଲ୍‌ଙ୍କ ଉପରେ ଏହି ମୂଲ୍ୟବାନ ପୁସ୍ତକଟି ପ୍ରକାଶ କରିଥିବାରୁ ଆମ୍ଭେ ନିଜର କୃତଜ୍ଞତା ଜ୍ଞାପନ କରୁଛୁ ।

( ଡଃ ଖଲିକ୍ ଅଞ୍ଜୁମ୍ )

**ଆଜ୍‌କଲ୍ (ଉର୍ଦ୍ଦୁ), ନୂଆଦିଲ୍ଲୀ, ଫେବୃୟାରୀ ୧୯୮୫**

ଇକ୍‌ବାଲ୍‌ଙ୍କ ବିଷୟରେ ଏତେ ସବୁ ଲେଖାସରିଛି ଯେ, ତାଙ୍କ ବିଷୟରେ କିଛି ନୂଆ କଥା ଲେଖିବା ଅସମ୍ଭବ । ସୟଦ ମୁଜାଫର ହୁସେନ ବର୍ଣ୍ଣି ସାହେବ

ଏପରି ଏକ ଦିଗନ୍ତର ସନ୍ଧାନ ଦେଇଛନ୍ତି ଯାହା ଇକ୍‌ବାଲ୍‌ଙ୍କ ସାହିତ୍ୟ-ସମୀକ୍ଷା ଦିଗରେ ନୂତନ ପଦକ୍ଷେପ ନୁହେଁ ବରଂ ବର୍ତ୍ତମାନ ଦେଶରେ ମୁଣ୍ଡ ଟେକୁଥିବା ଜାତି, ଭାଷା ଓ ଆଞ୍ଚଳିକ ସ୍ତରରେ ବିବାଦର ସମାଧାନ ପାଇଁ ଉପଯୁକ୍ତ ଆହ୍ୱାନ ।

ଏହି ବକ୍ତୃତାରେ ଇକ୍‌ବାଲ୍‌ଙ୍କ କବିତାରେ ଥିବା ଦେଶପ୍ରେମ ଜାତୀୟ-ସଂହତି ଓ ଧର୍ମଗତ-ସମ୍ବେଦନଶୀଳତାକୁ ଉପଯୁକ୍ତ ଭାବେ ବିଶ୍ଳେଷଣ କରାଯାଇଛି । ଏହାର ଅଧ୍ୟୟନ ବେଶ୍ ଗୁରୁତ୍ୱପୂର୍ଣ୍ଣ କାରଣ, ରାଜନୈତିକ ଦୃଷ୍ଟି କୋଣରୁ ପରିବର୍ତ୍ତିତ, ଇକ୍‌ବାଲ୍‌ଙ୍କ ସମ୍ପର୍କରେ ଅନେକଙ୍କ ମଧ୍ୟରେ ସନ୍ଦେହ ଓ ଭ୍ରମ ଧାରଣା ସୃଷ୍ଟି କରିଛି ।

ଏହି ବକ୍ତୃତାର ଏକ ବିଶିଷ୍ଟ ଅଂଶ ହେଉଛି — ଇକ୍‌ବାଲ୍ ଓ ପାକିସ୍ଥାନ । କେତେକ କହନ୍ତି ଯେ, ଇକ୍‌ବାଲ୍, ପାକିସ୍ଥାନ ଜନ୍ମଦାତାଙ୍କ ଭିତରେ ଅନ୍ୟତମ । ବର୍ଣ୍ଣି ସାହେବ କେତେକ ପତ୍ର ମାଧ୍ୟମରେ ପ୍ରମାଣିତ କରିଛନ୍ତି ଯେ, ଇକ୍‌ବାଲ୍ ପାକିସ୍ଥାନର ସମର୍ଥକ ନଥିଲେ । ତାଙ୍କର ଇଚ୍ଛା ଥିଲା, ଭାରତୀୟ ରାଷ୍ଟ୍ର-ସଂଘରେ ଏକ ମୁସ୍‌ଲିମ୍ ବହୁଳ ପ୍ରଦେଶ ଗଠନ କରିବା । ସେ ବାରମ୍ବାର ନିଜର ଏହି ଦୃଷ୍ଟି ଭଙ୍ଗୀର ବ୍ୟାଖ୍ୟା କରିଛନ୍ତି, ଯେପରିକି ତାଙ୍କ ସମ୍ପର୍କରେ କୌଣସି ଭ୍ରମ ଧାରଣା ଜାତ ନହେଉ । ସ୍ୱୟଂ ପଣ୍ଡିତ ଜବାହାରଲାଲ ନେହେରୁ ମଧ୍ୟ ନିଜର ପୁସ୍ତକ "Discovery of India' ରେ ଏକଥା ଉଲ୍ଲେଖ କରିଛନ୍ତି ।

ମୁଜଫ୍‌ଫର ହୁସେନ୍ ବର୍ଣ୍ଣି ସାହେବ, ନିଜ ବକ୍ତୃତାରେ ଐତିହାସିକ ଓ ଗବେଷଣାତ୍ମକ ପ୍ରମାଣ ଦ୍ୱାରା ଏକଥା ସ୍ପଷ୍ଟ କରି ଦେଇଛନ୍ତି ଯେ ଜଣେ ନୈଷ୍ଠିକ ମୁସ୍‌ଲିମ୍ ହେବା ସତ୍ତ୍ୱେ ଇକ୍‌ବାଲ୍ ବିଭିନ୍ନ ଜାତି ଓ ସଂପ୍ରଦାୟ ମଧ୍ୟରେ ସଦ୍‌ଭାବ ଓ ସଂହତି ଚାହୁଁଥିଲେ । ସେ ଜାଣିଥିଲେ ଯେ, ପ୍ରେମ ଓ ଭ୍ରାତୃଭାବ ବ୍ୟତୀତ ଦେଶର ଉନ୍ନତି ଅସମ୍ଭବ । ତେଣୁ ଜାନୁୟାରୀ ୧୯୩୮ ରେ "ନବ ବର୍ଷର ଉଦ୍‌ବୋଧନ"ରେ ଇକ୍‌ବାଲ୍ କହିଥିଲେ—"ମାନବ କେବଳ ମାନବକୁ ଉପଯୁକ୍ତ ମର୍ଯ୍ୟାଦା ଦେଲେ, ଏ ପୃଥିବୀ ତିଷ୍ଠି ପାରିବ । ମୁଜଫ୍‌ଫର ହୁସେନ୍ ବର୍ଣ୍ଣି, ଇକ୍‌ବାଲ୍‌ଙ୍କ ଚିନ୍ତାରେ ଥିବା ଜାତୀୟ-ସାମ୍ପ୍ରଦାୟିକ ସଦ୍‌ଭାବ ଓ ସମ୍ବେଦନଶୀଳତାକୁ ଯେଉଁ ଶୈଳୀରେ ପ୍ରକାଶ କରିଛନ୍ତି, ସେଥିପାଇଁ ସେ ଧନ୍ୟବାଦାର୍ହ । ବର୍ଣ୍ଣି ସାହେବଙ୍କ ଏହି ବକ୍ତୃତାଟି ନିଶ୍ଚିତ ରୂପେ ଇକ୍‌ବାଲ୍‌ଙ୍କ ଅଧ୍ୟୟନ ପାଇଁ ଏକ ନୂତନ ଦିଗନ୍ତ ।

(ଡ଼କ୍ଟର ଶରିବ୍ ରଦୋଲଭି)

ରୋଜ୍‌ନାମା ସିଆସତ୍—ହାଇଦ୍ରାବାଦ (୩୧ ଡ଼ିସେମ୍ବର ୧୯୮୪)

"ଇକ୍‌ବାଲ୍ ଓ ଜାତୀୟ-ସଂହତି" ପୁସ୍ତକଟିରେ ପ୍ରାମାଣିକ ତଥ୍ୟ ଦ୍ୱାରା ଇକ୍‌ବାଲ୍‌ଙ୍କୁ ଏକ ଧର୍ମନିରପେକ୍ଷ କବି ହିସାବରେ ପ୍ରତିପାଦିତ କରାଯାଇଥିବାରୁ

ପୁସ୍ତକଟି ବେଶ୍ ଗୁରୁତ୍ୱପୂର୍ଣ୍ଣ । ସେ ଭାରତ ବିଭାଜନ ଓ ପାକିସ୍ଥାନ ଗଠନର ସମର୍ଥକ ନଥିଲେ । ହରିଆନାର ମାନ୍ୟବର ରାଜ୍ୟପାଳ ଶ୍ରୀଯୁକ୍ତ ମୁଜଫ୍‌ଫର ହୁସେନ ବର୍ଣ୍ଣି "ଇକ୍‌ବାଲ୍ ଓ ଜାଗ୍ନୟୁ ଫହ୍ଵତ" ପୁସ୍ତକଟିର ଲେଖକ । ବର୍ଣ୍ଣିସାହେବ ଏକ ରାଜନୀତିଜ୍ଞ ହେବା ସଙ୍ଗେ ସଙ୍ଗେ ଉଚ୍ଚକୋଟୀର ପଣ୍ଡିତ ଓ ସାହିତ୍ୟିକ । ତାଙ୍କର କାବ୍ୟିକ ପ୍ରତିଭା ବେଶ୍ ଉନ୍ନତ । ସେ ଖୁବ୍ ସୂକ୍ଷ୍ମ ଓ ତୀକ୍ଷ୍ଣ ଦୃଷ୍ଟିଭଙ୍ଗୀ ନେଇ, ଇକ୍‌ବାଲ୍‌ଙ୍କୁ ଅଧ୍ୟୟନ କରିଛନ୍ତି ।

ବର୍ଣ୍ଣି ସାହେବ ଇକ୍‌ବାଲ୍‌ଙ୍କ 'ଅହଂ ଦର୍ଶନ'କୁ ଏକ ନୂତନ ଶୈଳୀରେ ପ୍ରକାଶ କରିଛନ୍ତି । ସେ କହନ୍ତି । ଯେ, ଇକ୍‌ବାଲ୍‌ଙ୍କ ଏହି ଦର୍ଶନ ତତ୍କାଳୀନ ସାମାଜିକ, ରାଜନୈତିକ, ଅର୍ଥନୈତିକ ଓ ଆଧ୍ୟାତ୍ମିକ ପରିବେଶର ପରିପ୍ରେକ୍ଷୀ । ଏକ ପରାଧୀନ ଜାତି ପାଇଁ ଆତ୍ମ-ବିଶ୍ୱାସ, ଆତ୍ମ-ଅନ୍ୱେଷଣ ଓ ଆତ୍ମଗଠନ ଆଦି ଆହ୍ୱାନ ଠାରୁ ଅନ୍ୟ କିଛି ଏତେ ଫଳପ୍ରଦ ହୋଇପାରିନଥାନ୍ତା ।

ମୋ ମତରେ ଇକ୍‌ବାଲ୍‌ଙ୍କ ଏ 'ଅହଂ ଦର୍ଶନ' ଜଣେ ଭାବପ୍ରବଣ କବିର ନିଜ ଦେଶର ରାଜନୈତିକ ପରାଧୀନତାରୁ ଜନ୍ମ ଏକ ତୀବ୍ର ପ୍ରତିକ୍ରିୟା । ବର୍ଣ୍ଣି ସାହେବ ଇକ୍‌ବାଲ୍‌ଙ୍କ କବିତା ଓ ଦର୍ଶନର ଏକ ଗୁରୁତ୍ୱପୂର୍ଣ୍ଣ ବିଭବର ଉନ୍ମୋଚନ କରିଛନ୍ତି ।

ଇକ୍‌ବାଲ୍‌ଙ୍କୁ ଅଧ୍ୟୟନ କରିବା ପାଇଁ "କୌମି ଏକ୍ ଜହ୍ଵତି"ବେଶ୍ ଗୁରୁତ୍ୱ-ପୂର୍ଣ୍ଣ । ପ୍ରତ୍ୟେକ ସୁନ୍ଦର ପୁସ୍ତକ ପାଠକର ଅଧ୍ୟୟନ ପିପାସାକୁ ବୃଦ୍ଧିକରେ । ଏହି ପୁସ୍ତକଟି ଅଧ୍ୟୟନ କଲାପରେ ଇଚ୍ଛା ହୁଏ ଯେ, ବର୍ଣ୍ଣି ସାହେବ ଭବିଷ୍ୟତରେ ମଧ୍ୟ ଉର୍ଦ୍ଦୁ ପାଠକ ମାନଙ୍କର ସାହିତ୍ୟିକ ତୃଷ୍ଣା ନିବାରଣ ପାଇଁ ନିଜର ବଳିଷ୍ଠ ଲେଖନୀ ଚାଳନା କରୁଥିବେ ।

(ପ୍ରଫେସର୍ ମୁଗ୍‌ନ୍ନି ତବସ୍ସୁମ)

### ହଜରତ୍ ରେଜା କୌମି ଆଓ୍ୱାଜ୍‌ ନ୍ୟୁ ଦହ୍ଲି (୨୧ ଏପ୍ରିଲ୍ ୧୯୮୫)

ସୟଦ ମୁଜଫ୍‌ଫର ହୁସେନ ବର୍ଣ୍ଣି ଉର୍ଦ୍ଦୁ ଜଗତରେ ଓ ଭାରତ ବର୍ଷରେ ବେଶ୍ ସୁପରିଚିତ । "ଶାଶ୍ୱତ ଜୀବନ ପାଇଁ ଲେଖନୀ ଏକ ଅମୂଲ୍ୟ—ସମ୍ପଦ"—ଏକଥା ସେ କେବେହେଲେ ବିସ୍ମୃତ ହୋଇନାହାନ୍ତି । ସେଥିପାଇଁ ସେ ପ୍ରତ୍ୟେକ ସାହିତ୍ୟ ସଭା ଓ ସାହିତ୍ୟ ଆସରରେ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ। ନିଜର କାର୍ଯ୍ୟବ୍ୟସ୍ତତା ସତ୍ତ୍ୱେ ତାଙ୍କର ସାହିତ୍ୟିକ ଅଧ୍ୟବସାୟ ତାଙ୍କୁ ଜଣେ ଉଚ୍ଚକୋଟୀର ସାହିତ୍ୟିକ ଭାବରେ ପ୍ରମାଣିତ କରିବା ପାଇଁ ସମର୍ଥ ।

ଭାରତୀୟ ଓ ମାନବ-ପ୍ରେମରେ ତାଙ୍କର ଗଭୀର ବିଶ୍ୱାସ ନିହିତ । ତାଙ୍କର ମାନବ-ପ୍ରେମ ବିଶ୍ୱଜନ-ବିଦିତ । ସେ ଦେଶ ପ୍ରେମ ଓ ମାନବ-ପ୍ରେମରେ ନିବିଡ଼ ଆସ୍ଥା ସ୍ଥାପନ କରନ୍ତି । ଜଣେ ଦେଶଭକ୍ତ ହିସାବରେ, ମାନବୀକ ମୂଲ୍ୟବୋଧ ବ୍ୟାହତ ହୋଇଥିବାରୁ ସେ ମର୍ମାହତ । ତୀକ୍ଷ୍ଣଦୃଷ୍ଟି ସଂପନ୍ନ ବ୍ୟକ୍ତି ହୋଇଥିବାରୁ ଦେଶରେ ହିଂସା ଓ ଗଣ୍ଡଗୋଳ ଜନିତ ପରିସ୍ଥିତି ପାଇଁ ସେ କ୍ଷୁବ୍ଧ । ସେ ନିଜ ଦୂରଦୃଷ୍ଟି ଦ୍ୱାରା ଅନେକ ସମସ୍ୟାର କାରଣ ଉପଲବ୍ଧି କରିବାରେ ସେ ବେଶ୍ କ୍ଷମ । ତାଙ୍କର ସଦ୍ୟ ପ୍ରକାଶିତ ପୁସ୍ତକ "ଇକ୍‌ବାଲ୍ ଅଣ୍ଡର୍ କୌମି ଏକ୍ ଜହତି" ଏକଥା ପ୍ରମାଣରେ ଏକ ଜ୍ୱଳନ୍ତ ସ୍ୱାକ୍ଷର ।

ବର୍ତ୍ତିସାହେବ ବେଶ୍ ସମ୍ବେଦନ-ଶୀଳ । ବିଭିନ୍ନ ବିଚ୍ଛିନ୍ନତାବାଦୀ ଓ ବିଘ୍ନକାରୀ ଶକ୍ତିଙ୍କ କବଳରୁ ଦେଶକୁ ରକ୍ଷା କରିବା ତାଙ୍କର ଏକାନ୍ତ ଇଚ୍ଛା । ତେଣୁ ଏ ପୁସ୍ତକଟିର ପ୍ରାରମ୍ଭରେ ସେ ଏକଥା ପରିଷ୍କାର ଭାବରେ ବର୍ଣ୍ଣନା କରିଛନ୍ତି ।

ସେ ନିଜେ ମଧ୍ୟ "ପୂର୍ଣ୍ଣ ବିଶ୍ୱାସ, ନିୟତ କର୍ମ ଓ ବିଶ୍ୱ-ଜୟୀ ପ୍ରେମ" ଉପରେ ବିଶ୍ୱାସୀ । ତେଣୁ ସେ ଇକ୍‌ବାଲ୍‌ଙ୍କ କବିତାକୁ ଏତେ ନିବିଡ଼ ଭଲ ପାଇ ବସିଛନ୍ତି ।

ପୁସ୍ତକଟିର ଶେଷ ଭାଗରେ ବର୍ତ୍ତି ସାହେବ ପ୍ରମାଣିତ କରିଛନ୍ତି ଯେ, ଭାରତୀୟ ଚିନ୍ତାଧାରା ପାଇଁ ଶ୍ରେଷ୍ଠଦାନ ହେଉଛି ଇକ୍‌ବାଲ୍‌ଙ୍କ 'ଅହଂ-ଦର୍ଶନ' । ତାଙ୍କର ଏହି ଆହ୍ୱାନ ତାଙ୍କ ସମୟରେ ଯେତିକ ମୂଲ୍ୟବାନ ଥିଲା, ଆଜି ମଧ୍ୟ ସେତିକ ଉପଯୋଗୀ ।

ବିଜ୍ଞ ସାହିତ୍ୟିକ, ପୁସ୍ତକଟିକୁ ଶ୍ରୀମତୀ ଇନ୍ଦିରାଗାନ୍ଧୀଙ୍କ ପ୍ରତି ଉତ୍ସର୍ଗ କରି ଜାତୀୟ-ସଂହତି ଇତିହାସରେ ଏକ ନୂତନ, ଉଜ୍ଜ୍ୱଳ ଅଧ୍ୟାୟ ସୃଷ୍ଟି କରିଛନ୍ତି । କାରଣ ସାହିତ୍ୟିକଙ୍କ ଦୃଷ୍ଟିରେ ଶ୍ରୀମତୀ ଇନ୍ଦିରାଗାନ୍ଧୀ ଜାତୀୟ ସଂହତି ଓ ଦେଶର ଏକତା ପାଇଁ ଆତ୍ମାହୁତି ଦେଇଛନ୍ତି ।

ସଂକ୍ଷେପରେ କହିବାକୁ ଗଲେ, ଏହି ପୁସ୍ତକଟି ଇକ୍‌ବାଲ୍‌ଙ୍କ ଅଧ୍ୟୟନ ପାଇଁ ବେଶ୍ ମୂଲ୍ୟବାନ ଏବଂ ସାମ୍ପ୍ରତିକ କାଳର ଆବଶ୍ୟକତାକୁ ପୂର୍ଣ୍ଣ କରେ ।

ଐତିହାସିକ ଘଟଣା ବଳୀକୁ ତାର ଉପଯୁକ୍ତ ପୃଷ୍ଠଭୂମିରେ ବିଗ୍ଭର ନକରିବା ଦ୍ୱାରା ସମସ୍ତ ବିଭେଦର ସୂତ୍ରପାତ ହୁଏ । ଆଜିର ଏକମାତ୍ର ଆବଶ୍ୟକତା ହେଉଛି, ଐତିହାସିକ ତଥ୍ୟାବଳୀର ପୃଷ୍ଠଭୂମିକୁ ତର୍ଜମା କରି ପାଠ୍ୟ ପୁସ୍ତକ ପ୍ରଣୟନ କରିବା । ଏ ଦୃଷ୍ଟିରୁ ଦେଖିବାକୁ ଗଲେ ଆମର ଭବିଷ୍ୟତ ବଂଶଧରଙ୍କ ନିମନ୍ତେ ଉକ୍ତ ପୁସ୍ତକଟି ବେଶ୍ ଖୋରାକ ଯୋଗାଇବ ଓ ପଥ-ପ୍ରଦର୍ଶକ ହେବ ।

(ଆବଦୁଲ୍ ସିଦ୍ଦିକ୍)

## ମହାନାମା ସୁରେହଲ, ଗୟା

ଯଥେଷ୍ଟ ଶ୍ରମ ସ୍ୱୀକାର କରି ଉକ୍ତ ପୁସ୍ତକଟି ରଚନା କରାଯାଇଛି ଏବଂ ଲେଖକ ମହାଶୟ, ଏଥିରେ ଯଥେଷ୍ଟ ପ୍ରମାଣ ମଧ୍ୟ ସନ୍ନିବେଶିତ କରିଛନ୍ତି । ଜନାବ ବର୍ଣ୍ଣି ସାହେବ ବିଭିନ୍ନ ପାରିପାର୍ଶ୍ୱିକ ଘଟଣାବଳୀକୁ ନେଇ ନିଜର ମୂଳ ବିଷୟବସ୍ତୁକୁ ଉଚିତ ଭାବରେ ଉପସ୍ଥାପନ କରିଛନ୍ତି । ସେ ଇକ୍‌ବାଲ୍‌ଙ୍କ ଦର୍ଶନ-ତତ୍ତ୍ୱକୁ, କର୍ମ-ସାଧନା ମାଧ୍ୟମରେ ଦେଖିବାର ପ୍ରୟାସ କରିଛନ୍ତି ।

ଏହି ପୁସ୍ତକଟିରୁ ଇକ୍‌ବାଲ୍‌ଙ୍କ ଜୀବନ-ଦର୍ଶନର ସମ୍ୟକ୍ ଧାରଣା ମିଳେ, ଯାହା ଆମ ଜାତୀୟ-ଜୀବନ ଗଠନର ସହାୟ ହୋଇପାରେ । ଇକ୍‌ବାଲ୍‌ଙ୍କୁ ଅଧ୍ୟୟନ କରିବା ପାଇଁ ତାଙ୍କର ଆହ୍ୱାନ ବେଶ୍ ଗୁରୁତ୍ୱପୂର୍ଣ୍ଣ ।

(ଡକ୍ଟର ଅଲମୁଲ୍ଲା ହାଲି)

## ରିସାଲ ବିଶ୍ୱଭିଁ ଶଦି, ନୟି ଦିହ୍ଲୀ [ମାର୍ଚ୍ଚ ୧୯୮୫]

ସୟଦ୍ ମୁଜଫର୍ ହୁସେନ ବର୍ଣ୍ଣି ଜଣେ ବିଜ୍ଞ ବ୍ୟକ୍ତି । ଏହାର ପ୍ରମାଣ ସ୍ୱରୂପ, ସଦ୍ୟ ପ୍ରକାଶିତ ପୁସ୍ତକ, ଯାହାକି ଇକ୍‌ବାଲ୍‌ଙ୍କର ଏକ ସୁନ୍ଦର ଗବେଷଣା— "ଇକ୍‌ବାଲ୍ ଓ କୌମି ଏକ୍ ଜହତି"। ଜନାବ୍ ସୟଦ୍ ମୁଜଫର୍ ହୁସେନ ବର୍ଣ୍ଣି ଜଣେ ଉଚ୍ଚକୋଟୀର ସାହିତ୍ୟିକ ହେବା ସଙ୍ଗେ ସଙ୍ଗେ ଫପ୍ରତି ହରିଆନା ପ୍ରଦେଶର ମାନ୍ୟବର ରାଜ୍ୟପାଳ, ତାଙ୍କର ଅଧିକାଂଶ ରଚନାବଳୀ ଏବେ ଯନ୍ତ୍ରସ୍ଥ । ଶାସନର ସର୍ବୋଚ୍ଚ ପଦବୀରେ ଆସୀନ ହୋଇ, ସାହିତ୍ୟ ସାଧନାରେ ସମୟ ଦେଇପାରୁ ନ ଥିବେ । ତଥାପି କାର୍ଯ୍ୟବ୍ୟସ୍ତତା ସତ୍ତ୍ୱେ "ଇକ୍‌ବାଲ୍, ଓ କୌମି ଏକ୍ ଜହତି" ପରି ଗବେଷଣାତ୍ମକ ପୁସ୍ତକ ନିଶ୍ଚିତ ଭାବେ ବହୁ ଶ୍ରମଯୁକ୍ତ ଏକ ଶ୍ରେଷ୍ଠକୃତି ।

୭୨ ପୃଷ୍ଠାର ବକ୍ତୃତାକୁ ଲିଖିତ ରୂପ ଦେବାରେ ଇଂରାଜୀ ଓ ଉର୍ଦ୍ଦୁର ପ୍ରାୟ ୩୫।୪୦ ଖଣ୍ଡ ପୁସ୍ତକର ସାହାଯ୍ୟ ନେବାକୁ ପଡ଼ିଛି—ଯାହାକି ବର୍ଣ୍ଣି ସାହେବଙ୍କ ନିଷ୍ଠାର ଆଉ ଏକ ଜ୍ୱଳନ୍ତ ନିଦର୍ଶନ । ଏହି ପୁସ୍ତକ ପ୍ରକାଶନ ପରେ, ଯେଉଁ ସୁବିଧାବାଦୀ ଗୋଷ୍ଠୀ, ଜ୍ଞାତସାରରେ ହେଉ ଅବା ଅଜ୍ଞାତସାରରେ ଇକ୍‌ବାଲ୍‌ଙ୍କୁ ସାମ୍ପ୍ରଦାୟିକ-କବି ଭାବରେ ଚିତ୍ରଣ କରିବାକୁ ଆଗେଇ ଆସିଛନ୍ତି, ସେମାନେ ନିଶ୍ଚିତ ରୂପେ ଲଜ୍ଜିତ ହେବେ । ସେମାନଙ୍କ ଭ୍ରମଧାରଣାକୁ ଯୁକ୍ତିଯୁକ୍ତ ଭାବେ ଖଣ୍ଡନ କରିବା ପାଇଁ ଉକ୍ତ କ୍ଷୁଦ୍ର ପୁସ୍ତକାଟି ବଳିଷ୍ଠ ଅସ୍ତ୍ରର କାର୍ଯ୍ୟ କରିବ—ଏ କଥା ନିଃସନ୍ଦେହରେ କୁହାଯାଇପାରେ ।

(ଏସ୍. ଏସ୍. ସରଓ୍ୱେଲ୍)

**ପନ୍ଦର ଟେଜା ମୁ ସ୍ତକ୍‌ବଲ୍, ନର୍ଯ୍ଯି ଦହଲ (୧୭—୧୧ ଜୁଲାଇ ୧୯୮୫)**

ଇକ୍‌ବାଲ୍‌ଙ୍କ ସମ୍ବନ୍ଧରେ ସୃଷ୍ଟି ହୋଇଥିବା ଭ୍ରମ ଧାରଣାକୁ, ବର୍ଣ୍ଣି ସାହେବ ଉପଯୁକ୍ତ ପ୍ରମାଣ ଦ୍ୱାରା ଖଣ୍ଡନ କରିବାରେ ସମର୍ଥ ହୋଇଛନ୍ତି ।

ଏ ପୁସ୍ତକଟି କେବଳ ଇକ୍‌ବାଲ୍‌ଙ୍କ ପ୍ରଶଂସକଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ, ବରଂ ଯେଉଁମାନେ ଇକ୍‌ବାଲ୍‌ଙ୍କୁ କେବଳ ଗୋଟିଏ ଦେଶ ବା ସମ୍ପ୍ରଦାୟଭୁକ୍ତ କବି ବୋଲି ଭାବନ୍ତି, ସେମାନଙ୍କ ପାଇଁ ମଧ୍ୟ ଉଦ୍ଦିଷ୍ଟ । ଏହି ପୁସ୍ତକଟି ପାଠ କଲାପରେ ସେମାନେ ସନ୍ଦେହ ମୁକ୍ତ ହୋଇପାରିବେ ।

**ପନ୍ଦର ଟେଜା ଯୋଜନା (ଉର୍ଦ୍ଦୁ), ନର୍ଯ୍ଯି ଦହଲ (୧ରୁ ୧୫ ଡିସେମ୍ବର ୧୯୮୪)**

ଇକ୍‌ବାଲ୍‌ଙ୍କ ସମ୍ପର୍କରେ ଏହା ଏକ ଦୁର୍ଲଭ ପୁସ୍ତକ । ଏଥିରେ ସନ୍ନିବେଶିତ ଇକ୍‌ବାଲ୍‌ଙ୍କ କବିତା ଓ ବ୍ୟକ୍ତିତ୍ୱର ବିଭିନ୍ନ ଦିଗନ୍ତ—ସୃଷ୍ଟି ହୋଇଥିବା ସମସ୍ତ ଭ୍ରମ ଧାରଣା ବିରୁଦ୍ଧରେ ଏକ ନିଶ୍ଚିତ ପଦକ୍ଷେପ ।

ସଂକ୍ଷେପରେ କହିବାକୁ ଗଲେ, ଏହି ପୁସ୍ତକଟି ଆଧୁନିକ ଯୁଗ ପାଇଁ ଏକ ଆବଶ୍ୟକତା ଓ ଆହ୍ୱାନ । ଏହାକୁ ଆଧାର କରି ଆମେ ଇତିହାସ, ସାହିତ୍ୟ ଓ ଅନ୍ୟାନ୍ୟ ବିଷୟ ଅଧ୍ୟୟନ କଲେ, ଆମର ଜାତୀୟ-ସଂହତି ସୁଦୃଢ଼ ହେବ । ଏହାର ରଚନା ଶୈଳୀହିଁ ଲେଖକଙ୍କ ନିଷ୍ଠା ଓ ଶ୍ରମର ଶ୍ରେଷ୍ଠ ଆଲେଖ୍ୟ । ଏହି ପୁସ୍ତକଟି ପାଠ କଲାପରେ, ବିଭିନ୍ନ ସାହିତ୍ୟିକ ଓ ସାଂସ୍କୃତିକ କ୍ଷେତ୍ରରେ ଆବଶ୍ୟକ ପଡ଼ୁଥିବା, ଲେଖକଙ୍କର ଗଠନମୂଳକ ଦୃଷ୍ଟିଭଙ୍ଗୀର ଚରମ ପରିଷ୍କାର ହୋଇଉଠେ ।



# ସମୀକ୍ଷା

## ସମାଲୋଚକଙ୍କ ଦୃଷ୍ଟିରେ—"ଇକ୍‌ବାଲ୍ ଓ ଜାତୀୟ ସଂହତି"
(୧ମ ସଂସ୍କରଣ)'

### ମୌଲାନା ସୟଦ୍ ଅବୁଲ୍ ହସନ୍ ଅଲି ନଦ୍‌ଭି,

**ପ୍ରଗାଢ଼ ଅଧ୍ୟୟନ**

ଆପଣଙ୍କ ଗଭୀର ଅଧ୍ୟୟନ, ପ୍ରକାଶ ଶୈଳୀର ଚମତ୍କାରିତା ମୋତେ ମୁଗ୍ଧ କଲା । ଏତେ ଏତେ କାର୍ଯ୍ୟ ବ୍ୟସ୍ତତା ଭିତରେ ଅଧ୍ୟୟନ ପାଇଁ ଯେ ଆପଣ ଏତେ ସମୟ ବିନିଯୋଗ କରି ପାରୁଛନ୍ତି, ସତରେ ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ମୋର ଆନ୍ତରିକ ଇଚ୍ଛା —ଇକ୍‌ବାଲ୍‌ଙ୍କ କବିତାରେ ଅନ୍ୟାନ୍ୟ ଗୁରୁତ୍ୱପୂର୍ଣ୍ଣ ଦିଗ ପ୍ରତି ଦୃଷ୍ଟି ନିବେଶ କରିବା ନିମନ୍ତେ ଆପଣଙ୍କୁ ସମୟ ଓ ସୁବିଧା ମିଳୁ ।

### ପ୍ରଫେସର୍ ନୁରୁଲ୍ ହସନ୍

**ଗଭୀର ଚିନ୍ତନ**

"ଇକ୍‌ବାଲ୍ ଏବଂ ଜାତୀୟ ସଂହତି", କେବଳ ଇକ୍‌ବାଲ୍‌ଙ୍କ କବିତା ଓ ଚିନ୍ତାଧାରାର ଅଧ୍ୟୟନ ଦୃଷ୍ଟିରୁ ଉପାଦେୟ ନୁହେଁ, ବରଂ ଏଥିରେ ଆପଣଙ୍କର ଗଭୀର ଚିନ୍ତନ ମଧ୍ୟ ପ୍ରତିଫଳିତ ।

### ଶମସୁର୍ ରହେମାନ୍ ଫାରୁକି

**ଇକ୍‌ବାଲ୍‌ଙ୍କ ଉଚ୍ଚକୋଟୀର ଅଧ୍ୟୟନକାରୀ**

ଆପଣଙ୍କ ଯୁକ୍ତି ଓ ବିଷୟବସ୍ତୁ ଉପସ୍ଥାପନ ଶୈଳୀ ବେଶ୍ ପ୍ରଭାବଶାଳୀ ଓ ଚମତ୍କାର । ମୁଖ୍ୟବିନ୍ଦୁଟିକୁ ମଧ୍ୟ ଆପଣ ବେଶ୍ ବୌଦ୍ଧିକ ଶୈଳୀରେ ଉପସ୍ଥାପିତ କରିଛନ୍ତି । ଇକ୍‌ବାଲ୍‌ଙ୍କ କବିତା ଓ ଦେଶ ପ୍ରିତିକୁ ଯେଉଁପରି ଭାବରେ ପରିବେଷଣ କରିଛନ୍ତି, ସେଥିରୁ ଇକ୍‌ବାଲ୍‌ଙ୍କ ବିଷୟରେ ଆପଣଙ୍କ ଜ୍ଞାନ ତଥା ପ୍ରାଚ୍ୟ-ପାଶ୍ଚାତ୍ୟ ଉପରେ ଆପଣଙ୍କ ତୀକ୍ଷ୍ଣ ଦୃଷ୍ଟିର ସମ୍ୟକ୍ ପରିଚୟ ମିଳେ ।

**ପ୍ରଫେସର ମହମ୍ମଦ ମନଓ୍ୱର—ଡାଇରେକ୍ଟର, ଇକ୍‌ବାଲ ଏକାଡେ଼ମୀ, ପାକସ୍ଥାନ, ଲହୋର**

**ପ୍ରଶଂସାଯୋଗ୍ୟ କୃତ**

ଏହି ଅମୂଲ୍ୟ କୃତିଟି ପାଇଁ ଆମ୍ଭ ତରଫରୁ ସୟଦ୍ ମୁଜଫର୍ ହୁସେନ୍ ବର୍ଣ୍ଣିଙ୍କୁ ଧନ୍ୟବାଦ ଅର୍ପଣ କରନ୍ତୁ । ଆମ୍ଭେ ତାଙ୍କ ନିରାମୟ ଜୀବନ ତଥା ଦୀର୍ଘ ଜୀବନ କାମନା କରୁଛୁ ।

**ଗିରିଜା କୁମାର ମାଥୁର୍**

**ନୂତନ ଦିଗନ୍ତ**

ମୁଁ ଇକ୍‌ବାଲ୍‌ଙ୍କ ବିଷୟରେ ଆପଣଙ୍କ ବକ୍ତୃତା ପାଠ କରିଛୁ । ମୁଁ ଅନୁଭବ କରୁଛୁ ଯେ, ଆପଣ ଇକ୍‌ବାଲ୍‌ଙ୍କ କବିତାର ଏକ ନୂତନ ଦିଗନ୍ତ ଉନ୍ମୋଚିତ କରିଛନ୍ତି । ଇକ୍‌ବାଲ୍‌ଙ୍କ ପରି ଉଚ୍ଚକୋଟୀର କବିଙ୍କ ଯେଉଁ ଦିଗ ପ୍ରତି କେହି ବିଶେଷ ଧ୍ୟାନ ଦେଇ ନ ଥିଲେ, ଆପଣ ସେ ଦିଗ ଉପରେ ଗମ୍ଭୀର ଆଲୋକପାତ କରିଛନ୍ତି ।

**ରେବତୀ ଶରଣ ଶର୍ମା**

**ମାତୃଭୂମିର ସୁଗନ୍ଧି**

ଇକ୍‌ବାଲ୍‌ଙ୍କ କବିତାରେ ମାତୃଭୂମିର ସୁଗନ୍ଧ ବେଶ୍ ଆଘ୍ରାଣଯୋଗ୍ୟ ।

**ଡଃ ତାରା ଚରଣ ରସ୍ତୁଗି**

**ମାଇଲ ଖୁଣ୍ଟ**

ବକ୍ତୃତାଟି ମାତ୍ର ୬୨ ପୃଷ୍ଠାର । କିନ୍ତୁ ସମାଲୋଚକର ଦୃଷ୍ଟି ନେଇ ସମୀକ୍ଷା କଲେ, ଏକ ବିରାଟ ଗ୍ରନ୍ଥଠାରୁ ମଧ୍ୟ ଏହା ଅଧିକ ମୂଲ୍ୟବାନ ବୋଲି ମନେହୁଏ ।

ବର୍ଣ୍ଣି ସାହେବ, ଇକ୍‌ବାଲ୍‌ଙ୍କ ଆହ୍ୱାନକୁ ବେଶ୍ ଚମତ୍କାର ଓ ବୌଦ୍ଧିକ ଶୈଳୀରେ ପ୍ରକାଶ କରିଛନ୍ତି । ସେ ଜଣେ ଉଚ୍ଚକୋଟୀର ସାହିତ୍ୟିକ, ପାରିପାର୍ଶ୍ୱିକ ପରିସ୍ଥିତି ପ୍ରତି ସଜାଗ ତଥା ବେଶ୍ ସମ୍ବେଦନଶୀଳ ବ୍ୟକ୍ତି ।

ବର୍ଣ୍ଣି ସାହେବଙ୍କର ସାହିତ୍ୟିକ ଜ୍ଞାନ ବେଶ୍ ପରିପୁଷ୍ଟ ଓ ବୌଦ୍ଧିକ । ଇକ୍‌ବାଲ୍‌ଙ୍କ ପ୍ରତି ତାଙ୍କର ଆଗ୍ରହ ଓ ତାଙ୍କ କୃତିର ଗମ୍ଭୀର ଅଧ୍ୟୟନ, ସାଧାରଣ କଥା ନୁହେଁ ।

ଇକ୍‌ବାଲ୍‌ଙ୍କ କୃତି ସମ୍ପର୍କରେ ବର୍ଣ୍ଣି ସାହେବଙ୍କ ଏହି ବକ୍ତୃତାଟି ଏକ ମାଇଲ ଖୁଣ୍ଟ କହିଲେ ଅତ୍ୟୁକ୍ତି ହେବ ନାହିଁ ।

# ସହାୟକ ଗ୍ରନ୍ଥ-ସୂଚୀ

## (ଉର୍ଦ୍ଦୁ)

୧ । ସବା ଲକ୍ଷ୍ନଓ୍ଵି
ଇକ୍‌ବାଲ୍ ଅଉର୍ ଭୋପାଲ୍,
ଇକ୍‌ବଲ୍ ଏକାଡ଼େମୀ, ପାକିସ୍ଥାନ
ଲାହୋର, ୨ୟ ସଂସ୍କରଣ (୧୯୮୨)
୨ । ମହାମ୍ମଦ ଅହେମଦ୍ ଖାନ୍
ଇକ୍‌ବାଲ୍ କା ସିଆସି କାର୍‌ନାମା, ଇକ୍‌ବଲ୍ ଏକାଡ଼େମୀ, ପାକିସ୍ଥାନ
ଲାହୋର, (୧ମ ସଂସ୍କରଣ-୧୯୭୭)
୩ । ପ୍ରଫେସର ହମିଦ୍ ଅହେମ୍ମଦ୍ ଖାନ୍
ଇକ୍‌ବାଲ୍ କ ଶଖ୍‌ସିଅତ୍ ଅଉର୍ ଶାୟଣ
ବଜ୍‌ମେ ଇକ୍‌ବଲ୍ , ଲାହୋର (୧ମ ସଂସ୍କରଣ, ଅକ୍ଟୋବର ୧୯୭୪)
୪ । ପ୍ରଫେସର ଅଜାଜ୍ ଅହେମ୍ମଦ୍
ଇକ୍‌ବାଲ : ନୟି ତଶ୍‌କିଲ୍, ଏଜୋକାଦ୍ ପବ୍ଲିସିଙ୍ଗ୍ ହାଉସ୍
ଦହେଲି, (୧ମ ସଂସ୍କରଣ, ଜାନୁୟାରୀ ୧୯୮୦)
୫ । ଅଶ୍‌ଫାକ୍ ହୋସେନ୍
ଇକ୍‌ବାଲ୍ ଅଉର୍ ଇନ୍‌ସାନ୍, ଆନ୍ଧ୍ର ପ୍ରଦେଶ ସାହିତ୍ୟ ଏକାଡେମୀ,
ହାଇଦ୍ରାବାଦ (୧ମ ସଂସ୍କରଣ—ଏପ୍ରିଲ୍ ୧୯୭୪)
୬ । ଅବ୍‌ଦୁଲ୍ ମଜିଦ୍ ସାଲିକ୍
ଜିକ୍‌ରେ ଇକ୍‌ବାଲ୍, ବଜ୍‌ମେ ଇକ୍‌ବାଲ୍,
ଲାହୋର (୧ମ ସଂସ୍କରଣ—୧୧୫୫)
୭ । ଅଶ୍‌ଫାକେ ହୋସେନ୍
ମୁକାମେ ଇକ୍‌ବାଲ୍
୮ । ଡ଼କ୍ଟର ଜାଓ୍ଵେଦ୍ ଇକ୍‌ବାଲ୍
ଜିନ୍ଦାରୁଦ୍ (୦) ହୟାତେ ଇକ୍‌ବାଲ୍ କା ତଶ୍‌କିଲି ଦୌର୍
ଶେଖ୍ ଗୁଲାମ୍ ଅଲ୍ଲି ଆଣ୍ଡ ସନ୍‌ସ
ଲାହୋର (୧ମ ସଂସ୍କରଣ –୧୯୭୯)
୯ । ମହେମୁଦ୍ ନେଜାମି
ମଲ୍‌ଫୁଜାତ୍
୧୦ । ଅତକ୍ ସିଦ୍ଦିକ୍
କାଦୁଗରେ ହନ୍ଦୀ ନଜାଦ୍, ମକ୍ତବାଏ ଜାମେଆ ଲିମିଟେଡ୍
ନୟି ଦହଲି (୧ମ ସଂସ୍କରଣ—ଅଗଷ୍ଟ ୧୯୮୦)

୧୧ । ଫକୀର୍ ସୟଦ୍ ଓହିଦୁଦ୍ଦିନ୍
ରୋଜ୍‌ଗାରେ ଫକୀର୍, ଲାଇନ୍ ଆର୍ଟ ପ୍ରେସ୍ ଲିମିଟେଡ୍
କରାଚୀ (୭ମ ସଂସ୍କରଣ, ଏପ୍ରିଲ୍ ୧୯୬୬)

୧୨ । ରାଗିବ୍ ଅହ୍ସନ୍
ଇକ୍‌ବାଲ୍, ଜହାନେ ଦିଗର୍

୧୩ । ୟୁସୁଫ୍ ହୋସେନ୍ ଖାନ୍
ରୁହେ ଇକ୍‌ବାଲ୍, ଗାଲିବ୍ ଏକାଡ଼େମୀ, ନୟି ଦହ୍‌ଲି
(୭ମ ସଂସ୍କରଣ ୧୯୭୬)

୧୪ । ଅଲ୍ଲାମା ମୁହମ୍ମଦ୍ ଇକ୍‌ବାଲ୍ (ମୋତରଜମ୍ ନଜର ନେୟାଜ)
ତଶ୍‌କିଲେ ଜଦିଦ୍ ଏ ଇଲାହିୟାତେ ଇସ୍‌ଲାମିଆ,
ଜାମିଆ ମିଲିଆ, ଦହେଲି ।

୧୫ । ସୟଦ୍ ନଜିର୍ ନେୟାଜି
ଇକ୍‌ବାଲ୍‌କେ ହୁଜୁର୍, ଇକ୍‌ବାଲ୍ ଏକାଡ଼େମୀ, ପାକିସ୍ଥାନ, ଲାହୋର
(୨ୟ ସଂସ୍କରଣ-୧୯୮୧)

୧୬ । ପ୍ରଫେସର ସୟଦ୍ ଓକାର୍ ଅଜିମ୍
ଇକ୍‌ବାଲ୍ ମଆଶରିନ୍ କି ନଜର୍ ମେଁ, ମଜ୍‌ଲିସ୍ ତରକ୍‌କିଏ ଅଦବ୍,
କ୍ଲବ୍ ରୋଡ୍, ଲାହୋର, ୧୯୭୩

୧୭ । ହକ୍ ନଓ୍ୱାଜ୍
ସଫର୍ ନାମା ଏ ଇକ୍‌ବାଲ୍, ଇକ୍‌ବାଲ୍ ସଦି ପବ୍ଲିକେଶନ୍
ନୟି ଦହ୍‌ଲି (୧ମ ସଂସ୍କରଣ-୧୯୭୭)

୧୮ । ରଫି ଉଦ୍ଦିନ୍ ହାଶ୍‌ମି
କୁତୁବ୍ ଏ ଇକ୍‌ବାଲ୍, ଇକ୍‌ବାଲ୍ ଏକାଡ଼େମୀ, ପାକିସ୍ଥାନ,
ଲାହୋର (୧ମ ସଂସ୍କରଣ-୧୯୭୭)

୧୯ । (ଏଡ଼ିଟର୍) ମୁହମ୍ମଦ୍ ତୁଫୈଲ୍
ନୋକୁଶ୍ ଇକ୍‌ବାଲ୍ ନମ୍ବର (1) ଅଦାରାଏ ଫରୋଗେ ଉର୍ଦ୍ଦୁ
ଲାହୋର (ସେପ୍‌ଟେମ୍ବର, ୧୯୭୭)

୨୦ । (ଏଡ଼ିଟର୍) ମୁହମ୍ମଦ୍ ୟୁନୁସ୍
ଜୁବାନ୍ ଓ ଅଦବ୍ (ସେହ୍ ମାହି) ବିହାର ଉର୍ଦ୍ଦୁ ଏକାଡ଼େମୀ
ପାଟଣା, (ଜାନୁୟାରୀ-ମାର୍ଚ୍ଚ, ୧୯୮୪)

(ଇଂରାଜୀ)


1. Prof. Jagannath 'Azad'
Iqbal : Mind and Art
National Book House, Lahore.

2. Syed Abdul Vahid
Thoughts and Reflections of Iqbal

3. Publications Division
Multi-Disciplinary Approach to Iqbal

4. Anna Marie Schimmel
Gabriel's Wing

5. Eminent Scholars
Iqbal As A Thinker
Mohd. Ashraf Kashmiri Bazar, Lahore
5th. Edition, 1973.

6. Abdulla Anwar Beg
The poet of the East.

7. Syed Abdul Vahid
Studies in Iqbal
Mohd. Ashraf, Kashmiri, Bazar, Lahore.

8. Frank Movaes
Witness To An Era

9. Jawaharlal Nehru
A Bunch of old Letters.

10. Jawaharlal Nehru
Discovery of India.

11. Edited by Amiya Chakravarty
A Tagore Reader, Beacon Press, Boston.

12. Swami Dwarikadas Shastri
The Twenty-eight Upanishads
Prachya Bharati Prakashan,
Varanasi, 1965.

13. D. D. Kosambi
The Epigrams Attributed to Bhratrhari
Bharatiya Vidyabhavan, Bombay, 1948

14. R. E. Hume
Thirteen Principal Upanishads

15. Otto Bothlingk
Indische Spruche, 2nd. Edition
St. Petersburg.

